ପ୍ରକାଶକ—

**ନବଜୀବନ ପୁସ୍ତକାଳୟ**

ଗୃଧମାଚୌକ, କଟକ—୨

ପ୍ରଥମ ପ୍ରକାଶ—

ଜାନୁଆରୀ, ୧୯୬୨

ପ୍ରଚ୍ଛଦପଟ-ଶିଳ୍ପୀ—

**ଶ୍ରୀ ଶରତ୍‌ଚନ୍ଦ୍ର ଦାସ**

ମୂଲ୍ୟ ଦୁଇଟଙ୍କା ପଞ୍ଚସ୍ତରୀ ନୂଆ ପଇସା

# ପରିଚୟ

ଏ ସଙ୍କଳନରେ ସ୍ଥାନିତ ହୋଇଥିବା ବାରଟି ଗଳ୍ପରୁ ଗୋଟିକର ନାମ 'କାଳର ନିଷ୍ପତ୍ତି' ହେଲେହେଁ ପ୍ରତ୍ୟେକଟିକୁ ଏହି ନାମରେ ନାମିତ କଲେ ଅଯଥାର୍ଥ ହେବ ନାହିଁ। ମନୁଷ୍ୟର ମତ ସର୍ବବାଦୀସମ୍ମତ ନୁହେଁ କି ସବୁ ସମୟର ଉପଯୋଗୀ ନୁହେଁ। କେତେକଟି ସ୍ୱତଃସିଦ୍ଧ ସତ୍ୟର ଖୁଣ୍ଟପାଖେ ମଣିଷର ମନ, କଥା ଓ କାର୍ଯ୍ୟ ଘୂରୁଛି। ସେ ଖୁଣ୍ଟିଙ୍କର ଏକ ନିର୍ଦ୍ଦିଷ୍ଟ ସମୟରେ ଯେଉଁ ସଂଘର୍ଷଜନିତ ସମନ୍ୱୟ ହେଉଛି, ତାହାହିଁ ସେଇ ସମୟର ଧର୍ମ—ଏହି ସମୟର ପରିସର ଯେତିକି ବଢ଼େ, ସେ ଧର୍ମ ସେଇ ପରିମାଣରେ ଯୁଗଧର୍ମ ଆଖ୍ୟା ପାଏ। ଜନସାଧାରଣ 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ' ନ୍ୟାୟରେ ଆଖିବୁଜି ଯୁଗଧର୍ମକୁ ମାନି ଚଳନ୍ତି। କିନ୍ତୁ ମଣିଷର ଚିନ୍ତାକୁ ଓ କାର୍ଯ୍ୟକୁ ପ୍ରଭାବିତ କରିବାକୁ ଯେଉଁମାନେ ଶକ୍ତି ପାଇଥାନ୍ତି ସେମାନେ ନିଜର ତେଜ, ବଳ, ପୌରୁଷ, ଯୋଗ ଓ ବୁଦ୍ଧି ଆଦିର ପ୍ରୟୋଗରେ ଯୁଗଧର୍ମର ବିଶ୍ଳେଷଣ, ପରିବର୍ଦ୍ଧନ ଓ ପରିବର୍ତ୍ତନର ପ୍ରୟାସ କରନ୍ତି। ଏ ପ୍ରୟାସରେ ସ୍ୱତଃସିଦ୍ଧ ସତ୍ୟ ପ୍ରତି କର୍ତ୍ତାର ଯେତିକି ଆନୁଗତ୍ୟ ରହେ ସେ ସେଇ ପରିମାଣରେ କୃତିତ୍ୱ ଅର୍ଜନ କରେ—ଯେ ସ୍ୱତଃସିଦ୍ଧ ସତ୍ୟଗୁଡ଼ିକୁ ଏକାବେଳକେ ଅବଜ୍ଞା କରେ ସେ କାଳର ବେଗରେ ଛିଣ୍ଡି ଉଡ଼ି ଯାଏ। —ଭାରତୀୟ ଜୀବନ ଦର୍ଶନ ଏହାହିଁ ବୋଲି ମୁଁ ବୁଝିଛି। ସବୁଗୁଡ଼ିକ ଗଳ୍ପ ଏହି ଦର୍ଶନର ଅନୁକୂଳରେ ଲେଖା।

ଏ ଯୁଗର ରୁଚିକୁ ଯଥାସମ୍ଭବ ଆଖି ଆଗରେ ରଖି ଲିଖନଶୈଳୀ ଅବଲମ୍ବନ କରିଛି। ସବୁଗୁଡ଼ିକ ଗଳ୍ପ ଗତ ଛଅ ବର୍ଷ ଭିତରେ 'ନବଜୀବନ'ରେ ପ୍ରକାଶ ପାଇଥିଲା, ଅବଶ୍ୟ ଶ୍ରୀ···ନାମରେ। 'ନବଜୀବନ'ର ବହୁ ପାଠକ ଏଗୁଡ଼ିକ ପସନ୍ଦ କରି ଏମାନଙ୍କ ଏକତ୍ର ସମାବେଶ କାମନା କରିଥିଲେ। 'କାଳର ନିଷ୍ପତ୍ତି' ସେଇ କାମନାର ପୂରଣ ମାତ୍ର। ଓଡ଼ିଶାର ସୁଧି-ସମାଜ ଏ ପ୍ରକାଶନ ସାର୍ଥକ କି ଅସାର୍ଥକ ବିଚାର କରିବେ।

**ଚନ୍ଦ୍ରାମଣି ମିଶ୍ର**

ଜାନୁଆରି ୨୬, ୧୯୬୨

# ସୂଚୀ





# ଶାଲର ନିଷ୍ପତ୍ତି



ଖୋର୍ଦ୍ଧାରୋଡ଼କୁ ଟିକଟ ଖଣ୍ଡେ କିଣି ରାତି ସାଢ଼େ ୭ଟାରେ ପ୍ରଶାନ୍ତବାବୁ ରେଲରେ ଚଢ଼ି ଯେତେବେଳେ ଜନଷପନ ରେଲଡବାର ଓପର ବେଞ୍ଚରେ ସଜାଡ଼ି ଥୋଇଲେ, ସେତେବେଳେ ତାଙ୍କୁ ଟିକିଏ ଫୁରସତ୍ ମିଳିଲା, ନିଜର ଦେହରୁ ଟିକିଏ ଝାଳ ମାରିବାକୁ, ମନକୁ ଟିକିଏ ସ୍ଥିର କରି ନିଜର ଭବିଷ୍ୟତ୍ ବିଷୟରେ ବିଚାରିବାକୁ । ସକାଳ ୧୧ଟାରୁ ଏତେବେଳ ଯାଏଁ ତାଙ୍କର ଏକମାତ୍ର ଚିନ୍ତା ଥିଲା, ସେ କିପରି ଆସି ଏଇ ଗାଡ଼ିଟା ଧରିବେ । ସେଇ ଚିନ୍ତାରେ ତାଙ୍କୁ ବେଳ ମିଳି ନ ଥିଲା; ତାଙ୍କ ଭାଗ୍ୟ ପରିବର୍ତ୍ତନର ସମୀକ୍ଷା କରିବାକୁ । ଏଥର ତାଙ୍କୁ ନେଇ ତାଙ୍କ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇବାର ଦାୟିତ୍ୱ ରେଲଗାଡ଼ିର । ସେ ସେକଣ୍ଡ କ୍ଲାସ୍ ଡବାରେ ଗୋଟିଏ କୋଣରେ ଗାଦିକୁ ଆଉଜି ଆଖିମୁଜି ପଡ଼ିରହିଲେ । ମନ ଭିତରେ ସିନେମା ଫିଲ୍ମ ପରି ଗତ କେତେ ଦିନର ଘଟଣା ଘୂରି ବୁଲୁଥାଏ ।

ସେଇଦିନ ସକାଳ ସାଢ଼େ ସାତଟାରେ ସେ ଗାଁରୁ ଏଇ ପୁରୀ ଏକ୍ସପ୍ରେସ୍‌ରେ ଆସି ଏଇ ହାୱଡ଼ା ଷ୍ଟେସନରେ ଯେତେବେଳେ ହିନ୍ଦୁସ୍ଥାନୀ ଟ୍ୟାକ୍ସିବାଲାକୁ 'ବଉବଜାର ଚଲୋ' ବୋଲି ନିର୍ଦ୍ଦେଶ ଦେଇଥିଲେ ସେତେବେଳେ ତାଙ୍କ ମନ କେଡ଼େ ଉଲ୍ଲାସ ! ମନ ଫୂର୍ତ୍ତିରେ ସେ ଗୁଣୁ ଗୁଣୁ କରି ଗାଇବାକୁ ଆରମ୍ଭ କରିଥିଲେ—

'ଓଃ, ବିଗିଡ଼ି ବନାନେବାଲେ ବିଗିଡ଼ି ବନାଦେ

ନୟା ହମାରି ପାର୍ ଲଗା ଦେ ।

ସେତେବେଳେ କିନ୍ତୁ ତାଙ୍କ ମନର ତ୍ରିସୀମାରେ ଭଗବାନ୍ ନଥିଲେ । ହାୱଡ଼ା ଷ୍ଟେସନ୍‌ରେ ଓହ୍ଲାଇବା ସଙ୍ଗେ ସଙ୍ଗେ ସେ ସନ୍ଧ୍ୟା ପାଇଁ ଯୋଜନା ତିଆରି କରି ଦେଇଥିଲେ, ପ୍ରମିଳାଙ୍କୁ ସଙ୍ଗରେ ଧରି ସିନେମା ଯିବେ । ସିନେମା କଥା ମନେ ପଡ଼ିବାରୁ ଏଇ ଗୀତଟି ମନେ ପଡ଼ିଯାଇଥିଲା । ହେଇଟି ସେଦିନ ଏକ ସପ୍ତାହ ଛୁଟି ନେଇ ଯେତେବେଳେ ସେ ଗାଁକୁ ବାହାରିଥିଲେ, ବାପାଙ୍କୁ ନିଜର ସିଦ୍ଧାନ୍ତ ଜଣାଇ ତାଙ୍କର ଓ ବୋଉର ଅନୁମତି ନେବାକୁ ଆସିବାକୁ— ସେତିକବେଳେ ତାଙ୍କୁ ପ୍ଲାଟ୍‌ଫର୍ମରେ ବିଦାୟ ଦେଇ ପ୍ରମିଳା ପ୍ରାଣମତାଣିଆ ସୁରରେ ତାଙ୍କ କାନରେ ଏହି ଗୀତଟି କହି ଦେଇଥିଲେ । ପ୍ରଶାନ୍ତ ବାବୁ, ୯୨ ନମ୍ବର ବହୁବଜାର ଅଭିମୁଖେ ଟ୍ୟାକ୍ସି ଗ୍ଭଲିଲା ବେଳେ, ନିଜକୁ ନିଜେ ଆଜି ସାବାସ୍ ଦେଉଥିଲେ ଯେ, ତାଙ୍କର ସାହସ ଓ ନିର୍ଭୀକତା ଯୋଗୁଁ ସେ ତାଙ୍କର ଓ ପ୍ରମିଳାର ଜୀବନ ତରୀକୁ ସ୍ୱଚ୍ଛନ୍ଦରେ କୂଳରେ ଲଗାଇଛନ୍ତି ।

ପ୍ରମିଳା, ପ୍ରମିଳାଙ୍କର ମା ଓ ସାନ ଭଉଣୀ ତାଙ୍କୁ ଗ୍ଭହିଁକରି ଦାଣ୍ଡ ଦୁଆରେ ଠିଆ ହୋଇଥାନ୍ତି । ଟ୍ୟାକ୍ସି ହତା ଭିତରକୁ ଆସିବା ମାତ୍ରେ ପ୍ରମିଳାଙ୍କ ବାପା ଅବିନାଶ ବାବୁ ଘର ଭିତରୁ ଆସି ଅଭିନନ୍ଦନ ଦଳରେ ମିଶିଗଲେ । ପ୍ରଶାନ୍ତବାବୁ କଲିକତି ଢଙ୍ଗରେ ଅବିନାଶ ଦମ୍ପତିଙ୍କର ଚରଣ ଧୂଳି ନେଇ ଠିଆ ହେବାରେ, ସେ ଦୁହେଁ ତାଙ୍କ ମୁହଁରେ ବିଜୟୀର ଆଭା ଦେଖି ପଦେ ଦି' ପଦ କୁଶଳପ୍ରଶ୍ନ ପଗ୍ଭରି ନଜାଣିଲା ପରି ଆଡ଼େଇ ହୋଇଗଲେ । ପ୍ରମିଳାଙ୍କର ସାନ ଭଉଣୀ ନନ୍ଦିତା ପଗ୍ଭରିଲେ, "କି ଜାଉରି ବାବୁ, ଡଙ୍ଗା କୂଳରେ ଲାଗିଲା ତ ?"

ପ୍ରଶାନ୍ତବାବୁ, ଉତ୍ତର ଦେଲେ, "ମୁଁ ଓଙ୍ଗା କୂଳରେ ଲଗାଇପାରେ କି ନାହିଁ, ଲେକ୍‌ରେ ତ ବହୁବାର ଦେଖିଛି !"

ଗୃହଲକ୍ଷ୍ମୀ ହସଖୁସି । ନନ୍ଦିତା ତାଙ୍କ ପାଇଁ ଚା' ଜଳଖିଆର ଆୟୋଜନରେ ଲଗିଲେ । ଗତ ସାତ ଦିନର ଡାଇରି ସେ ବିସ୍ତାରିତ ଭାବେ ପ୍ରମିଳାଙ୍କୁ ଶୁଣାଉଥାନ୍ତି । ପ୍ରମିଳାଙ୍କର ଓଠ କେତେବେଳେ ଘୃଣାରେ କୁଞ୍ଚିତ ହୋଇ ଯାଉଥାଏ, କେତେବେଳେ ବିଜୟ ଉଲ୍ଲାସରେ ବିସ୍ଫାରିତ ହୋଇଯାଉଥାଏ । ଭାବୀ ଶ୍ୱଶୁରଙ୍କର ମରହଟ୍ଟୀ ଆପତ୍ତି ଶୁଣି ସେ ପାଟିକରି ଉଠିଲେ, "ବାପ୍‌ରେ, ଏପରି କୁସଂସ୍କାରଗ୍ରସ୍ତ ଲୋକଙ୍କ ପାଖେ ତ ମୁଁ ମୁହୂର୍ତ୍ତେ ଚଳିପାରିବି ନାହିଁ !"

ପ୍ରଶାନ୍ତ ତାଙ୍କୁ ଆଶ୍ୱାସନା ଦେଇ କହିଥିଲେ, "ମୋର ମଧ୍ୟ ସେଇ କଥା । ମୋର ବାପା ଓ ମୋ ମଧ୍ୟରେ ଏତେ ତଫାତ୍ ଏହା ମୁଁ ପାଞ୍ଚ ବର୍ଷ ପୂର୍ବେ ଘୁଣାକ୍ଷରରେ ବି ଜାଣି ପାରିନଥିଲି । ପିତୃଭକ୍ତିର ଅନ୍ଧ ପରଂପରାରେ ମୁଁ ତାଙ୍କୁ ଦେବତା ବୋଲି ଧରି ନେଇଥିଲି । ଏମେ କିନ୍ତୁ ଦେଖୁଛି, ଆକାଶ ପାତାଳ ଏକ ଭୂମିରେ ରହିବା ଯେପରି ଅସମ୍ଭବ, ତାଙ୍କର ମୋ'ର ଅବସ୍ଥା ସେହିପରି ।"

ନନ୍ଦିତା ଚା ଜଳଖିଆ ଆଣି ଟେବୁଲରେ ଥୋଉ ଥୋଉ ପଚାରିଲେ, "ଏବେ ଆକାଶ କିଏ ? ପାତାଳ କିଏ ? ବୋଧହୁଏ ଯେ ଅଳ୍ପଦିନରେ ଭୂଗର୍ଭରେ ଆଶ୍ରୟ ନେଉଥିବେ ସେଇ ପାତାଳ ଓ ଯେ ନବବିବାହିତା ପତ୍ନୀଙ୍କୁ ସାଙ୍ଗରେ ଧରି ଆକାଶ ମାର୍ଗରେ ଭୂସ୍ୱର୍ଗ ଆମେରିକାକୁ ଯିବେ ସେଇ ଆକାଶ !"

ପ୍ରଶାନ୍ତ ଓ ପ୍ରମିଳା କେହି ଏ କଥାକୁ କର୍ଣ୍ଣପାତ କଲେ ନାହିଁ । ତାଙ୍କର ରହସ୍ୟ ବା ଉପମା ଅଳଙ୍କାର ପାଇଁ ବେଳ କେଉଁଠି ? ପ୍ରମିଳା ପଚାରିଲେ, "ହଁ, ଆମର ଆମେରିକା ଭ୍ରମଣ କଥା ପିତୃଦେବଙ୍କୁ କହିଛ ତ ?"

ପ୍ରଶାନ୍ତ ହସି ହସି ଉତ୍ତର ଦେଲେ, "ବିବାହ ବାସି ଆମେ ବେଦୀରେ ମଙ୍ଗୁଳି ନ ହୋଇ ବିଦେଶ ଯିବା—ଏକଥା କହିଥିଲେ, ବାପାଙ୍କ କଥା ଛାଡ଼, ବୋଉର ହୃତ୍‌ପିଣ୍ଡକ୍ରିୟା ବନ୍ଦ ହୋଇ ଯାଇଥାନ୍ତା । କନ୍ୟା ଖ୍ରୀଷ୍ଟିୟାନ୍ ଓ ବିବାହ କଲିକତାରେ ହେବ ଏତିକିରେ ତ ମୋତେ ଜଣାଯାଉଥିଲା, ସୂର୍ଯ୍ୟ ଚନ୍ଦ୍ର ପରସ୍ପର ଧକ୍‌କା ଖାଇ ତଳକୁ ଖସି ପଡ଼ିବେ ।"

ପ୍ରମିଳା ଅଧିକ ଶୁଣିବାକୁ ଉତ୍କଣ୍ଠିତ ହେଲେ । ପ୍ରଶାନ୍ତ ଏଥରକରେ ସାପ୍ତାହିକ ଡାଇରି ଶେଷ କଲେ, "ବାପା କହିଛନ୍ତି, ଯାହା କରିବୁ କର, କିନ୍ତୁ ବୁଦ୍ଧି ବିଚାରି କର । ବୁଦ୍ଧି ବିଚାରି କଲେ ମୋର କୌଣସିଥିକୁ ଆପତ୍ତି ନାହିଁ ।"

ପ୍ରମିଳା ତାଙ୍କୁଙ୍କରେ ମନ୍ତବ୍ୟ ଦେଲେ, "ମରହଟ୍ଟୀ ବୁଢ଼ାମାନଙ୍କର ଧାରଣା, ଆମ୍ଭେମାନେ ଯାହା କରେଁ, ନ ବୁଦ୍ଧି ନ ବିଚାର ।"

ସକାଳେ ଜଳଖିଆଟା ବି ଖୁବ୍ ବଢ଼ିଆ ହେଲା । ଅବଶ୍ୟ ଘରେ ଥିଲାବେଳେ, ବୋଉ ନିଜେ ଆଣି ଜଳଖିଆ ଦେଇଯାନ୍ତି—ସେଇ ପୁରୁଣାକାଳିଆ ଚୂଡ଼ାଦହି । ଦହିଟା ଅବଶ୍ୟ ଖୁବ୍ ଚକ୍‌କଣ, ସୁସ୍ୱାଦୁ, କିନ୍ତୁ ଅମ୍‌ଲେଟ୍ ଓ ଟୋଷ୍ଟ ଆଗରେ ତା'ର ସ୍ଥାନ କେଉଁଠି ? ପୁଣି ବାଆଁଙ୍କ ଘରେ ଠା' ପିଢ଼ା ହୋଇ ଜଳଖିଆ ଖାଇବା ତାଙ୍କୁ ବଡ଼ ଅସୁଖ ଲାଗୁଥାଏ । ଖାଇବାଘରେ, ଚଉକିରେ ବସି, କଣ୍ଟାଚାମଚ ଧରି ଖାଇବ ଓ ପରିବେଷଣ କରୁଥିବେ ତରୁଣୀ ଶାଳିକା ନନ୍ଦିତା ! ପ୍ରଶାନ୍ତ ମୁରୁକି ମୁରୁକି ହସି ଡାକଲେ, "ବିନ୍ଦୁ, ଅଉର୍ ଏକ୍ ଟୋଷ୍ଟ୍ " । ନନ୍ଦିତା ଖିଲ୍ ଖିଲ୍ ହସି କହିଲେ, "ଜୀ ହଜୁର୍" । ସ୍ୱର୍ଗ ଆଉ ବା' ଆଙ୍ଗୁଳ ମାତ୍ର, ପ୍ରଶାନ୍ତଙ୍କୁ ଜଣାଯାଉଥାଏ ।

ଜଳଖିଆ ଖାଉ ଖାଉ ଭବିଷ୍ୟତର କେତେ କଳ୍ପନା ଜଳ୍ପନା ପଡ଼ିଗଲା । ପ୍ରମିଳା ଗତ ସାତଦିନର ଘଟଣାବଳୀ ବର୍ଣ୍ଣନା କରି ଶୁଣାଇଲେ—ଇତିମଧ୍ୟରେ ଅବିନାଶ ବାବୁ ଯୋଗାଡ଼ କରିଛନ୍ତି, ଆମେରିକାରେ ଟିକସ୍ କି ରୀତିରେ ଆଦାୟ ହୁଏ, କିପରି ଟିକସ୍ ବିନା ମକଦ୍ଦମାରେ ସୁରୁଖୁରୁରେ ପେଠ ହୋଇଯାଏ, ଓସେ ବିଷୟରେ ପ୍ରଶାନ୍ତବାବୁ ତିନିମାସ ଅଭିଜ୍ଞତା ଅର୍ଜନ କରି ଆସିଲେ, କେନ୍ଦ୍ର ଟିକସଆଦାୟ ବିଭାଗରେ ତାଙ୍କୁ ଆହୁରି ବଡ଼ପାହିଆ ଚାକିରି ମିଳିଯିବ । ସେ ତାଙ୍କର ଭାବୀ ଜାମାତା ବୋଲି ଶୁଣି, ଦିଲ୍ଲୀର ଉପର ହାକିମ ସାଙ୍ଗେ ସାଙ୍ଗେ ଆମେରିକା ରାଷ୍ଟ୍ରଦୂତଙ୍କୁ ଟେଲିଫୋନ୍ କରି ଏ ଯୋଗାଡ଼ କରି ଦେଇଛନ୍ତି । ପ୍ରମିଳା ମଧ୍ୟ ସମାଜସେବା ବିଷୟରେ ଦେଢ଼ ମାସ ଟ୍ରେନିଂ ନେବେ । ପ୍ରଶାନ୍ତଙ୍କର ମୁହଁ ଆଶାରେ ଉଜ୍ଜ୍ୱଳ ହୋଇଗଲା । ଅବିନାଶ ବାବୁ ଆଉ ଟିକିଏ ଯୋଗାଡ଼ କଲେ, ବର୍ଷେ ଖଣ୍ଡେ ଭିତରେ ସେ ଓଡ଼ିଶା ଅଫିସ୍‌ର କେନ୍ଦ୍ର

ଟିକସ୍ ଡିରେକ୍ଟର ହୋଇଯିବେ । ପ୍ରମିଳା ଓଡ଼ିଶାର ସମାଜସେବା ବୋର୍ଡର ନେତ୍ରୀ ବା ସମ୍ପାଦିକା ହୋଇଯିବା ଅସମ୍ଭବ ହେବ ନାହିଁ । କାହିଁ ସ୍ତ୍ରୀ, ଆଉ କାହିଁ ବାପାଙ୍କ ଇଚ୍ଛା—ସେ ଚାକିର ଛାଡ଼ି ଗାଁକୁ ଯିବେ, ଘରର ଅଧିଷ୍ଠାତ୍ରୀ ଦେବୀଙ୍କ ଆରାଧନାରେ ଦିନ କଟାଇବେ, ଜମିବାଡ଼ି, ଯାନଯାତ୍ରା ସମ୍ଭାଳିବେ, ବାପା ଓ ବୋଉଙ୍କ ଶୁଦ୍ଧ ଶ୍ରାଦ୍ଧ କରିବାକୁ ଚାହିଁ ବସିବେ—ଆଉ ପ୍ରତିଦିନ ୧୦।୧୫ଜଣ ଅକର୍ମା କର୍ମକୁଣ୍ଠୀଙ୍କୁ ଖାଇବାକୁ ଦେଉଥିବେ । ବାପାଙ୍କ ଦୃଷ୍ଟିରେ ଏଇମାନେ ନାରାୟଣ । ହଁ, ପ୍ରତିଦିନ ସକାଳେ ସନ୍ଧ୍ୟାବେଳେ ଗୁହାଳ ଓଳେଇ ଗୋରୁ ପାଣି ଦେବା ତଦାରଖ କରିବାକୁ ହେବ । ଗାଈ, ଗୋପୁର, ଗୋସ୍ୱାମୀ ଆଉ ଦୁଃଖିରଙ୍କୀ—ଏଇମାନଙ୍କଠାରେ ବାପାଙ୍କ ଭଗବାନ୍ ଅବତରିଛନ୍ତି । ଅବିନାଶବାବୁ ଯଥାର୍ଥ କହନ୍ତି—ମାଛ, କଇଁଛ, ଘୁଷୁରିଙ୍କଠାରେ ଭଗବାନ୍‌ଙ୍କୁ ଆଣି ଥୋଇବା ମାନବ ସଭ୍ୟତାର ଆଦିମ ଯୁଗର କଥା । ତାକୁଇ ଏ ଆଣବିକ ଯୁଗରେ ଧରି ବସିବା ହାସ୍ୟାସ୍ପଦ ।

ବାସ୍ତବିକ ବାପାଙ୍କ ଯୋଗୁଁ ପ୍ରଶାନ୍ତଙ୍କର ମୁଣ୍ଡ ବେଳେବେଳେ ତଳକୁ ଲଇଁଯାଏ । ହେଇଟି, କାଲି ସନ୍ଧ୍ୟାରେ ସେ ଗାଡ଼ି ଚଢ଼ି ବାପାଙ୍କୁ ବିଦାୟ ଦେବାକୁ ଯେତେବେଳେ ରେଳଡ଼ବା ଦୁଆରର ରେଲିଂ ଧରି ତଳକୁ ଚାହିଁଥାନ୍ତି, ସେତେବେଳେ ବାପାଙ୍କ ଚେହେରା ତାଙ୍କ ମନରେ ଘୋର ବିଦ୍ରୋହ ସୃଷ୍ଟି କରିଥିଲା । ସତେ ଯେପରି ତାଙ୍କୁଇ ଲୋକଚକ୍ଷୁରେ ଶ୍ରେଷ୍ଠ କରିବାକୁ, ବାପା ସକାଳର ତିଳକ ରାତି ଦିଘଡ଼ି ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରଖିଥାନ୍ତି । ମୁଣ୍ଡର ଚୁଟି ଗୋଚ୍ଛକ ତାଙ୍କ ନିଜ ନେକଟାଇ ସଙ୍ଗେ ସରଳରେଖାରେ ଥାଏ । ତାଙ୍କ ନିଜ ଦେହରେ ହ୍ୱାଇଟ୍‌ୱେ ଲେଡ୍‌ଲ ଦୋକାନର ହାଲ୍-ଫେସନ୍ କୋଟ୍ ପ୍ୟାଣ୍ଟ, ବତିଶଟଙ୍କା ଦାମର ଜୋତା, ଆଉ ବାପାଙ୍କ ଦେହରେ ତେଲ୍‌ଲୁଣ ଦୋକାନୀ ପିନ୍ଧିଥିବା ପରି କୁରୁତା ଖଣ୍ଡେ । ତା' ଉପରେ ଖଣ୍ଡେ ଶାନ୍ତିପୁରି ଚାଦର । ଭାଗ୍ୟକୁ ଅଣ୍ଟାରେ ବିକଚ୍ଛ ପିନ୍ଧା ଲୁଗା ଓ ପାଦର ଚଟି ବାହାରକୁ ଦିଶୁନଥାଏ । ସେଇ ଡବାରେ ବସିଥିବା ଆଙ୍ଗ୍ଲୋ-ଇଣ୍ଡିଆନ୍ ସାହେବଟି ତାଙ୍କୁ ଚାହିଁ, ତଳକୁ ଆଖି ପକାଇ ବାପାଙ୍କୁ ଚାହିଁବାର ଲକ୍ଷ୍ୟ କଲାବେଳୁ, ପ୍ରଶାନ୍ତବାବୁ ଭଗବାନ୍‌ଙ୍କୁ ଡାକୁଥାନ୍ତି, ଗାଡ଼ି କେମିତି ବେଗେ ଛାଡ଼ନ୍ତା ହେଲେ, ଏ ଦୁର୍ବିସହ ପରିସ୍ଥିତିରୁ

ସେ ରକ୍ଷାପାନ୍ତେ । ଯାହାହେଉ, ଅବଶେଷରେ ଗାଡ଼ି ଛାଡ଼ିଲା ; ବାପା ତାଙ୍କୁ ଗୃହିଁ କହୁଥାନ୍ତି, "ବାପା ! ତୋ'ର ବୟସ ହୋଇଗଲାଣି । ତୋର ଯାହା ମନ ତା'କର । ମୋର କୌଣସି ଆପତ୍ତି ନାହିଁ । ଖାଲି ଏତିକି, ଯାହା କରୁଛୁ, ବୁଝି ବିଗୃରି କର ।" ବାପାଙ୍କ ରୂପ ଓ କଥା ସାଙ୍ଗକୁ ସହଯାତ୍ରୀ ସାହେବର ନଜର ତାଙ୍କୁ ଏପରି ବ୍ୟତିବ୍ୟସ୍ତ କରିଦେଇଥାଏ ଯେ ସେ ବାପାଙ୍କୁ ନମସ୍କାର କରିବାକୁ ବି ଭୁଲିଗଲେ ।

ଗାଡ଼ି ଗୃଲିବାରେ ସହଯାତ୍ରୀ ସାହେବ ତାଙ୍କୁ ପଗୃରିଥିଲେ, "ଏ ମହାଶୟ କ'ଣ ଆପଣଙ୍କ ପିତା ? ତାଙ୍କର ମୁହଁର ଚେହେରା ଧର୍ମଯାଜକଙ୍କ ପରି ।" ସାହେବ ସୌଜନ୍ୟରେ ତାଙ୍କ ପେଟଭିତରର ତାଚ୍ଛଲ୍ୟକୁ ଖୁବ୍ ଲୁଗ୍ଇଥାନ୍ତି ପରା ? ତାଙ୍କ ସ୍ୱର ଓ ମୁହଁରୁ ଜଣାଯାଉଥାଏ, ସତେ ଯେପରି ସେ ବାପାଙ୍କୁ ଖୁବ୍ ପସନ୍ଦ କରିଛନ୍ତି । କିନ୍ତୁ 'ଲୋକ ଧର୍ମଯାଜକ ପରି ଦିଶୁଛି' ବୋଲି କହିଲେ କ'ଣ ବୁଝାଏ, ତାହା ଆଉ କାହାକୁ ଜଣାଥାଉ ବା ନଥାଉ, ପ୍ରଶାନ୍ତ ବାବୁଙ୍କୁ ବେଶ୍ ଜାଣା । ଆଦମ ଯୁଗର ପ୍ରତୀକ ବୃଦ୍ଧଙ୍କୁ ନିଜର ପିତା ବୋଲି ସ୍ୱୀକାର କରିବାକୁ ପ୍ରଶାନ୍ତଙ୍କୁ ବାଧିଲା, ସେ ଅନ୍ୟମନସ୍କ ଭାବରେ ମୁଣ୍ଡ ଝୁଙ୍କାଇଦେଲେ ମାତ୍ର । ସାହେବ ତାଙ୍କ ମୁହଁରେ କ'ଣ ଦେଖିଲେ କେଜାଣି, ଗାଡ଼ି ଆସି ହାବଡ଼ା ଷ୍ଟେସନ୍‌ରେ ଲାଗିଲା ପର୍ଯ୍ୟନ୍ତ ଆଉ ପାଟି ଫିଟାଇଲେ ନାହିଁ । ମନରେ କିନ୍ତୁ ଗୋଟିଏ ଖଟ୍‌କା ରହିଗଲା—ସେ ବାପାଙ୍କର ଏକମାତ୍ର ପୁଅ ; ବାପା ତାଙ୍କର ସୁଖଦୁଃଖ, ଇଚ୍ଛା ଅନିଚ୍ଛା ପ୍ରତି ଟିକିଏ ଦୃଷ୍ଟି ଦେଲେ ଉଭୟଙ୍କର ଜୀବନ କେଡ଼େ ସରସ ନ ହୁଅନ୍ତା ! ସେପରି ନ କରି, କେଉଁ ଆଦମ ଯୁଗର ବିଗୃରଧାରା ଆଡ଼କୁ ତାଙ୍କ ପରି ନବଯୁବକଙ୍କୁ ଟାଣିବାକୁ ଚେଷ୍ଟା କରି ସେ ଇଟାବାଡ଼ରେ ମୁଣ୍ଡ ପିଟୁଛନ୍ତି ସିନା !

ମନର ଏଇ ସବୁ ଦୁଶ୍ଚିନ୍ତା ଯାହାହେଉ ପ୍ରମିଳା ଆଉ ନନ୍ଦିତାଙ୍କ ସଙ୍ଗେ ଆଳାପରେ କଟିଯାଇଥିଲା, ଠିକ୍ ସାଢ଼େ ଦଶଟା ପର୍ଯ୍ୟନ୍ତ । ପ୍ରମିଳା ତାଙ୍କ ଛୋଟ ପକେଟରୁ ମନିବ୍ୟାଗ୍‌ଟି କାଢ଼ି ନେଇ ତିନୋଟି ରିଜର୍ଭ ସିଟ୍ ପାଇଁ ମେଟ୍ରୋ ସିନେମାକୁ ଲୋକ ପଠାଇ ସାରିଥାନ୍ତି । ସେତିକିବେଳେ ଦିଲ୍ଲୀରୁ ଟେଲିଫୋନ୍ ଆସିଲା । ଅବିନାଶ ବାବୁ ତର ତର ହୋଇ ଖାଇବାଘର ଦୁଆରମୁହଁକୁ ଆସି ତାଙ୍କୁ ଡାକି ନେଲେ । ତା'ର ଟିକିକ ପରେ—

ପ୍ରଶାନ୍ତ ବାବୁ ରେଲଗାଡ଼ିର ଯେଉଁ ବଖରାଟିରେ ସ୍ଥାନ ପାଇଥିଲେ ସେଥିରେ ସର୍ବମୋଟ ପାଞ୍ଚୋଟି ଯାତ୍ରୀ । ଆରାମରେ ଲମ୍ବ ହୋଇ ପଡ଼ିଯିବାକୁ ସ୍ଥାନ ମିଳିଥାଏ । ସେ ଶୁଟର ପକେଟରୁ ଟେଲିଗ୍ରାମଟି କାଢ଼ି ପୁଣି ଥରେ ଚାହିଁଲେ । ପଦ ସାତୋଟି ମନରେ ଗାର ପଡ଼ି ରହିଥାଏ—"ପିତା ସଡ଼କ ଦୁର୍ଘଟଣାରେ ଗୁରୁତର ଆହତ । ଶୀଘ୍ର ଆସ ।" ଟେଲିଗ୍ରାମଟି ଆସି ପହଞ୍ଚିଲା ବେଳକୁ ଅବିନାଶବାବୁ ତାଙ୍କ ଡିପାର୍ଟମେଣ୍ଟର ସେକ୍ରେଟାରୀଙ୍କ ସଙ୍ଗେ ଫୋନରେ କଥାବାର୍ତ୍ତା ହୋଇ ସାରିଥାନ୍ତି । ସ୍ଥିର ହୋଇଥାଏ, ଆଜିକୁ ଠିକ୍ ଦଶ ଦିନରେ ଆମେରିକା ଯିବାକୁ ପାସ୍ ମିଳିବ । ଅବିନାଶବାବୁ କହିଲେ, "ପ୍ରଶାନ୍ତ, ତୁମର ଓ ପ୍ରମିଳାର ଉଭୟଙ୍କର ଭାଗ୍ୟ, ଏତେ ସୁରୁଖୁରୁରେ କାର୍ଯ୍ୟଟି ହୋଇଗଲା । କିନ୍ତୁ ମୋତେ ଏ ହପ୍ତାକଯାକ ଚଞ୍ଚଳ ହେବାକୁ ପଡ଼ିବ । ଅବଶ୍ୟ ତୁମମାନଙ୍କ ଭଳି ଆମର ଗୁଡ଼ାଏ ଖର୍ଚ୍ଚ ହୁଏନାହିଁ । କିନ୍ତୁ ବନ୍ଧୁମାନଙ୍କୁ ନିମନ୍ତ୍ରଣ ତ ଦେବାକୁ ହେବ । ଚର୍ଚ୍ଚଟି ସଜାଇବାକୁ ଫୁଲଗୁଡ଼ାଏ ତ ସଂଗ୍ରହ କରିବାକୁ ହେବ । ଦଶ ତାରିଖରେ ବିବାହ ସାରିଦେବା । ସେହିଦିନ ରାତିରେ ତୁମେମାନେ ରେଲ ଧରି ଦିଲ୍ଲୀ ଯିବ ଯେ ବାର ତାରିଖ ଦିନ ଉଡ଼ାଜାହାଜ ଧରିବ । ଏତେ ଲମ୍ବା ଉଡ଼ାଜାହାଜ ଯାତ୍ରା ପୂର୍ବରୁ ରେଲ ଯାତ୍ରା କରିଥିଲେ ପାର୍ଥକ୍ୟଟା ବେଶ୍ ବୁଝି ପାରିବ ।" ଅବିନାଶବାବୁଙ୍କ ଠାରୁ ଛୁଟିନେଇ ପ୍ରଶାନ୍ତ ଠିଆ ହୋଇଛନ୍ତି, ଟେଲିଗ୍ରାଫ ପିଅନ ଆସି ଟେଲିଗ୍ରାମଟି ଅବିନାଶ ବାବୁଙ୍କ ହାତକୁ ବଢ଼ାଇଦେଲା ।

ଅବିନାଶ ବାବୁ ପ୍ରତିଦିନ ପ୍ରାୟ ଦଶ ବାରଟା ସରକାରୀ ଟେଲିଗ୍ରାମ ଖୋଲନ୍ତି । ସେ ପିଅନର ଖାତାରେ ଦସ୍ତଖତ ମାରିଦେଇ ମାମୁଲି ଢଙ୍ଗରେ ତାରଟା ତାଙ୍କ ଆଡ଼କୁ ଫୋପାଡ଼ି ଦେଲେ । ଟେଲିଗ୍ରାମଟି ହାତରେ ଧରିବା-ମାତ୍ରେ ପ୍ରଶାନ୍ତ କାହିଁକି କେଜାଣି ଥରିଗଲେ । ଆଖି ଆଗରେ ବାପାଙ୍କର ଚେହେରା ଦିଶିଗଲା । ତା'ପରେ ପୁଲନ୍ଦା ଫିଟାଇ ପଢ଼ିଲେ, ଏଇ ଦୁଃସମ୍ବାଦ । ତାଙ୍କ ହାତରୁ ଟେଲିଗ୍ରାମ କାଗଜଟି ଅବିନାଶ ବାବୁ ଟାଣି ନେଲାବେଳେ ସେ ଚମକି ପଡ଼ିଲା ପରି ତାଙ୍କୁ ଚାହିଁଲେ । ଅବିନାଶବାବୁ ଟେଲିଗ୍ରାମ୍ ଉପରେ ଆଖି ବୁଲାଇ ନେଇ ପୂର୍ଣ୍ଣ ଅବିଚଳିତ ଭାବରେ କହିଲେ, "ପ୍ରଶାନ୍ତ ! ଟେଲିଗ୍ରାମଟି ପାଇ ଏତେ ବିଚଳିତ ହୋଇଯାଉଛ ? ହୁଏତ ଆଘାତ ଗୁରୁତର ହୋଇନଥିବ ;

ହେଲେ ବା, ମନୁଷ୍ୟ ତ ଅମର ନୁହେଁ, ସମସ୍ତଙ୍କୁ ଦିନେ ସେଇ ରାସ୍ତା ଧରିବାକୁ ହେବ । ପୁଣି ତୁମର ଯେ ବାପା, ସେ ଏ ଯୁଗରେ ଏକରକମ ଡମାଦ୍ଧ । ଗଲେ ଯିବେ । ତୁମେ ଭଗବାନ୍‌ଙ୍କୁ ଟିକିଏ ପ୍ରାର୍ଥନା କର । ତା'ପରେ ଟିକିଏ ସିନେମାଫିନେମା ଦେଖି ମନଟାକୁ ଭୁଲାଅ । ଆଚ୍ଛା, ଠିକଣାଟା ଲେଖିଲି ଦେଖି । ଆଗେ ଗୋଟେ ଟେଲିଗ୍ରାମ କରି ଘଟଣାଟା ଭଲକରି ବୁଝିବା ।'' ପ୍ରଶାନ୍ତବାବୁ କିଛି ଉତ୍ତର ନ ଦେଇ, କାବା ହୋଇ ଅବିନାଶ ବାବୁଙ୍କ ମୁହଁକୁ ଟିକିଏ ଚାହିଁ, ଯାଇଥିଲେ ପ୍ରମିଳାଙ୍କ କୋଠରୀକୁ ।

ତାଙ୍କର ମୁହଁ ଦେଖି ପ୍ରମିଳା ବିଶେଷ ଉଦ୍‌ବିଗ୍ନ ହୋଇ ପଡ଼ିଲେ, ଘଟଣାଟା ଜାଣିବା ପାଇଁ ଉତ୍କଣ୍ଠା ଦେଖାଇଲେ, କିନ୍ତୁ ପ୍ରଶାନ୍ତଙ୍କ ହାତରୁ ନେଇ ଟେଲିଗ୍ରାମଟି ଦେଖିଲା ପରେ ତାଙ୍କର ସେ ଉତ୍କଣ୍ଠା ଉଭେଇ ଗଲା । ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ,''ପ୍ରଶାନ୍ତ ବାବୁ, ଆପଣ ଯେପରି ବିଚଳିତ ହୋଇ ପଡ଼ିଲେ ମୁଁ ବିଗ୍ଭରିଲି, ବୋଧେ ଆମର ଆମେରିକା ଯିବା ପ୍ରସ୍ତାବ ସଫଳ ହେଲା ନାହିଁ । ଦୁର୍ଘଟଣା ତ ଦୁର୍ଘଟଣା । ଆମେ ତ ତାକୁ ରୋକି ପାରି ନ ଥାନ୍ତେ । ଏବେ ଡାକ୍ତରମାନେ ଯେପରି ଚିକିତ୍ସା ଓ ଅସ୍ତ୍ରୋପଚାର କରି ପାରିବେ ଆମେ ତ ତା' ପାରିବା ନାହିଁ, ଆପଣ ଏତେ ବ୍ୟସ୍ତ ହୋଇ ଯାଉଛନ୍ତି କାହିଁକି ? ବାପା ତ ଠିକ୍ କହୁଛନ୍ତି, ଗୋଟେ ଟେଲିଗ୍ରାମ୍ କରିଯାଉ । ତା'ର ଉତ୍ତର ଆସୁ, ଯଦି ଆପଣଙ୍କର ଯିବାର ପ୍ରୟୋଜନ ହେବ ତେବେ ଯିବେ ।''

ନନ୍ଦିତା ଏଥିରେ ଯୋଗଦେଇ କହିଲେ, ''ଅବଶ୍ୟ ଆପଣଙ୍କର ଉତ୍କଣ୍ଠା ହେବାର କଥା । କିନ୍ତୁ ଏପରି ଅବସ୍ଥାରେ ଆପଣ ଏକୁଟିଆ ଯିବେ ବା କିପରି ? ଆଜି ମନଟାକୁ ସ୍ଥିର କରନ୍ତୁ, ସନ୍ଧ୍ୟାରେ ସିନେମା ଯିବା, ତା'ପରେ ଯିବେ ଯଦି ରାତି ଏକଟା ଟ୍ରେନ୍ ଧରି ପାରନ୍ତି ।''

ସେତିକବେଳକୁ ପ୍ରଶାନ୍ତବାବୁ ମନଟାକୁ ସ୍ଥିର କରିବାକୁ କେତେ ଉଦ୍ୟମ କରିଛନ୍ତି ତା ତାଙ୍କୁହିଁ ଜଣା । ଅବଶ୍ୟ ସେ ନିଜ ମନକୁ ଏତିକି ସ୍ଥିର ରଖି ପାରିଥିଲେ ଯେ ଅବିନାଶ ବାବୁଙ୍କ ପରିବାରର ଅତି ଆଧୁନିକ ସମବେଦନା ଜ୍ଞାପନରେ ସୁଦ୍ଧା କ୍ରୋଧ ସମ୍ବରଣ କରି ପାରିଥିଲେ, ଭଦ୍ର ଭାଷାରେ ସେମାନଙ୍କୁ

ଶୁଣାଇ ଦେଇଥିଲେ, ଆଜ ସିଏ ସିନେମା ଯାଇ ପାରିବେ ନାହିଁ, ଟେଲିଗ୍ରାମ୍ କରି ଉତ୍ତରକୁ ବି ଅପେକ୍ଷା କରିବେ ନାହିଁ, ରାତି ସାଢ଼େ ସାତଟା ଏକ୍ସପ୍ରେସରେ ଗାଁକୁ ଫେରିବେ, ଡାକ୍ତରଖାନାରେ ବାପାଙ୍କର ଖଟିଆ ପାଖକୁ ।

ସେତିକି ବେଳୁ ଏ ପର୍ଯ୍ୟନ୍ତ ବାପାଙ୍କ କଥା ଗୁଡ଼େଇ ଗୁଡ଼େଇ ହୋଇ ମନକୁ ଆସୁଥାଏ । ସଡ଼କରେ ଦୁର୍ଘଟଣା ! ବାପା ତାଙ୍କୁଇ ବିଦାୟ ଦେଇ ସଡ଼କରେ ଫେରୁଥିବା ବେଳେ ତ ଏ ଦୁର୍ଘଟଣା ଘଟିଥିବ ! ବିଦାୟ ବେଳରେ ବାପାଙ୍କର ଚାହାଣି ମନେ ପଡ଼ିଗଲା । ସତେ ତ ବାପା ଜଣେ ସିଦ୍ଧ ପୁରୁଷ ପରି ଦିଶୁଥାନ୍ତି । ସାହେବ ଭଦ୍ରଲୋକଟି ତାଙ୍କୁ ଯେ ଧର୍ମଯାଜକଙ୍କ ସଙ୍ଗେ ତୁଳନା କଲେ ତା ବୋଧହୁଏ ଅଛାରେ ନୁହେଁ, ଯଥାର୍ଥ କହିଛନ୍ତି । ପିଲାଦିନେ ସେ ଲୋଅର ପ୍ରାଇମେରୀ ସ୍କୁଲରୁ ଛୁଟି ହୋଇ ଘରକୁ ଧାଇଁ ଆସିଲାବେଳେ ଦାଣ୍ଡ-ଦୁଆରେ ତାଙ୍କୁ ଚାହିଁ ବସିଥିବାବେଳେ ବାପା ଯିମିତି ଦିଶନ୍ତି, ଅଜ ପୁଣି ସିମିତି ଦିଶିଲେ ।······ତାଙ୍କୁ ଜଣାଯାଉଥାଏ, ସତେ ଯେପରି ଏକ୍ସପ୍ରେସ୍ ମାଲଗାଡ଼ି ପରି ଚାଲୁଛି ।

ଚିନ୍ତା କରୁକରୁ କେତେବେଳେ ପ୍ରଶାନ୍ତବାବୁଙ୍କୁ ଟିକିଏ ଶୁଚିନିଦ ମାଡ଼ିଗଲା । ସେ ସ୍ୱପ୍ନ ଦେଖିଲେ, କାଲିର ସେଇ ରେଲ ଦୁଆରମୁହଁର ଦୃଶ୍ୟ ! ସେ ରେଲ ଡବା ଦୁଆରର ବାଡ଼କୁ ଧରି ତଳକୁ ଚାହିଁଛନ୍ତି, ବାପା ତଳେ ଠିଆ ହୋଇ ମୁଣ୍ଡ ଟେକି ତାଙ୍କୁ ଚାହିଁ କହୁଛନ୍ତି—ବାପା ! ତୁ ବଡ଼ ହୋଇଗଲୁଣି । ଯାହା କରିବୁ······ସାହେବ ଭଦ୍ରଲୋକଟି ରେଲରୁ ତଳକୁ ଓହ୍ଲାଇପଡ଼ି ବାପାଙ୍କୁ ଭୂଇଁରେ ମୁଣ୍ଡ ଲଗାଇ ନମସ୍କାର କରୁଛନ୍ତି ।

ପ୍ରଶାନ୍ତ ବାବୁଙ୍କର ନିଦ ଚହଁକିନା ଭାଙ୍ଗିଗଲା । ସେ ଆଖି ମଳିଚ ରେଲଡବା ଭିତରେ ଆଖି ବୁଲାଇଗଲେ । ତାଙ୍କ ସହଯାତ୍ରୀଙ୍କ ଭିତରେ ବେଶ୍ ସରଗରମ ଆଲୋଚନା ଚାଲିଛି । ଟୋକାଳିଆ ତିନିଜଣ, ବୋଧହୁଏ କଲେଜଛାତ୍ର ହେବେ, ଜଣେ ଶୁଭ୍ରଚୁଳ ପ୍ରୌଢ଼ଙ୍କ ସଙ୍ଗେ କ'ଣ ଗୋଟାଏ ଆଲୋଚନାରେ ମଜ୍ଜି ଯାଇଥାନ୍ତି । ସେତିକିବେଳକୁ ପ୍ରୌଢ଼ କହୁଥାନ୍ତି, "ତୁମେମାନେ ଯେଉଁ ଯୁକ୍ତି ଦେଖାଉଛ, ଆମ ପିଲାଦିନେ ଆମେ ସେଇ ଯୁକ୍ତି

ବାଡ଼ୁଥିଲୁ । ସେତେବେଳେ ତାହା ଆମକୁ ଅକାଟ୍ୟ ମନେ ହେଉଥିଲା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ବୁଦ୍ଧି ପାକଳ ହେଲା, ତ୍ରୁଟି କେଉଁଠି ଥିଲା ଦିଶିଲା । ତୁମମାନଙ୍କର ସେଇଆ ହେବ । ପାଠ ପଢ଼ିଛ, ବୁଦ୍ଧିର ପ୍ରଖରତା ତ ଥିବାର ଦେଖୁଛୁ । ବଗ୍ରର, ବୁଝ । ତୁମକୁ ମଧ୍ୟ ଜଣାପଡ଼ିବ, ପ୍ରତ୍ୟେକ ଦେଶର ଯେଉଁ ରୀତି ନୀତି ପରଂପରାକ୍ରମେ ଚାଲି ଆସୁଛି, ତାହା ସମୂଳେ ଉପାଡ଼ି ଦେଇ ହେବ ନାହିଁ । ଶାଖା ପ୍ରଶାଖାରେ ଟିକିଏ କାଟଛାଂଟ କରିବ ଯଦି କର । କିନ୍ତୁ ମୂଳ ଉପୁଡ଼ିବ ନାହିଁ, ଗଣ୍ଡିର କାଟଛାଂଟ ମଧ୍ୟ ଚାଲିବ ନାହିଁ ।”......

ଖଡ଼ଗପୁରରେ ଗାଡ଼ି ପହଞ୍ଚିଲା ବେଳକୁ କାମରାଟି ନିଃଶବ୍ଦ । ସମସ୍ତେ ଶୋଇପଡ଼ିଲେଣି । ପ୍ରଶାନ୍ତବାବୁ ଆଖି ବୁଜି ପଡ଼ିରହି, ବାପାଙ୍କ କଥା ଓ ସହଯାତ୍ରୀ ପ୍ରୌଢ଼ଙ୍କ କଥାକୁ ମିଶାଇ ତା'ର ଭିତରୁ ସତ୍ୟ ଖୋଜି ବାହାର କରିବାକୁ ଚେଷ୍ଟା କରୁଥାନ୍ତି—ମନ ଯାଇ ରହୁଥାଏ ଖୋର୍ଦ୍ଧା ଡାକ୍ତରଖାନାରେ ଗୁରୁତର ଭାବେ ଆହତ ହୋଇ ପଡ଼ିଥିବା ବାପାଙ୍କ ପାଖେ ।

ତହିଁ ଆରଦିନ ସୂର୍ଯ୍ୟ ଉଇଁ ଆସିଲା ବେଳକୁ ଗାଡ଼ିଯାଇଁ ଖୋର୍ଦ୍ଧା ରୋଡ଼ରେ ଲାଗିଲା । ସେତେବେଳକୁ ପ୍ରଶାନ୍ତବାବୁ ଗାଧୋଇ ପାଧୋଇ ଜାମା, କୁରୁତା ପିନ୍ଧି ଓହ୍ଲାଇବାକୁ ପ୍ରସ୍ତୁତ ହୋଇଥାନ୍ତି । ପାଞ୍ଚ ମିନିଟ୍ ଭିତରେ ଟାକ୍ସି ବନ୍ଦୋବସ୍ତ ହୋଇଗଲା । ୧୦।୧୫ ମିନିଟ ଭିତରେ ପ୍ରଶାନ୍ତ ବାବୁ ଯାଇ ଓହ୍ଲାଇଲେ ଖୋର୍ଦ୍ଧା ଡାକ୍ତରଖାନାର ଗେଟ ପାଖରେ । କାହାକୁ କିଛି ନ ପଚାରି ସେ ଯନ୍ତ୍ରଚାଳିତ ପରି ଚାଲିଗଲେ ରୋଗୀମାନଙ୍କ ଖୁଆଡ଼କୁ । ଗ୍ରେଟ ଓ୍ୱାର୍ଡ଼ଟିଏ । ସାତଖଣ୍ଡି ଖଟରୁ ୬ଟିରେ ରୋଗୀ ପଡ଼ିଛନ୍ତି । ଗୋଟିକରୁ ଶେଯ ପଟା ଉଠାଇ ନିଆ ହୋଇଛି ।............

ଶେଷ ଖବର ପାଇ ପ୍ରଶାନ୍ତ ବାବୁ ସେଇ ଖଟିଆ ପାଖରେ ଥକା ହୋଇ ବସିପଡ଼ିଲେ । ଟେଲିଗ୍ରାମ ପାଇବାବେଳୁଁ ସେ ଏଇ ଖବର ପାଇଁ ପ୍ରସ୍ତୁତ ହୋଇଯାଇଥିଲେ ବି, ମନର କୋଉ କୁଣରେ ଗୋଟାଏ ଆଶା ରହିଥିଲା, ବାପା ଡାକ୍ତରଖାନାରୁ ଭଲ ହୋଇ ଘରକୁ ଫେରିବେ । ପ୍ରଶାନ୍ତ ବାବୁଙ୍କର ଆଖିରୁ ଲୁହ ବି ବାହାରିଲା ନାହିଁ । ପଥର ଦିନ, ଷ୍ଟେସନର ବିଦାୟକାଳୀନ

ଦୃଶ୍ୟ ଆହୁରି ଭୟଙ୍କର ହୋଇ ତାଙ୍କ ଆଗରେ ଦିଶିଲା । ସେ ସେଦିନ ବାପାଙ୍କୁ ନମସ୍କାର ହେବା ବି ବନ୍ଦ କରି ଦେଇଛନ୍ତି । ବାପା ଶେଷ ନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ତାଙ୍କର ସେଇ ଅବଜ୍ଞାର ବ୍ୟଥା ଅନୁଭବ କରିଥିବେ ତ !·

ତାଙ୍କ ଆସିବା ଖବର ପାଇ ଡାକ୍ତର ବାବୁ ଆସି ତାଙ୍କୁ ଦୁର୍ଘଟଣାର ସବିଶେଷ ଖବର ଶୁଣାଇଲେ । ପ୍ରଶାନ୍ତବାବୁ କିଛି ଶୁଣୁ ନଥାନ୍ତି । ଗଲାବେଳେ ତାଙ୍କୁ ଏତିକି ଶୁଭିଲା, ପାଖ ଖଟିଆରେ ରୋଗୀଟି କହୁଛି, "ବୁଢ଼ା ଏଇ ପୁଅକୁ ଦେଖିବ ବୋଲି ଚାହିଁ ଚାହିଁ ମଲା ପରା !" ପ୍ରଶାନ୍ତ ବାବୁଙ୍କର ମନେ ହେଲା, ରୋଗୀ ବକ୍ରୋକ୍ତି କରି ପିତାଙ୍କର ସେ ଉପଯୁକ୍ତ ପୁତ୍ର ନୁହନ୍ତି ବୋଲି ସମାଲୋଚନା କରୁଛି । ବହୁଦିନ ପରେ ଆଜି ସର୍ବପ୍ରଥମେ ତାଙ୍କର ମନେ ହେଲା, ରୋଗୀଟି ଯଥାର୍ଥ କହୁଛି ।

ପ୍ରଶାନ୍ତବାବୁ ଯାଇ ଗାଁରେ ପହଞ୍ଚିଲା ବେଳକୁ ବେଳ ଦି' ଘଡ଼ି ହେବ । ଗାଁ ଯୁବକମାନଙ୍କର ଜିଦ୍‌ରେ ପାଖଆଖ ୫ ଖଣ୍ଡ ଗାଁରୁ ସଂକୀର୍ତ୍ତନ ମଣ୍ଡଳ ଆସି ପହଞ୍ଚି ଯାଇଥାନ୍ତି । ଗୋଟିଏ ବେତାରେ ଅଧବେତାଏ ପଇସା, ଦୋପଇସି ଧରି ତାଙ୍କ ଗୁମାସ୍ତା କୋକେଇ ଆଗରେ ଠିଆ ହୋଇଥାନ୍ତି । ଗାଁର ସବୁଯାକ ବାଦ୍ୟକାର ଆସି ଜୁଟିଛନ୍ତି । ସବୁ ଜାତିର ଲୋକ ଶବ ଯାତ୍ରାରେ ଯିବାକୁ ଭେଲା ଭେଲା ହେଉଥାନ୍ତି । ତାଙ୍କ ଉପରେ ନଜର ପଡ଼ିଯିବା ମାତ୍ରେ, ଗାଁ ଲେଖାରେ ଗୋସାଇଁ ବାପା ହେଉଥିବା ମୁକୁନ୍ଦ ଦାସେ ପାଟିକରି ଉଠିଲେ, "ଆରେ, ବିଶ୍ୱନାଥର ସୁକୃତକୁ ଦେଖ ! ଗୋଟିଏ ବୋଲି ପୁଅ । ଶହ ଶହ କୋଶ ଦୂରରେ ଥିଲା । କିଏ ମୁଖାଗ୍ନି ଦେବ ବୋଲି ଭାଳି ହେଉଥିଲି । ହେଇଟି ଦେଖ । ଆରେ ପ୍ରଶାନ୍ତ, ବେଗେ ଘରକୁ ଯାଇ ଲୁଗା ପାଲଟି ଆସିବୁ ଟି । ଆରେ ପଇତା ଅଛି ଟି ?

ମୁକୁନ୍ଦ ବାପା ତାଙ୍କ ସଙ୍ଗେ ସଙ୍ଗେ ଘର ଭିତରକୁ ପଶି ଆସିଲେ । ବୋଉଙ୍କ ସାଙ୍ଗେ ଦେଖା ହେବାକୁ ସୁଯୋଗ ମିଳିଲା ନାହିଁ । ସାଙ୍ଗେ ସାଙ୍ଗେ ମୁକୁନ୍ଦ ବାପା ; କହୁଥାନ୍ତି, "ଆରେ ପ୍ରଶୁ, ଆମର ଯୁ ଶୁଦ୍ଧଘର, ଯ୍ୟାର ବାଧି

ବିଧାନ କରୁ କରୁ ବାରଟି ଦିନ ଇମିତି ଗୁଞ୍ଜିଯିବ ଯେ ୧୩ ଦିନ ବେଳକୁ ମନର ଘା ଆସି ଶୁଖିଯାଇଥିବ । ମଣିଷ ଯୁଆଡ଼ୁ ଆସିଥିଲା ସିଆଡ଼େ ଗଲା । ଏଥିପାଇଁ ଗୋଟେ ଶୋକ କ'ଣ ? ଖାଲି ଏତିକି ବାଧୁଛି, ମୋ ଶୁଖି ଘରଟା ବିଶିଆ କରଥାନ୍ତା । ମୋର ଆଉ କେହି ନାହିଁ, ବାପା ! ସେଇ ମୁଖାଗ୍ନି ଦେବ ବୋଲି ଗୁହିଁ ବସିଥିଲି ।...

"ହେଉ, ନେ ନେ, ମୋ'ଠୁ ପଟେ ପଇତା କାନ୍ଧରେ ପକାଇଦେ । ଟେବେଗେ ଆ' । ବିଶ୍ୱନାଥ ପରି ପୁଣ୍ୟାତ୍ମା ଲୋକ ବାସିମଡ଼ା ହୋଇଯାଉଛି । ଆମର ତ କର୍ତ୍ତବ୍ୟ ନ ଥିଲା । ଭୋରରେ ନ ନେଇଚୁ ଭଲ ହେଲା । ତୁ ଆସି ପହଞ୍ଚିଲୁ । ସେ ପିଲାଗୁଡ଼ାଙ୍କ ଯୋଗୁଁ ଏତେ ବିଳମ୍ବ ହେଲା ବୋଲି ଚିଡ଼ୁଥିଲି । ଆମର ଇମିତି ସଙ୍କୀର୍ତ୍ତନ କରି ଶବ ନେବାର ନୁହେ । ତୋ ବାପ ତ ସମସ୍ତଙ୍କର ବାପ ହୋଇଥିଲା, କାହାକୁ ନାହିଁ କରନ୍ତି ? ହଉ ଭଲ ହୋଇଛି, ତୁ' ଆସି ଯଥାସମୟରେ ପହଞ୍ଚିଗଲୁ ।"

ଏତିକି ବେଳେ ଭିତର ଘରୁ ବିକଳ ଚିତ୍କାର ଶୁଭିଲା ; ବୁଢ଼ା ସେଇ ଚିତ୍କାରକୁ ଲକ୍ଷ୍ୟ କରି କହିଲେ, "ମା, କାନ୍ଦିଲେ ଆଉ ବିଶ୍ୱନାଥ ଫେରିବ ନାହିଁ । ପୁଣ୍ୟାତ୍ମା ସେ । ବିନା ରୋଗରେ ସ୍ୱର୍ଗକୁ ଗୁଲିଗଲା । ନିଜ ଦୁଃଖକୁ ନିଜେ ସମ୍ଭାଳ । ତୁମ ଆଖିର ଲୁହରେ ପୁଅର ଅମଙ୍ଗଳ ନ ହେଉ ।"

ବାର ପନ୍ଦ ପଡ଼ି ସାରିଥାଏ । ପ୍ରଶାନ୍ତ ଲଣ୍ଡା ମୁଣ୍ଡରେ ହାତ ବୁଲଉ ବୁଲଉ ବୋଉ ଯୋଉଁଠି ପଡ଼ିଥିଲେ ସେଠାରେ ଯାଇ ଠିଆ ହେଲେ । କହିଲେ, "ବୋଉ ! ତୁ ଯଦି ସବୁବେଳେ ଇମିତି ମୂକ ହୋଇ ବସିବୁ ମୁଁ ଚଳିବି କମିତି ?" ବୋଉଙ୍କର କୋହ ବଢ଼ିଲା । କିଛି ସମୟ ପରେ ସେ ମନକୁ ଟାଣ କରି କହିଲେ, "ପ୍ରଶୁ ! ମୂକ ହେବି ନାହିଁ ଆଉ କ'ଣ କରିବି ? କେଡ଼େ ଆରବା ଲଗାଇ ଦେଇ ଆଖି ପିଛୁଳାକେ କୁଆଡ଼େ ଗୁଲିଗଲେ ! ତୁ ତ ପନ୍ଦର ଦିନ ଛୁଟି ଆଣିଥିବୁ । ଆଜି କି କାଲି ତୁ ଯିବୁ । ମୋତେ ଘରଆଡ଼ ଖାଁ ଖାଁ କରି ମାଡ଼ି ପଡ଼ୁଛି ।"

ପ୍ରଶାନ୍ତ ବୋଉ ପାଖରେ ବସିପଡ଼ି କହିଲେ, "ବୋଉ ! ତତେ ମୁଁ ଛାଡ଼ି କରି ଯିବି କୁଆଡ଼େ ? ମୁଁ ବହୁତ ବିଚାରିଛି, ସବୁ ବୁଝିଛି । ତୁ ଯେଉଁଠି, ଇଷ୍ଟଦେବୀ ଯେଉଁଠି, ମୁଁ ସେ ସ୍ଥାନ ଛାଡ଼ି ଯିବି କୁଆଡ଼େ ? ଏଇ ବା'ର ଦିନରେ ମୁଁ ଗାଁର ଲୋକଙ୍କୁ ଚିହ୍ନିଛି । ଯାଙ୍କ ଅକପଟ ସ୍ନେହ କଲିକତାରେ ପାଇବି ନା ଆମେରିକାରେ ପାଇବି ?

ବୋଉ ଛଳଛଳ ଆଖିରେ ପ୍ରଶାନ୍ତଙ୍କ ଆଡ଼କୁ ଦଣ୍ଡେ ଚାହିଁଲେ । ତା'ପରେ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ସେ କାଇଁକାଇଁ ହୋଇ ପୁଅଙ୍କୁ ବାହୁନି କାନ୍ଦିକାନ୍ଦି ତା'ର ଭିତରେ କହୁଥାନ୍ତି, "ଏଡ଼େ ଦମ୍ଭରେ କହୁଥିଲି, 'ମୋ ପୁଅ ବାଟ ହୁଡ଼ିବ ନାହିଁ, ଘରର ପୁଅ ଯଥା ସମୟରେ ଘରେ ଆସି ପହଞ୍ଚିବ ।' କ'ଣ ଏଇ ସମୟକୁ ଲକ୍ଷ୍ୟ କରିଥିଲି ? ପୁଅ ଫେରିବାର ତ ଦେଖିଲି ନାହିଁ ।"

ସପ୍ତାହ ପରେ ଦିନେ ଅବିନାଶ ବାବୁ ପ୍ରମିଳାଙ୍କୁ ପଚାରିଲେ, "ପ୍ରେମି, ପ୍ରଶାନ୍ତର ଖବର କିଛି ପାଇଛ ? ସେ ଛୁଟି ବଢ଼ାଇବାକୁ ବି ଭୁଲିଯାଇଛି ' ତୋତେ ଚିଠି ଦେଇଛି ? ପ୍ରମିଳା ପ୍ରଖାନ୍ତଠାରୁ ପାଇଥିବା ଚିଠି ଖଣ୍ଡି ବାପାଙ୍କ ହାତକୁ ବଢ଼ାଇଦେଲେ । ଅବିନାଶ ବାବୁ ଏଠୁ ସେଠୁ ଟିକିଏ ପଢ଼ିଦେଇ କହିଲେ, "ମୂର୍ଖ ! ଭାବ-ପ୍ରବଣତାର ଅବତାର ! ପ୍ରଶାନ୍ତ ଜୀବନର ଯେଉଁ ସୁଯୋଗ ହରାଉଛି, ଦିନେ ସେଥିପାଇଁ ନିଶ୍ଚୟ ପସ୍ତାଇବ ।"





—୧—

ସେ ଦିନ ଦାସେ ଲକ୍ଷ୍ମୀକୁ ସାଙ୍ଗରେ ଧରି ଯେତେବେଳେ ନିଜ ଗାଁ ଷ୍ଟେସନରେ ରେଲରୁ ଓହ୍ଲାଇଲେ, ସେତେବେଳେ ତାଙ୍କୁ ଗଡ଼ ଜିଣିଲା ପରି ଲାଗୁଥାଏ । ତାଙ୍କ ମୁଣ୍ଡରୁ ଗୋଟିଏ ବଡ଼ ବୋଝ ଉତୁରି ଗଲା । ଦାସେ ଚାରି ଚାରିଟା ଝିଅ ବାହା ଦେଇ ସାରିଥାନ୍ତି । ଜ୍ୱାଇଁ ବାଛିବା ତାଙ୍କର ଅଭ୍ୟାସ ହୋଇ ଗଲାଣି । ପାତ୍ରଟିକୁ ଚାହିଁ ଦେବ, ଆଖିରେ ଯଦି ମନୁଷ୍ୟତା ଅଛି, ମୁହଁରେ ଯଦି ସଚ୍ଚରିତ୍ରର ଆଭା ଦିଶୁଛି, ତେବେ କାମ ଫତେ । ଜ୍ୱାଇଁଙ୍କର ପୈତୃକ ସମ୍ପତ୍ତି ବାଡ଼ିଗୋବରେ ଗୋଟେ ନ ଥାଉ ପଛେ, ସେଥିରେ ଯାଏ କେତେ ଆସେ କେତେ ? ପୁରୁଷର ଭାଗ୍ୟ ତା ନିଜ ହାତରେ, ନିଜ ମଣିଷ-ପଣିଆରେ । କିନ୍ତୁ ବୋହୂ କଥା ସ୍ୱତନ୍ତ୍ର । ସ୍ତ୍ରୀର ମୁହଁକୁ ଚାହିଁ ତ ମଣିଷପଣିଆ ବାରିହେବ ନାହିଁ । ସ୍ୱଭାବ ଯୋଗୁଁ ହେଉ, ବା ବହୁଯୁଗର ସାମାଜିକ ପରମ୍ପରା ଯୋଗୁଁ ହେଉ,

ସ୍ତ୍ରୀର ମୁହଁରେ ସବୁବେଳେ ମୁଖା ରହୁଛି । ମୁହଁରୁ କିଛି ଜାଣି ହେବ ନାହିଁ, ଯେପରି ଆଦିବାସୀ ଲୋକଙ୍କ ମୁହଁରୁ ପେଟ ଭିତର ବାରିହୁଏ ନାହିଁ । ପୁଣି କୌଣସି ସ୍ତ୍ରୀର ମୁହଁକୁ ଚାହିଁବା ଦାସଙ୍କ ଅଭ୍ୟାସରେ ନାହିଁ । ନିର୍ଦ୍ଦିଷ୍ଟ ପରି-ବେଶରେ ସ୍ତ୍ରୀ ନ ଥିଲେ ସେ ମୁହଁକୁ ଚାହିଁ ପାରନ୍ତି ନାହିଁ । ତେଣୁ ବୋହୂ ଚିହ୍ନିବାକୁ ଦାସେ କୁଳର ମର୍ଯ୍ୟାଦା ଖୋଜି ହୋଇ ବର୍ଷ ଖଣ୍ଡେ ବନ୍ଦୁକାଗାରେ ଚକର୍ ଖାଇ ଆସିଥିଲେ । ଗୃହେ ତିନି ଝିଅଙ୍କୁ ପାର କରିବାକୁ ତାଙ୍କୁ ଯେତେ ପଥଶ୍ରାନ୍ତ ପଡ଼ି ନ ଥିଲା, ତା'ର ଚାରି ପାଞ୍ଚଗୁଣ ହୋଇ ଯାଇ ଥିଲେ ବି, ଭଲ ପାତ୍ରୀଟିଏର ସନ୍ଧାନ ସେ ପାଇ ନ ଥିଲେ । କାଳୀ, ଗୋରୀ ବିଚାର ତାଙ୍କ ମନରେ ଉଠୁ ନାହିଁ ; ସୁସ୍ଥ ଅସୁସ୍ଥ ବିଚାର ବି ନୁହେଁ । ମୁହଁରେ ଟିକିଏ ସରଳତା ଥିଲେ ହେଲା; ସେ ପୁଣି ପାତ୍ରୀର ନୁହେଁ; ତା' ବାପ, ମା'ଙ୍କର !

ଝିଅ ଜନ୍ମ କରି ମୁହଁରେ କେଉଁ ବାପ ମା'ର ବା ସରଳତା ଦିଶିବ ? ନାରୀମାନଙ୍କର ସ୍ୱାଧୀନତାର ଏ ଯୁଗରେ କେଉଁ ବାପ ମା' ଝିଅଟିଏ ଜନ୍ମ କରିବା ସାଙ୍ଗେ ସାଙ୍ଗେ ନିଜକୁ ଅପରାଧୀ ବୋଲି ନ ବିଚାରୁଛନ୍ତି ? ଝିଅର ସୁନ୍ଦରପଣ ଥିବ, ପାରିବାପଣ ଥିବ, ପ୍ରକୃତି ଭଲ ଥିବ—ତାହା ତ କିନ୍ତୁ ଯଥେଷ୍ଟ ନୁହେଁ । ତା ବାପ ପାଖରେ ଅନ୍ତତଃ ଟଙ୍କା ପାଞ୍ଚ ହଜାର ବରପିତାଙ୍କ ହାତକୁ ବା ସ୍ୱୟଂ ଜ୍ୱାଇଁଙ୍କ ହାତକୁ ଟେକି ଦେବାର କ୍ଷମତା ଥିବା ଦରକାର । କଳ୍ପିତ ସମ୍ବନ୍ଧୀ ଦାସଙ୍କୁ ଦେଖି ଶଙ୍କି ଗଲେ ଦାସେ ସାଙ୍ଗେ ସାଙ୍ଗେ କହନ୍ତି, 'ଆହେ ! ଆମେ ପିଆଦା ନୁହଁ । ଆମର ଗୋଟିଏ ବୋଲି ପୁଅ । ତା'ପାଇଁ ଗୋଟିଏ ଭଲ ଲୋକର ଝିଅ ଖୋଜୁଛୁ, ସମ୍ପତ୍ତି ନୁହଁ । ଆମର ଯାହା ଅଛି, ସେ ଆମକୁ ଯଥେଷ୍ଟ, ଆମ ପୁଅକୁ ମଧ୍ୟ ଯଥେଷ୍ଟ ହେବ ।' ଏପରି ଉପ-କ୍ରମଣିକାରେ ସୁଦ୍ଧା ଅପର ପକ୍ଷର ବିଶେଷ ପରିବର୍ତ୍ତନ ଲକ୍ଷିତ ହୁଏ ନାହିଁ । ସେ ବିଚାରନ୍ତି, ଏ ରହସିଆ କଥା ଦାସଙ୍କର ବନଶିଖଡ଼ା ଥୋପ । ଠାଏ 'ଦି'ଠା ଭଲ ଲୋକଙ୍କର ଝିଅ ଦାସେ ଦେଖିଥିଲେ ସତ, କିନ୍ତୁ ଝିଅଟିମାନ ତାଙ୍କ ମନକୁ ପା'ନ୍ତି ବା ନ ପା'ନ୍ତି, ପୁଅ ମନକୁ ପାଇବେ କି ନାହିଁ ଏ ବିଷୟରେ ସନ୍ଦେହ ହେବାରୁ ସେ ଦୋଦୋପାଞ୍ଚ କଥା କହି ଖସି ଆସିଥିଲେ । ଏବେ କିନ୍ତୁ ଲକ୍ଷ୍ମୀକୁ ନିଜ ପାଖରେ ରିକ୍ସାରେ ବସାଇ ଆସିଲାବେଳେ ତାଙ୍କର ପ୍ରୀତି

ଆତ୍ମସନ୍ତୋଷ ଆସୁଥାଏ ଯେ, ଏ ଝିଅଟିକୁ ତାଙ୍କ ପୁଅ ଯୋଗ୍ୟ ନୁହେଁ—ନା ସୁନ୍ଦରପଣରେ, ନା ପ୍ରକୃତିରେ । ଜଗନ୍ନାଥ ମହାପ୍ରଭୁ ତାଙ୍କୁ କୃପା କରି ପିଲାଟିକୁ ବଢ଼ାଇ ଦେଇଛନ୍ତି !

ସେଥର ଦାସେ ଯାହା ପୁଣ୍ୟ ଯାଇଥିଲେ, ଯଥାବିଧି ସଂକଳ୍ପ କରି ଯାଇଥିଲେ, ଏଥର କନ୍ୟାଟିଏ ଠିକଣା କଲେ ଯାଇଁ ଘରକୁ ଫେରିବେ । ଠିକଣା ତ ଖାଲି ହେଲା ନାହିଁ, କନ୍ୟାଟି ତାଙ୍କ ସାଙ୍ଗରେ ଆସିଲା ! ନିଜ ଇଷ୍ଟ-ଦେବୀଙ୍କଠାରେ ତାଙ୍କର ମନ କୃତଜ୍ଞତାରେ ଦ୍ରବିଯାଉଥାଏ । ପ୍ରବାସ କଷ୍ଟ ଟିକିଏ ଲଘୁ ହେବା ସଙ୍ଗେ ସଙ୍ଗେ ସେ ଠାକୁରାଣୀଙ୍କ ଆଗେ ରୁଏ ଚଣ୍ଡୀ ଗୁଣିବେ ଓ ଭଲ ମାଛ ଯୋଗାଡ଼ କରି ଷୋଡ଼ଶ ଉପଚାରରେ ପୂଜାଟିଏ କରିବେ । ଜଗନ୍ନାଥ ମହାପ୍ରଭୁଙ୍କ ଋଣ ତ କଥିଞ୍ଚିତ୍ ପରିଶୋଧ ହୋଇଯାଇଛି । କଥା ନିଷ୍ପତ୍ତି ହେବାରେ ସେ ଆନନ୍ଦବଜାରରେ ଯେତେ ମହାପ୍ରସାଦ ପାଇଲେ, ସବୁତକ କିଣି ହରିଲୁଟ କରି ଦେଇଥିଲେ ।

ଘରେ ଇରୁଣ୍ଡିବନ୍ଧ ଡେଇଁବା ସାଙ୍ଗେ ସାଙ୍ଗେ ଗୃହିଣୀ ବି ତାଙ୍କ ଆନନ୍ଦସାଗରକୁ ଏକାବେଳେକେ ଶୋଷିଦେବାକୁ ବସିଲେ । ସେ ଦାସଙ୍କ-ଠାରୁ କନ୍ୟା ଅନ୍ୱେଷଣ ଅଭିଯାନ ଆଦ୍ୟପ୍ରାନ୍ତ ଶୁଣି ମଧ୍ୟ କୁହୁକୁହୁ ହେଲେ—ଗୋଟିଏ ବୋଲି ପୁଅ । ଆଉ ଟିକିଏ ଖୋଜିଥିଲେ କ'ଣ ଥିଲାଘର ପିଲାଟିଏ ମିଳି ନ ଥାନ୍ତା ? ଦାସେ ଏ କଥାକୁ ତାଙ୍କ ପରୀକ୍ଷିତ ତୁଣ୍ଡୁକା ଚଢ଼ାଇ ଦେଲେ —ତମେ କ'ଣ ଥିଲା-ଘର-ଝିଅ ଯେ ତାକୁ ଖୁଣୁଛ ? ଗୃହିଣୀ ନିଜ ପିତା-ମାତାଙ୍କ ପ୍ରତି ଆକ୍ଷେପ ସହୁଛନ୍ତି କେତେବେଳେ ? ପ୍ରତିଅସ୍ତ୍ର ସନ୍ଧାନ କଲେ, "ସେତେବେଳେ ତମେ ଯାହା, ତୁମକୁ କିଏ ଝିଅଟିଏ ଦେଇଥାନ୍ତା ? ମୋ ପୁଅ କ'ଣ ତମରି ପରି 'ନ ମାରି, ନ ଖାରି' ହୋଇ ବୁଲୁଛି ।"—ଯାହା ହେଉ, ରାତି ଅଧରେ ଯେତେବେଳେ ଦାମ୍ପତ୍ୟ କଳହ ତୁଟିଲା, ସେତେବେଳେ ଗୃହିଣୀ ପ୍ରତିଶ୍ରୁତ ହେଲେ ଯେ ସେ ପନ୍ଦର ଦିନ କାଳ ଝିଅଟିର ଚଳଣୀ ଦେଖିବେ, ତା'ପରେ ଶେଷ ସିଦ୍ଧାନ୍ତ ହେବ ।

ହପ୍ତେ ଯାଇଛି କି ନାହିଁ, ଗୃହିଣୀ ତାଙ୍କ ଆଡ଼ୁ କଥା ଆରମ୍ଭ କରି କହିଲେ, "ହଇଏ, ସତେ ଏ ପିଲା ଆମକୁ ମିଳିଲା କିମିତି ? ଠାକୁରାଣୀ

ନ ବିଚାରିଥିଲେ ଏଭଳି ସୁନାଖଣ୍ଡିକାଟିଏ ଆମ ବାପ୍ପାଙ୍କୁ ମିଳନ୍ତା ! ଘରର ପିଲା ବୋଲି ପରି ଦି'ଦିନରେ ଜାଣିଲି । ଦୁଃଖୀ ରଙ୍କିଙ୍କ ପେଟ ଯେମିତି ଚହଲି ପାରୁଛି, ମୋ ମନ ସିମିତି ବାରି ପାରୁଛି । ଜିନିଷପତ୍ର ଯୁ ଠିକଣାରେ ରଖୁଛି, ତା ଦେଖି ପରି ମୁଁ ଜାବା ହୋଇଯାଉଛି । ଯାହା ମାଗିବ ସଙ୍ଗେ ସଙ୍ଗେ ଆଣି ହାଜର । ତଉଆଖିଆ ପିଲାଟିଏ ଏକା !" ଦାସେ ଟିପଣୀ କଲେ. "ତେବେ ତ ତୁମକୁ ଅଡୁଆ ହେବାର କଥା । ପାଣି ପିଇବାକୁ ମାଗିଲେ ତ ତମେ ଗିଲାସ ଖୋଜୁ ଖୋଜୁ, ମଣିଷର ଶୋଷ ମରିଯାଏ !" ବଚନିକା ଶେଷରେ ଠାକୁରାଣୀଙ୍କ ପୂଜା ପାଇଁ ଦିନ ଠିକ୍ ହେଲା । ପୂଜା ପରେ ବ୍ରାହ୍ମଣଠାରୁ ଗୋଛେଇତ ପର୍ଯ୍ୟନ୍ତ ସମସ୍ତେ ପ୍ରସାଦ ପାଇଲେ ; ଦାସଙ୍କ କୁଳଚନ୍ଦ୍ରମା ବାପ୍ପା ବାବୁ (ମଧୁବାବୁ) ଡକରା ହୋଇ ଆସିଥାନ୍ତି । ଗାଁର ବୟୋଜ୍ୟେଷ୍ଠ ବୃଦ୍ଧ ଆନନ୍ଦ ରଥେ ତାଙ୍କ ମୁଣ୍ଡରେ ଆଶୀର୍ବାଦ ଚାଉଳ ପକାଇ ଦେଲେ ଓ ଲକ୍ଷ୍ମୀଙ୍କ ମୁଣ୍ଡରେ ପକାଇବାକୁ ହାଣ୍ଡିଶାଳକୁ ପୁଞ୍ଜିଏ ଗଲା ।

—୨—

ମଧୁବାବୁ ଗାଁରେ ହପ୍ତେ ରହିବେ ବୋଲି ଆସିଥିଲେ ; ରହୁରହୁ ୧୫ ଦିନ ଗଲା ; ତିନି ହପ୍ତା ଗଲା ; ମାସେ ପୂରିବାକୁ ଆଉ ୩ ଦିନ ବାକି । ମାସକ ଯାଇ, ମାସେ ମାସେ ହୋଇ ବର୍ଷ ପୂରିଥାନ୍ତା, ଯଦି ଘଟଣାଚକ୍ର ତାଙ୍କ ପ୍ରତିକୂଳରେ ଘୂରି ନଥାନ୍ତା । 'ବାପ୍ପା ଦାଣ୍ଡୁଆ ଟେ' ବୋଲି ତାଙ୍କ ମା ସବୁବେଳେ ଅଭିଯୋଗ କରୁଥିଲେ ସିନା, ଏ ଭିତରେ 'ଘର ଭିତରଟାରେ ସବୁବେଳେ କାହିଁକି ବସିଛୁ' ବୋଲି କହିବାକୁ ସେ ଦି' ତିନି ଥର ଜିଭ ଅଗକୁ କଥା ଆଣିଲେଣି । ପରେ କିନ୍ତୁ ବିଚାରନ୍ତି, ଏଡ଼େ ସୁନ୍ଦର ପିଲାଟିଏ ତା'ର ଭାର୍ଯ୍ୟା ହେବ ବୋଲି ଜାଣି ଭେଣ୍ଡାପୁଅ ଯେବେ ଟିକିଏ ଦେଖିବ ବୋଲି ମନ କରୁଛି ତେବେ ଦୋଷ କ'ଣ ? ମଧୁବାବୁ ତାଙ୍କ ପଢ଼ିବା ଘରେ ବହି ଖଣ୍ଡେ ମୁହଁରେ ଗୁଞ୍ଜି ଏପରି ବସିଥାନ୍ତି, ଯେପରି ବାଡ଼ିଆଡ଼ୁରୁ ଯେ ଆସିବ ତା' ମୁହଁ ପରିଷ୍କାର ଦେଖାଯିବ । ସେ ସୁବିଧା ନ ଜୁଟିଲେ, ଯେ କୌଣସି କାମର ବାହାନାରେ ଘର ଭିତରେ ଏ ପାଖ ସେପାଖ ହୁଅନ୍ତି । ଅଧ୍ୟବସାୟର ଫଳ ଫଳେ ; ଦିନକେ ଥରେ ଦି'ଥର ଲକ୍ଷ୍ମୀଙ୍କର ସାମନାସାମନି ହୋଇଯିବାର ସୁଯୋଗ ଘଟେ ।

କିନ୍ତୁ ସେ କ'ଣ ମୁହଁ ନା ଗୋଟାଏ ମୁଖା ? ଆଖିର ପତା ଝେଲୁ ନାହିଁ, ଅଧରରେ ଆନନ୍ଦର ଟିକିଏ ସଙ୍କେତ ନାହିଁ ; ମୁହଁଟା ଖୁବ୍ ସୁନ୍ଦର, ଗୋଲ ନୁହେଁ କି ଅଣ୍ଡାକାର ନୁହେଁ ; ଦେହର ବର୍ଣ୍ଣ ଚମ୍ପା ଫୁଲର ବର୍ଣ୍ଣ ସଙ୍ଗେ ତୁଳନା କରାଯାଇପାରେ । ହେଲେ କ'ଣ ହେବ ? ମଣିଷ ଯଦି ମାଟି ପ୍ରତିମାକୁ ପ୍ରେମ କରୁଥାନ୍ତା, ତେବେ କଟକ କାରିଗରଙ୍କ ଚାନ୍ଦିପ୍ରତିମା ତ ଅଛି, ଜୀଅନ୍ତା ମଣିଷକୁ ଖୋରାକ ଯୋଗାଇବା ଦରକାର କ'ଣ ? ଇମିତି ବଚାରୁ ବଚାରୁ ମଧୁବାବୁ ସ୍ଥିର କଲେ, ମା'ଙ୍କ ଅନୁପସ୍ଥିତିରେ ଏକାନ୍ତରେ ଏ ପ୍ରତିମାର ପାଟି ଫିଟୁଛି କି ନାହିଁ ପରୀକ୍ଷା କରିବେ । ସେତିକି ନ କଲେ ଜୀବନ ତମାମ ଗୋଟିଏ ଜାଡ଼ିକୁ ମୁଣ୍ଡେଇ ବୁଲିବା ସାର ହେବ ସିନା ! ପୁଣି ଚାଲିଲା ଅଧ୍ୟବସାୟ । ଦୁଇ ଚାରି ଦିନ ପରେ ଫଳ ବି ଫଳିଲା । କିନ୍ତୁ ଛି ! କି ପିତା ! ଏଡ଼େ ସୁନ୍ଦର ଆବରଣ ଭିତରେ ଏଡ଼େ କୁତ୍ସିତ ପ୍ରକୃତି । ସତେ କୋଚିଲା ଫଳ !

କେଡ଼େ ଆଶାରେ ସେ ଆସିଥିଲେ ନିଜର ବାଗ୍‌ଦତ୍ତା ସଙ୍ଗେ ପଦେ କଥାବାର୍ତ୍ତା ହେବେ । ତାଙ୍କ ନିଜ ଅନ୍ତରରେ ଯେଉଁ ଅଦମ୍ୟ ଆକାଂକ୍ଷାର ଝଇ ଫୁଟୁଛି ତାହା ତାକୁ ବୁକୁ ଚିରି ଦେଖାଇଦେବେ । କିନ୍ତୁ ପାଷାଣୀ ତାଙ୍କର ସବୁ ସ୍ନେହ ମମତାକୁ ଗୋଡ଼ରେ ଫୋପାଡ଼ି ଦେଲା । ମା' ଯାଇଛନ୍ତି ପଡ଼ିଶା ଘରକୁ, ଚାକରାଣୀ ବୁଢ଼ୀଟା ଦି'ପହର ଖରାରେ ଝାଉଁଳ ପଡ଼ି ଘୁଙ୍ଗୁଡ଼ି ମାରୁଛି, ସାନ ଭଉଣୀକୁ ବାପା ଉପର ଘରେ ଶୁଆଇବାକୁ ଚେଷ୍ଟା କରୁଛନ୍ତି, ମଧୁବାବୁ ଦେଖିଲେ ଲକ୍ଷ୍ମୀ ବାଡ଼ିଆଡ଼ କନ୍ଦରେ ବସି କ'ଣ କରୁଛି । ସେ ଧୀରେ ଧୀରେ ଯାଇ ତା'ର ଦେହରେ ହାତ ମାରିଦେଲେ । ନାଗସାପ ଲାଙ୍ଗୁଡ଼ରେ ହାତ ମାରିଦେଲେ ଯିମିତି ହୁଏ ଠିକ୍ ସେହି ଦୃଶ୍ୟ ଦିଶିଲା । ଲକ୍ଷ୍ମୀର ମୁହଁରୁ ମୁଖା ଖସିଗଲା ; ବିରକ୍ତିରେ ତା'ର ମୁହଁ ବିକୃତ ହୋଇଗଲା ; ଅପମାନରେ ଗୁମରି ଉଠି ସେ କହିଲା, "ଆପଣ ପରା ପାଠ ପଢ଼ିଛନ୍ତି ? ଅବିବାହିତା ବାଳିକାକୁ ଅସହାୟ ଅବସ୍ଥାରେ ପାଇ ଏପରି ଧର୍ଷଣ କରି ଲଜ୍ଜା ହେଉ ନାହିଁ ?" ମଧୁବାବୁ ସାମାନ୍ୟ ଲଜ୍ଜିତ ହୋଇ ସୁଦ୍ଧା ପୁଣି ଆରମ୍ଭ କଲେ, "ଲକ୍ଷ୍ମୀ ! ତୁମେ ପରା ମୋର । ଏତେ ଆଘାତ ଦେଉଛ କାହିଁକି ? ପାଟି କର ନାହିଁ, ବାପା ଶୁଣିବେ !" ଲକ୍ଷ୍ମୀ ରୁଦ୍ଧ ଗଳାରେ, ଅଥଚ ଜୋରରେ ଉତ୍ତର ଦେଲା, "ମୁଁ ତୁମର ! କିମିତି ? କେବେ ? ବିବାହ ସରୁ, ଏକଥା ମୁହଁକୁ ସୁନ୍ଦର ଦିଶିବ ।

ତୁମେ ଯାଅ କହୁଛୁ । ନ ହେଲେ, ଏମିତି ପାଟି କରିବ ଯେ ଗାଁଯାକ ଆସି ବୁଣ୍ଡି ହୋଇଯିବେ ।"

ମଧୁବାବୁ ଆଉ ଶୁଣିବାକୁ ରହିଲେ ନାହିଁ । ଶିକ୍ଷା-ଦୀକ୍ଷା-ସ୍ଥାନ ଚୋକଟାର କି କୁସଂସ୍କାର ! ଏଇଭଳି ଗୋଟାଏ ଖାଲୁ ଆଣି ବାପା ଘରେ ପୂରାଇଛନ୍ତି । ଲକ୍ଷ୍ମୀ ଉପରର ସବୁତକ ରାଗ ବାପାଙ୍କ ଉପରେ ଯାଇ ପଡ଼ିଲା । ଏ ରାଗ ଆହୁରି ବଢ଼ିଲା ଯେତେବେଳେ ମଧୁବାବୁ ନିଜ ବାପାଙ୍କ ତୁଣ୍ଡରୁ ପ୍ରତାରିତ ହୋଇଥିବା ଲକ୍ଷ୍ମୀ ଆହରଣ କାହାଣୀ ଶୁଣିଲେ ।—

ଦାସେ ତ ସେଥର ସଂକଳ୍ପ କରିଯାଇଥିଲେ କନ୍ୟାଟିଏ ଠିକଣା କଲେ ଯାଇଁ ଘରକୁ ଫେରିବେ । ଆଉ କୁଆଡ଼େ ନ ଯାଇ, ସେ ପୁରୀ ଗଲେ । ପ୍ରତି-ଦିନ ବେଳ ଦୁଇ ଘଡ଼ିକୁ ସେ ଗାଧୋଇ ପାଧୋଇ, ନିତ୍ୟକର୍ମ କରି ବଡ଼ ଦେଉଳର ଜଗମୋହନରେ, ଗରୁଡ଼ ଖମ୍ବ ନିକଟରେ ଗୋଟିଏ ଜାଗାରେ ବସି ଭଗବତ୍‌ଗୀତା, ଅଧ୍ୟାତ୍ମ ରାମାୟଣ ପାରାୟଣ କରନ୍ତି, ବିଷ୍ଣୁସହସ୍ରନାମ ଗୁଣନ୍ତି, ଜଗନ୍ନାଥାଷ୍ଟକ ପ୍ରଭୃତି ବୋଲନ୍ତି । ଗୁଇ ଲେଉଟେ, ଭ'ଣ୍ଡ ଧୂପ ଉଠେ । ତା'ପରେ ଦାସେ ଉଠି ଆନନ୍ଦବଜାରରେ ଅଭଡ଼ା ପୁଞ୍ଜିଏ ଖାଇ ଧର୍ମଶାଳାରେ ରାତିକ ପାଇଁ ଆଶ୍ରୟ ନିଅନ୍ତି । ଏପରି ଦଶ ପନ୍ଦର ଦିନ କଟିଗଲେ ସୁଦ୍ଧା ଦାସଙ୍କ କାନକୁ କୌଣସି ପ୍ରସଙ୍ଗ ଆସି ନ ଥାଏ । ଦାସଙ୍କର କିନ୍ତୁ ଅଟଳ ବିଶ୍ୱାସ, ଯଥାସମୟରେ ଜଗନ୍ନାଥ ମହାପ୍ରଭୁ ତାଙ୍କ ଡାକ ଶୁଣିବେ । ଷୋହଳ କି ସତର ଦିନ ପରେ ଜଣେ ବହୁ ଦିନର ସାଙ୍ଗ ଦୈବାତ୍ ଦେଖାପଡ଼ିଲେ । ହାଲ ଶୁଣି କହିଲେ, 'ଭାଇ ! ଭଲ କଥାଟିଏ ମନେ ପଡ଼ୁଛି । ରାଣ୍ଡି ମାଇପିଟିଏ ଓ ତା'ର ଗୋଟିଏ ଝିଅ । ସମ୍ବଳ ସେତିକ । ଗୋଟିଏ ବଡ଼ ଘରର ସେତିକ ମାତ୍ର ଅବଶେଷ ରହିଛି । ରାଣ୍ଡିଟି ବଳିତା ବଳି ଚଳେ, ଝିଅଟି ମଧ୍ୟ ସେଇ କାମରେ ମା'କୁ ସାହାଯ୍ୟ କରେ । ମା'କୁ ଗ୍ରହଁଦେଲେ ଜାଣିବ, ଏତେ ଦୁଃଖ କଷ୍ଟ ଭିତରେ ସେମାନେ କିପରି ମୁଣ୍ଡ ସଳଖ ରଖି ରହିଛନ୍ତି । ମୁଁ ଅନେକ ଜାଗା ଅନିଷ୍ଟା କଲିଣି, କିନ୍ତୁ ଆଜିକାଲିର ପିଲେ ବଂଶମର୍ଯ୍ୟାଦାକୁ ଗ୍ରହୁଁ ନାହାନ୍ତି କି ଆଚରଣକୁ ଗ୍ରହୁଁ ନାହାନ୍ତି । ତାଙ୍କର ଟଙ୍କା ଦରକାର, ସାଇକେଲ୍ ଦରକାର, ଘଣ୍ଟା ଦରକାର । ଏଇ ଗୋଟିକ ନୁହେଁ । ଆଉ ଗୋଟିଏ ପାତ୍ରୀ ଅଛି । କଟକର ଜଣେ ବଡ଼ ଓକିଲଙ୍କର ଝିଅ । ତାଙ୍କର ସେଇ ଗୋଟିକ ମାତ୍ର ସନ୍ତାନ ।

ଯେ ଝିଅଟିର ହାତ ଧରିବ ସେ ଘରଜୁଆଁଇଁ ହୋଇ ରହିବ । ଅଚଳାଚଳ ସମ୍ପତ୍ତିର ମାଲିକ ହେବ ।

ଦ୍ୱିତୀୟ ପ୍ରସଙ୍ଗରେ ରାଜିହେଲେ, ଆଜି ନିଷ୍ପତ୍ତି କରି ଦେବେ ବୋଲି ଦାସଙ୍କ ସାଙ୍ଗ ନିର୍ଭର ଦେଲେ । ସେ ନିଜେ ଏଇ ଝିଅଟିର ନିଜ ମାମୁଁ । ଝିଅଟି ଆଜି ପୁରୀରେ ତାଙ୍କର ଘରେ ଅଛି । ବାପ ଝିଅ ଗୋବିନ୍ଦଦ୍ୱାଦଶୀକୁ ଆସିଥିଲେ ; ଜରୁରି କାମ ପଡ଼ିବାରୁ ଓକିଲ ବାବୁ କଟକ ଯାଇଛନ୍ତି, ଦିନେ ଓଳିକରେ ଆସି ପହଞ୍ଚିବେ ।

ଆପଣାର ଗୋଟିଏ ବୋଲି ପୁଅ, ସେ ଯାଇଁ ଆଉ କାହାଘରେ ଘର-ଜୁଆଁଇଁ ହୋଇ ରହିବ, ଏକଥା ଦାସଙ୍କ କାନରେ ପଶିଲା ନାହିଁ । ସେ ପଚାରିଲେ, "ଆଚ୍ଛା, ସେ ବିଧବାଙ୍କ ଝିଅଟିକି ଟିକିଏ ଦେଖିବା ।"

ସାଙ୍ଗ ଉତ୍ତର ଦେଲେ, "ଦୁହିଁଙ୍କୁ ତ ଏକାଠି ଦେଖିବ । ବିଧବାଟି ଓକିଲଙ୍କର ସାବତନ ଭଉଣୀ । ଭାଇଙ୍କର ଧନ ଯେତିକି ବଢ଼ୁଛି, ବୟସ ଯେତିକି ବଢ଼ୁଛି, ଲୋଭ ସେତିକି ବଢ଼ୁଛି । ବୟଃପ୍ରାପ୍ତା ଭାଣିଜୀଟି ଘରେ ରହିଲେ ତା' ବିବାହ ଖର୍ଚ୍ଚ ତୁଲାଇବାକୁ ହେବ ବୋଲି ସେ ଏବେ ଦି' ବର୍ଷ ହେଲା ଭଉଣୀକୁ ପଚାରୁ ନାହାନ୍ତି । ଭଉଣୀ ବି ଅପମାନ ସହି ରହିବାବାଲି ନୁହେଁ । ମହାମହୋପାଧ୍ୟାୟ ୰ ଦୀନବନ୍ଧୁ ପଣ୍ଡିତଙ୍କ ବୋହୂ ନା ! ହେଲେ କଣ ହେବ, ମାମୁଁ-ଝିଅ, ପିଇସୀ-ଝିଅ ଦୁଇଟିଙ୍କର ମନ ଖୁବ୍ ମିଳେ ।"

ଦାସେ ପଚାରିଲେ, "ଆଚ୍ଛା, ପାଠଶାଠ କଣ ପଢ଼ିଛନ୍ତି ? ଉତ୍ତର ପାଇଲେ, "ବଡ଼, ବିଧବାର ଝିଅଟି ମାଇନର୍ ଯାଏଁ ପଢ଼ିଥିଲା । ତା'ବୋଉ ଯୋଗୁଁ ପଢ଼ା ବନ୍ଦ କରି ପୁରାଣଫୁରାଣ ପଢ଼ୁଛି । ଓକିଲଙ୍କ ଝିଅଟି ଏଇ ବର୍ଷ ଆଇ. ଏ. ପାସ୍ କରି ବି. ଏ.ରେ ନାମ ଲେଖାଉଛି । ଏମ୍. ଏ. ନହେଲେ ବି ବି. ଏ. ନିଶ୍ଚୟ ପାସ୍ କରିବ ।

ଦାସେ ସେଦିନ ଭ'ଣ୍ଡ ଉଠିବା ପୂର୍ବରୁ ଉଠିଲେ । ମହାପ୍ରଭୁଙ୍କ ସିଂହାସନ ତଳେ ଯାଇ ଘଡ଼ିଏଯାଏଁ ମୁଣ୍ଡିଆ ମାରିଲେ । ସାଙ୍ଗଙ୍କ ସାହାଯ୍ୟରେ ସବୁ ଠିକ୍ ଠାକ୍ ହୋଇଗଲା ; ତାଙ୍କର ଘରୁରେ ଦେଉଳ ବେଢ଼ାରେ ବାକ୍ୟ-ଦାନ ହୋଇଗଲା, ତାଙ୍କର ଓକିଲାତିରେ ବିଧବା ନିଜ ଝିଅକୁ ଦାସଙ୍କ ସାଙ୍ଗେ ଛାଡ଼ିବାକୁ ରାଜି ହେଲେ । ବୈଶାଖ ହବିଷ ସରିଲେ, ନିଜେ ଯାଇ ଘର ବର

ଦେଖି ଆସିବେ ବୋଲି କହି ଶେଷରେ କହିଲେ, "ସମ୍ବନ୍ଧୀ ! ମୁଁ ଯାଏ କି ନ ଯାଏ, ମତେ ଗୃହିବ ନାହିଁ । ତମର ମନ ଯେଉଁଦିନ ପାଇବ ସେଇ ଦିନରେ ପିଲାଙ୍କର ହାତଗଣ୍ଠି ପକାଇ ଦେବ । ମୁଁ ଗୋଟାଏ ଦେଖିବି କଣ ? ମୁଁ ତ ବିଧବା ଲୋକ ; ମଙ୍ଗଳ କାର୍ଯ୍ୟରେ ମୋର ଭାଗ ନାହିଁ । ମୁଁ ମୋ ସୁବିଧାରେ ଯାଇ ମୋ ସମଧୂଣୀଙ୍କୁ ଦେଖି ଆସିବି ।—

ଏଇ କଥାକୁ ଦାସେ ଯେତେ ଥର କହନ୍ତି ସେତେ ଥର ପୂର୍ବରୁ ଗ୍ରୁଡ଼ି ଯାଇଥିବା ଖୁଣ୍ଟିନାଟି ପୁଳାଏ ଅଧିକା ମିଶାନ୍ତି । ଆଗ ଆଗ ସାଙ୍ଗ ସାଥିଙ୍କ ତୁଣ୍ଡରୁ ଏକଥା ଶୁଣି ମଧୁବାବୁଙ୍କୁ ଖୁସି ଲାଗୁଥିଲା । ଲକ୍ଷ୍ମୀ ଉପନ୍ୟାସର ନାୟିକା ପରି ତାଙ୍କୁ ଦିଶୁଥିଲା ଓ ସେ ନିଜେ, ନିଷ୍କ୍ରିୟ ହେଲେ ବି, ନାୟକ ! କିନ୍ତୁ ଲକ୍ଷ୍ମୀଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବା ଦିନୁଁ ତାଙ୍କର ବେଳକୁ ବେଳ ବିଶ୍ୱାସ ଦୃଢ଼ ହେଲା ଯେ, ଜଣେ କିଏ ପୁରା ଜାଲିମ ତାଙ୍କ ବାପାଙ୍କର ସରଳତାର ସୁବିଧା ନେଇ ଗୋଟାଏ ବଳତାକଟାଳ ଗୁଣ୍ଡର ଝିଅକୁ ତାଙ୍କ ଉପରେ ଲଦି ଦେଇଛି । ତାଙ୍କର ମୁହଁ ଶୁଖିଗଲା, ନିଜ ଘର ଭିତରେ ପଶିବାକୁ ତାଙ୍କୁ ଘୃଣା ହେଲା । ଲକ୍ଷ୍ମୀର ମୁହଁ କେଜାଣି କେତେବେଳେ ଦିଶିଯାଇ ତାଙ୍କୁ ଦୁର୍ବଳ କରିଦେବ ଏଇ ଆଶଙ୍କାରେ ସେ ଲକ୍ଷ୍ମୀକୁ ଲୁଚି ଚାଲିଲେ ବୋଲି କୁହାଯାଇପାରେ ।

ବାପୁଙ୍କର ଏ ଢଙ୍ଗ ମା'ଙ୍କ ଦୃଷ୍ଟିରୁ ଛପି ରହିଲା ନାହିଁ । ଏତେ ଶ୍ରଦ୍ଧାରେ ଚାଲୁଥିବା ପୁଅର ଏପରି ଢଙ୍ଗ ଦେଖି ସେ ବିଚଳିତ ହୋଇଗଲେ । ତାଙ୍କ ଚିନ୍ତା ସ୍ୱାଭାବିକ ଭାବରେ ଦାସଙ୍କ ପାଖକୁ ଚହଟି ତାଙ୍କୁ ବି ଗମ୍ଭୀର କରି ଦେଲା । ଦାସଙ୍କ ମୁହଁ ଦେଖି ଲୋକବାକ ବି ଝଡ଼ ତୋଫାନର ଆଶଙ୍କା କଲେ । ଲକ୍ଷ୍ମୀ ଆସିବାର ମାସକ ଭିତରେ, ଦାସଙ୍କ ଲକ୍ଷ୍ମୀବନ୍ତ ଘରୁ ଲକ୍ଷ୍ମୀ ଛାଡ଼ିଗଲା ପରି ଦିଶୁଥାଏ ।

ଦାସେ ସକାଳୁ ଉଠି ପୁଅର ଗତିବିଧି ଲକ୍ଷ୍ୟ କରନ୍ତି । ସୁବିଧା ପାଇଲେ ତା' ମୁହଁକୁ କଠୋର ଦୃଷ୍ଟିରେ ଗୃହାନ୍ତି, କିନ୍ତୁ କିଛି ନ କହି ଶୀଘ୍ର ଗାଧୁଆ ପାଧୁଆ ସାରି ଠାକୁରାଣୀଙ୍କ ପାଖେ ବେଳ ଦି'ଘଡ଼ିଠାରୁ ବସିଯା'ନ୍ତି ଯେ ଉଠିବାବେଳକୁ ଛୁଇ ଲେଉଟି ଯାଇଥାଏ । ଦାସିଆଣୀ ତୁଳସୀମୂଳରେ ପାଣି ଦେଲାବେଳେ ମୁଣ୍ଡ ଆଟିଏ ମାରି ଗୁଣୁ ଗୁଣୁ ସ୍ୱରରେ କହନ୍ତି, "ମା ବୃନ୍ଦାବତୀ ! ଭଗାରିହସା କରନାହିଁ । ମୋ ପୁଅର ବୁଦ୍ଧି ଫେରାଅ ।" ବୃନ୍ଦାବତୀ ତାଙ୍କ

ଗୁହାରି ଏପରି ଶୁଣିଲେ ଯେ ଗାଁର ଚୁଗୁଲିଆ କହିବାକୁ ଆରମ୍ଭ କଲେ, "ଦାସେ ଫାଣ୍ଡିକ ଯାଇ ଯାହା ଆଣିଛନ୍ତି ତାକୁ ସମ୍ଭାଳନ୍ତୁ ।"

ଏ ସବୁ ଯେ ଲକ୍ଷ୍ମୀଙ୍କ ଆଖିରେ ପଡୁନଥାଏ ତାହା ନୁହେ । ଶେଷରେ ମଧୁବାବୁଙ୍କ ବୁଦ୍ଧି ଫେରାଇବାପାଇଁ ସେ ସନ୍ଦିଗ୍ଧ ଉଦ୍ୟମ କରିବାକୁ ଠିକ୍ କଲେ । ଦିନେ ଦୁଇ ଦିନ ଚେଷ୍ଟା କରି ସେ ମଧୁବାବୁଙ୍କୁ କ୍ଷଣକ ପାଇଁ ଏକୁଟିଆ ପାଇଲେ ଓ ଲଜ୍ଜା ସଙ୍କୋଚ ଛାଡ଼ି ତାଙ୍କ ପାଖରେ ଠିଆ ହୋଇ କହିଲେ, "ମୋର ଉପରେ ରାଗି ତମେ ଇମିତ ଏକଜିଦିଆ ହେଉଛ କାହିଁକି ? ସମସ୍ତଙ୍କ ସୁଖ ଦୁଃଖକୁ ଚାହିଁ ଚଳିଲେ ସିନା ହେବ ! ବାପା ମା'ଙ୍କର ମନରେ କେମିତି କଷ୍ଟ ହେଉଚି ଦେଖିପାରୁ ନାହଁ ?" ଏଥର ମଧୁବାବୁ ଫଣା ଟେକିଲେ, ବିଷ ଝାଡ଼ି କହିଲେ, "ଛତରଖାଇକୁ ନବୁଦ୍ଧିଆ ବୋଲି ବିଚାରି ଥିଲି । ଗୁଣୀ ଗାରଡ଼ି କରି ମୋ ବାପା ମା'ଙ୍କ ବୁଦ୍ଧି ଭ୍ରଂଶ କରି ମୋର ଉପରେ ଲଦି ହେବାକୁ ଆସିଲଣି ।" ଲକ୍ଷ୍ମୀ ସତେ ଯେମିତି ତାଙ୍କ ଆଗରୁ ମିଳେଇ ଗଲେ । ମଧୁବାବୁ ଦାଣ୍ଡକୁ ଗଲେ ଯେ ସେ ରାତିରେ ଘରକୁ ଖାଇବାକୁ ବି ଫେରିଲେ ନାହିଁ ।



ତା'ର ହପ୍ତାକେ ପରେ ମଧୁବାବୁଙ୍କର ଖଣ୍ଡିଏ ଚିଠି ଆସିଲା କଟକରୁ । ସେ ଘର ଛାଡ଼ି ଚାଲି ଯିବାକୁ ଗୋଟିଏ ସୁବର୍ଣ୍ଣ ସୁଯୋଗ ପାଇଲେ । ବିଶ୍ୱ-ବିଦ୍ୟାଳୟ ପରୀକ୍ଷାରେ ସେ କୃତିତ୍ୱ ଅର୍ଜ୍ଜନ କରିବେ ଏ ବିଷୟରେ ତ ସନ୍ଦେହ ନ ଥାଏ । ଆଉ ଗୋଟାଏ ବର୍ଷ ପଢ଼ିଲେ ଆଇନ ପରୀକ୍ଷା ଦେଇ ହେବ । ତାପରେ ଭାଗ୍ୟରେ ଯାହା ଥିବ । ଚିଠିଟିରେ ଯେଉଁ ସୁଯୋଗର ସୂଚନା ମିଳିଛି, ତାହା ହୋଇପାରିଲେ ଜଣେ ପ୍ରତିଷ୍ଠିତ ଓକିଲଙ୍କ ପାଖରେ ରହି ସେ ଆଇନ ବିଦ୍ୟା ଭିତରେ ପଶି ପାରିବେ । ତାଙ୍କର ଝିଅକୁ ଘଣ୍ଟେ ଟିଉସନ କରିବାକୁ ପଡ଼ିବ, ଆଉ ତାଙ୍କର ଘରର ଚଳାଚଳ ବିଷୟରେ ଟିକିଏ ଦୃଷ୍ଟି ଦେବାକୁ ହେବ । ତାଙ୍କ ଘରେ ଖାଇ, ପଚିଶ ଷାଠିଏ ପର୍ଯ୍ୟନ୍ତ ମାସକୁ ମିଳିବାର ସମ୍ଭାବନା ଅଛି ବୋଲି ଲେଖା ଅଛି । ଚିଠି ଖଣ୍ଡି ତାଙ୍କୁ ଭବିଷ୍ୟତର ସନ୍ଧାନ ପାଇଁ ବାଟ ଦେଖାଇବା ସଙ୍ଗେ ସଙ୍ଗେ ବର୍ତ୍ତମାନର ବିପଦରୁ ଉଦ୍ଧାର ପାଇବାର ଅମୋଘ ଅସ୍ତ୍ର ପରି ଦିଶିଲା ।

ଏ ପର୍ଯ୍ୟନ୍ତ ସେ ବାପାଙ୍କ ଆଗରେ ସଳଖ ହୋଇ ଠିଆ ହେବାକୁ ଡରୁଥିଲେ । ଆଜି ସ୍ୱାବଲମ୍ବୀ ହେବାର ସୁଯୋଗ ଦେଖି ଅଦ୍‌ଭୁତ ସାହସ ଆସିଲା । ସେ ସିଧା ସିଧା ବାପାଙ୍କୁ ଜଣାଇ ଦେଲେ, ସେ କଟକରେ ଯାଇ ରହିବେ ଓ ପରୀକ୍ଷା ଫଳ ବାହାରିଲେ ଲ'କ୍ଲାସରେ ନାମ ଲେଖାଇବେ ।

ଦାସେ ପୁଅର ଧୃଷ୍ଟତାପଣରେ ବଡ଼ ବିରକ୍ତ ଥିଲେ । ସାଙ୍ଗେ ସାଙ୍ଗେ ଜବାବ୍ ଦେଲେ, "ଏମ୍. ଏ. ପର୍ଯ୍ୟନ୍ତ ପଢ଼ିବାକୁ ପଇସା ଦେଲି । ଆଉ ପାଠ ପଢ଼ିବାକୁ କପର୍ଦ୍ଦକ ମିଳିବ ନାହିଁ । ଆମକୁ ଚାହିଁଲେ ପାଠ ଯଥେଷ୍ଟ ହୋଇ-ଗଲାଣି । ଘରକୁ ଚାହିଁ, ମୋତେ ଚାହିଁ, ମା'ଙ୍କୁ ଚାହିଁ । କଟକର ପୋଲା ଫାଙ୍କିଆ ଜୀବନକୁ ମନ କାହିଁକି ଧାଉଁଛି ?"

ମଧୁବାବୁ ଉତ୍ତର ଦେଲେ, "ମୁଁ ବର୍ଷେ ଆଇନ ପଢ଼ିଛି । ଆଉ ବର୍ଷକ ନିଶ୍ଚୟ ପଢ଼ିବି । ଘରୁ ପଇସା ନ ନେଇ ମୁଁ ଯଦି ପଢ଼ିପାରେ—"

ଦାସେ ରାଗିଗଲେ, କହିଲେ, "ଓଃ, ଆମ ପଇସା ଆଜିଯାଏଁ ସୁଆଦ ଲାଗୁଥିଲା, ଆଜି ପିତା ଲାଗୁଛି ନା ?"

ମଧୁବାବୁ କିଛି ନ କହି ଉଦ୍ଧତଭାବେ ବାପାଙ୍କୁ ଚାହିଁ ରହିଲେ । ବାପା ବି ପୁଅର ଏ ନୂଆରୂପ ଦେଖି ଟିକିଏ ଶଙ୍କିଗଲେ, ଅଧା ବିରକ୍ତ ଓ ଅଧା ବିନୀତ-ଭାବେ କହିଲେ, "ବାପା ! ମୁଁ କନ୍ୟାଟିଏ ଘରକୁ ଆଣିଛି । ଆଉ ମାସକରେ, ବାହାଘର । ଦୁହିଙ୍କି ଭଲ ଶୁଝିଛି । ବାହାଘର ସରୁ ତୋ'ର ମନ ଯାହା ତା' କରିବୁ ।"

ମଧୁବାବୁ ନିର୍ମମଭାବେ ଉତ୍ତର ଦେଲେ, "ମୁଁ ଆଇନ ପାସ୍ କରିବା ପୂର୍ବରୁ ବିଭା ହେବି ନାହିଁ ।" ଦାସେ ବିସ୍ମିତ ହୋଇ ପଚାରିଲେ "ତା ମାନେ ? ମୁଁ ଏ ଯେଉଁ କନ୍ୟାଟି ଆଣିଲି ତା'ର ଅବସ୍ଥା କ'ଣ ହେବ ? ମୁଁ ଯେ ଜଗନ୍ନାଥ ମହାପ୍ରଭୁଙ୍କୁ ସାକ୍ଷୀ ରଖି ସ୍ୱାକୁ ବୋହୂ କରି ଆଣିଛି, ମୁଁ କ'ଣ କରିବି ?"

ମଧୁବାବୁଙ୍କ ଉତ୍ତର ବଜ୍ର ପରି ଦାସଙ୍କ ଉପରେ ପଡ଼ିଲା, "ମୁଁ ତ ପୁଣି ମୋ ଭବିଷ୍ୟତ ଚିନ୍ତା କରିବି ?"

ଦାସେ ସ୍ତମ୍ଭୀଭୂତ ହୋଇଗଲେ ; ଅସ୍ପଷ୍ଟଭାବେ ଉତ୍ତର ଦେଲେ, "ପୁଅ ତେବେ କ'ଣ ତୋ' ଭବିଷ୍ୟତ ମୋ ଭବିଷ୍ୟତ ଅଲଗା ଅଲଗା !" ଦାସିଆଣୀ

ଏତିକବେଳକୁ ଆସି ଉଭୟଙ୍କ ପାଖରେ ପହଞ୍ଚି ଯାଇଥିଲେ ; ଦାସଙ୍କ ମୁହଁର ଭାବ ଦେଖି ଡରଯାଇ ସେ ପୁଅକୁ ଡାକିଲେ, "ବାପ୍ପା ! ବାପାଙ୍କୁ ଇମିତ କ'ଣ କହିଲୁ ରେ ! ଆରେ ଏ କଥା ଶୁଣି ସେ ବଞ୍ଚିବେ କି ? ଯା, ଯା, ତାଙ୍କ ଗୋଡ଼ ତଳେ ପଡ଼ି ଦୋଷ ମାଗେ । ଆରେ, ସେ ଯାହା କରିଛନ୍ତି ଓ କରୁଛନ୍ତି ସେ ତୋ' ପାଇଁ ନା ତାଙ୍କ ପାଇଁ ?"

ଏ କଥାର କିଛି ମୂଲ୍ୟ ହେଲା ନାହିଁ । ମଧୁବାବୁ ସେଇ ସନ୍ଧ୍ୟା ଗାଡ଼ିରେ ନିଜର ଜିନିଷପତ୍ର ଧରି କଟକ ବାହାରିଲେ । ବାପାଙ୍କଠାରୁ ଗାଡ଼ିଭଡ଼ାକୁ ଟଙ୍କା ନ ନେଇ ସାଇର ଜଣଙ୍କଠାରୁ କୋଡ଼ିଏଟି ଟଙ୍କା ଧାର କରି ଗଲେ । ଦାସେ ପୁଅ ସାଙ୍ଗେ କଥାବାର୍ତ୍ତା ହେବା ବେଳୁ ଠାକୁରାଣୀଙ୍କ ପାଖେ ବସିଲେ ଯେ ପୁଅ ରେଳକୁ ଗିବାର ଦୁଇ ଘଣ୍ଟା ପରେ ବାହାରକୁ ଆସିଲେ । ଦାସିଆଣୀ ସେଇ ଦିଅଁଙ୍କ ଘରେ ଦାସଙ୍କ ପାଖେ ଅଧିଆ ପଡ଼ିଥାନ୍ତି । ମଧୁବାବୁ ଘରୁ ଜିନିଷପତ୍ର ଧରି ଲୋକ ମୁଣ୍ଡରେ ଦେଇ ବାପାଙ୍କୁ, ମାଙ୍କୁ ଓ ଦିଅଁଙ୍କୁ ମୁଣ୍ଡିଆ ମାରି ଗିବେ କି ନାହିଁ ବିଚାରୁଛନ୍ତି, ଲକ୍ଷ୍ମୀ ଆସି ପଣତକାନି ବେକରେ ପକାଇ ତାଙ୍କୁ ମୁଣ୍ଡିଆ ମାରିଲା, କଷ୍ଟରେ କାନ୍ଦ ରୋକି କହିଲା, "ବାପାଙ୍କୁ ଚାହଁ, ମା'ଙ୍କୁ ଚାହଁ, ମୋତେ ଚାହିଁବାକୁ କହିବା ଅଧିକାର ମୋର ନାହିଁ । ମୋ ରାଣ ! କାଲି ଗିବ, ଆଜି ଯାଅ ନାହିଁ । ତୁମର କାହିଁକି ଏତେ ରାଗ ଆଜି ମୋତେ କହି କାଲି ଗିବ ।"

ଅନ୍ୟ ସମୟ ହୋଇଥିଲେ କ'ଣ ହୋଇଥାନ୍ତା କେଜାଣି, ସେତେବେଳକୁ କିନ୍ତୁ ଲେଡ଼ି ଗୁଡ଼ କହୁଣୀକୁ ବୋହି ଯାଇଥିଲା । ସେ ଗଲାବେଳେ ତମତମ ହୋଇ ଜବାବ ଦେଲେ, "ଅନ୍ୟର କଥା ବିଚାରିବା ପୂର୍ବରୁ ମୋ ନିଜର ସ୍ୱାର୍ଥ ତ ଆଗ ବୁଝିବି ! ଛିଡ଼ରଖାଇ. ଏତେ ବେଳକୁ କେଡ଼େ ଆପଣାର ହେଉଛ ?"

× × ×

କଟକରେ ଯାଇ ମଧୁବାବୁ ଦେଖିଲେ, ଝିଅଟିରେ ଯାହା ଲେଖା ହୋଇଥିଲା ଅବସ୍ଥା ତା'ଠାରୁ ବି ଭଲ । ଓକିଲ ବାବୁ ତାଙ୍କ ବାପାଙ୍କୁ ଚିହ୍ନନ୍ତି । ବାପାଙ୍କ ନାମ ଶୁଣିବାମାତ୍ରେ ସେ ପୁତ୍ର-ବାତ୍ସଲ୍ୟ ଦେଖାଇଲେ । ଆଉ ତାଙ୍କର ଝିଅଟି—ଲକ୍ଷ୍ମୀଠାରୁ ବି ସୁନ୍ଦର, ତା'ଠାରୁ ତ ଢେର ଅଧିକ ଶିକ୍ଷିତ ଓ

ସୌହାର୍ଦ୍ଦ୍ୟପୂର୍ଣ୍ଣ । ସେ ଲେଉଟିବା ପୂର୍ବରୁ ତା'ର ହାତ ତାଙ୍କ ଦେହରେ ଥରେ ଦି'ଥର ବାଜିଗଲା । ଓଙ୍କାଲବାବୁ ସାଙ୍ଗେ ସାଙ୍ଗେ ଦର ଦସ୍ତୁର କରିଦେଲେ । ସେ ଏଇଠାରେ ରହିବେ, ଖାଇବା ପିଇବା, କଲେଜକୁ ଯିବାଆସିବା ଖର୍ଚ୍ଚ, ଲୁଗାପଟା ସବୁ ଏଠାରୁ ମିଳିବ । ତା'ପରେ ସିନେମା ଫିନେମା ଯିବା ଖର୍ଚ୍ଚ ମଧ୍ୟ । ମାସକୁ କେତେ ଦରମା ଦିଆଯାଇ ପାରିବ ତାହା ମାସକ ପରେ ପଡ଼ିବ । ଛାତ୍ରୀ ସଙ୍ଗେ ଅଧିକ ପରିଚିତ ହେବାକୁ ତାଙ୍କୁ ଛାଡ଼ିଦେଇ ଓଙ୍କାଲ ବାବୁ ନିଜ ଅଫିସ ଘରକୁ ଚାଲିଗଲେ ।

ସେଇ ମୁହୂର୍ତ୍ତିରେ ମଧୁବାବୁ ଅନୁଭବ କଲେ ସେ ଭୂସ୍ୱର୍ଗରେ ଆସି ପହଞ୍ଚିଛନ୍ତି । ମମତାର ପ୍ରେମମୟୀ ମୂର୍ତ୍ତି ତାଙ୍କ ମନରେ ଆଙ୍କି ହୋଇ ରହିଗଲା । ମମତାର ନିଜ ମୁହଁରୁ ସେ ଶୁଣିଲେ, ତାଙ୍କ ବାପା ବିନୋଦବାବୁଙ୍କର ବ୍ୟାଙ୍କରେ ଲକ୍ଷେ ଟଙ୍କା ଅଛି । ତା'ବାଦ୍ କଟକରେ ତିନିଟା କୋଠା । ମମତା ପାଇଁ ୪୦ ଭରି ସୁନାର ଗହଣା ହୋଇ ସାରିଛି, ବିଭାଘରକୁ ଆଉ ଦରକାର ହେବ । ବାପା ଏହା ମଧ୍ୟ ଶୁଣାଇ ଦେଇଛନ୍ତି, ସେ ଯାହାକୁ କହିବ ତା'କୁ ବାହାଇଁ କରିବାରେ ତାଙ୍କର କୌଣସି ଆପତ୍ତି ନାହିଁ । ମମତାର ସୁଖରେ ତାଙ୍କର ସୁଖ । ଏ କଥାଗୁଡ଼ିକ ଅନ୍ୟ କଥା ଭିତରେ ଏପରି କୌଶଳରେ ସେ ଶୁଣାଇ ଦେଲା ଯେ ନିଜକୁ ସେ ଯଚେଇ କରୁଛି ବୋଲି ମଧୁବାବୁଙ୍କର ସନ୍ଦେହ ତ ହେଲା ନାହିଁ ; ଓଲଟି ମନରେ ହେଲା, ସୁବିଧା ମିଳିଲେ ସେ ମମତାର ଗୋଡ଼ ଧରି ନିଜେ ନିଜକୁ ଯାଚନ୍ତେ ।

ଏହି ଉପକ୍ରମରେ ଆରମ୍ଭ ହୋଇଥିବା ପରିଚୟ ପ୍ରଥମ ପନ୍ଦର ଦିନ ଉତ୍ତରୋତ୍ତର ବଢ଼ିବାରେ ଲାଗିଲା । ମମତା ତାଙ୍କ ସଙ୍ଗେ ଦୁଇ ଥର ସିନେମା ଗଲାଣି, ନନ୍ଦନକାନନରେ ବୁଲିବା ତ ସବୁ ଦିନ । ସାଙ୍ଗରେ ଚାକରାଣୀଟାଏ ଥିଲେ କ'ଣ ହେଲା, ମମତା ସଙ୍ଗେ ନିରୋଳାରେ କଥାବାର୍ତ୍ତା ହେବାକୁ ମଧୁବାବୁଙ୍କୁ ସୁଯୋଗ ମିଳେ ଖୁବ୍ । ପ୍ରଥମେ ପ୍ରତିମୁହୂର୍ତ୍ତିରେ ସେ ମମତା ସଙ୍ଗେ ଲକ୍ଷ୍ମୀର ତୁଳନା କରି କେଉଁ ଖାତରୁ ସେ ଉଦ୍ଧାର ପାଇଛନ୍ତି କଳନା କରି ନିଜକୁ ସାବାସ୍ ଦେଉଥିଲେ । ଏବେ ଲକ୍ଷ୍ମୀ କଥା ମନରୁ ଏକାବେଳେକେ ପାସୋରି ଗଲାଣି କହିଲେ ଚଳେ । ମମତାର ଚାହାଣୀ, ସରସ କଥାବାର୍ତ୍ତା, ଅଟ୍ଟ ପରିହାସ ତାଙ୍କୁ କିଣି ପକାଉଥାଏ । ତାଙ୍କର ଥରେ ଦି'ଥର ମନ ହୁଏ ନିଭୃତରେ ମମତା

ସଙ୍ଗେ ଭବିଷ୍ୟତର କଳ୍ପନାଜଳ୍ପନା କରନ୍ତେ । କିନ୍ତୁ ସେ ସୁଯୋଗ ମମତା ଦିଏ ନାହିଁ । ପଢ଼ାଘର, ଖାଇବାଘର, ନଈକୂଳ ଓ ସିନେମା ହଲ୍ ବ୍ୟତୀତ ଆଉ କୌଣସିଠାରେ ମମତା ସଙ୍ଗେ ଦେଖା ବି ମିଳେ ନାହିଁ ।

ମାସେ ପୂରିବାକୁ ଆଉ ଦୁଇ ଚାରି ଦିନ ଅଛି, ମନର ରୁଦ୍ଧ ଆବେଗ ସମ୍ଭାଳି ନ ପାରି ମଧୁବାବୁ ପଢ଼ା ଘରେ, ପଢ଼ା ବହିକୁ ଆଡ଼େଇ ଦେଇ ଆରମ୍ଭ କଲେ, 'ମମତା !'

ମମତା ହସହସ ହୋଇ ଜବାବ୍ ଦେଲା, "କଣ କହୁ ନାହାନ୍ତି ?"

ଟିକିଏ ଛେପ ଢୋକି ମଧୁବାବୁ ଆରମ୍ଭ କଲେ, "ମମତା, ଏ ଶିକ୍ଷକ ଓ ଛାତ୍ରୀ ପ୍ରହସନ ଆଉ କେତେ ଦିନ ଲାଗିବ ?"

ମମତା ବିସ୍ମିତ ହେଲାପରି କହିଲା, "ପ୍ରହସନ ! କାହିଁକି ? ଏ ତ ଅତି ବାସ୍ତବ । ମୋତେ ପାଠ ପଢ଼ାଇବା ଯଦି ପ୍ରହସନ, ତେବେ ଆପଣଙ୍କର ଏଠାରେ ରହିବାର ଆବଶ୍ୟକତାଟା କଣ ଶୁଣେ ।"

ମଧୁବାବୁ ବିସ୍ମିତ ହେଲେ । ତାଙ୍କର ଧାରଣା ଥିଲା, ମମତା ବୋଧହୁଏ ଅନ୍ୟ ସମ୍ପର୍କରେ ତାଙ୍କ ପାଖରେ ବନ୍ଧା । ତଥାପି ସେ କହିଲେ, "ମୁଁ କ'ଣ ତୁମର ଯୋଗ୍ୟ ନୁହେ ?" ମମତା କହିଲେ, "ପ୍ରଶ୍ନର ଏ ରୂପଟା ମୋତେ ସୁଖ ଲାଗୁଛି । କିନ୍ତୁ ଏହା କଥାର ଗୁରୁତ୍ୱ ହୋଇଥାଇପାରେ । ଆଜି ନିଜକୁ ମୋ-ଠାରେ ସମର୍ପଣ କରି, କାଲି ଯଦି ଆପଣ ମୋତେ ନିଜର ସମ୍ପତ୍ତି ବୋଲି ଦାବୀ କରନ୍ତି ? ରାଣୀ ଏଲିଜାବେଥଙ୍କ ଠାରେ ଏଡ଼ିନ୍‌ବର୍ଗର ଡିଉକ୍ ଯେପରି ଆତ୍ମ-ସମର୍ପଣ କରିପାରିଛନ୍ତି, ଆପଣ ସେପରି ପାରିବେ ତ ? ଆପଣ ପରି ନିଜର ମତକୁ ବଡ଼ ବୋଲି ଧରି, ବାପା, ମା ଓ ବାଗ୍‌ଦତ୍ତା ପତ୍ନୀଙ୍କୁ ଛାଡ଼ି ପାରିଛନ୍ତି । ମତର ସେ ସ୍ୱାଧୀନତା ଆପଣ ମୋ'ଠାରେ ବିନିମୟ କରି ପାରିବେ ତ ?"

ନିଜର ଘର କଥା ସବୁ ଠିକେ ଠିକେ କହି ଦେଇଥିବାରୁ ମଧୁବାବୁ ଦୁଃଖିତ ହେଲେ । କିନ୍ତୁ ମମତାଙ୍କର ଏ କଥାରେ ହଟିଗଲେ ନାହିଁ । ସେ କହିଲେ, "ସମସ୍ତଙ୍କୁ ଗୋଡ଼ରେ ଫୋପାଡ଼ି ଦେଇଥିବା ଲୋକ କ'ଣ ନିଜକୁ ଅନ୍ୟ ଜଣକର ଗୋଡ଼ତଳେ ପକାଇବା ସମ୍ଭବ ହୁଏ ନାହିଁ ? ମମତା ! ମୁଁ

ତୁମକୁ କ'ଣ ବୋଲି ଭାବେ, ତାହା ମୋର ହୃଦୟ ଚିର ଦେଖାଇ ପାରନ୍ତି କି ଜାଣନ୍ତି !"

ମମତା କହିଲା, "ଆଉ ମୁଁ ମୋର ଭବିଷ୍ୟତ ବିଷୟରେ କ'ଣ ଆଶା କରିଛି, ଆପଣଙ୍କୁ ମଧ୍ୟ ଜଣାଇ ଦେଇ ପାରିଲେ କଥାଟା ପରିଷ୍କାର ହୋଇ-ଯା'ନ୍ତା । ମୁଁ ଏ ଘରର ମାଲିକ । ମୁଁ ଥିବାଯାଏଁ, ସବୁ ସମ୍ପତ୍ତି ମୋର ହୋଇ ରହିବ ; ମୁଁ ଇଚ୍ଛା କଲେ ସମ୍ପତ୍ତି ବିକିବି, ଭାଙ୍ଗିବି, ଦାନ ଖଇରାତ କରି ପାରିବି । ମୋର ଯେ ସ୍ୱାମୀ ହେବ ସେ ସେଥିରେ ପାଟି ଫିଟାଇ ପାରିବନାହିଁ । ସେ ବି ହେବ ମୋର ଗୋଟିଏ ସମ୍ପତ୍ତି । ମୋର ଇଚ୍ଛା ହେଲେ ମୁଁ ଛାଡ଼ପତ୍ର ଆଇନର ସାହାଯ୍ୟରେ ତାଙ୍କଠାରୁ ସ୍ୱତନ୍ତ୍ର ହୋଇ ଅନ୍ୟ ପତି ଗ୍ରହଣ କରି ପାରିବି ।"

ମଧୁବାବୁ ତାଟକା ହୋଇଗଲେ । କିଛିକ୍ଷଣ ପରେ ନିଜକୁ ପ୍ରକୃତିସ୍ଥ କରି କହିଲେ, "ସମ୍ପତ୍ତିକୁ ମୁଁ ବଡ଼ ବୋଲି ମନେ କରେ ନାହିଁ । ତୁମ ପିତାଙ୍କର ଯେତିକି ସମ୍ପତ୍ତି ଅଛି, ମୋ ପିତାଙ୍କର ସେହି ମୂଲ୍ୟର ନ ହେଲେ ବି କମ୍ ଭୂସମ୍ପତ୍ତି ନାହିଁ । ମୁଁ ତାକୁ ଛାଡ଼ି ଆସିଛି । କିନ୍ତୁ ଆମ ସମାଜରେ ଛାଡ଼ପତ୍ର ଚଳିବ, ଏ କଥା ମୁଁ ହଜମ କରିପାରୁ ନାହିଁ ।"

ମମତା କହିଲେ, "ମଧୁବାବୁ ! ଆପଣଙ୍କ ହଜମଶକ୍ତି ଦୁର୍ବଳ ଏ କଥା ମୁଁ ବହୁତ ଆଗରୁ ଜାଣେ । ଆପଣ ଗୃହାନ୍ତି, ଆପଣଙ୍କର କଥା ଓ କାର୍ଯ୍ୟ ସମସ୍ତେ ହଜମ କରିବେ, କିନ୍ତୁ ଆପଣ କିଛି ହଜମ କରି ପାରିବେ ନାହିଁ । ଆପଣ ଊନବିଂଶ ଶତାବ୍ଦୀରେ ଅଛନ୍ତି ବୋଲି ମୁଁ ମନେ କରୁଛି । ଆଜିକାଲିର ପାଠ-ପଢ଼ା ଝିଅଙ୍କୁ ଚିହ୍ନିବା ପାଇଁ ଆପଣଙ୍କୁ ଆଉ କିଛି ଦିନ ଲାଗିବ ।"

ମଧୁବାବୁ ଆଉ ମମତା ଆଡ଼କୁ ଚାହିଁ ପାରିଲେ ନାହିଁ ! ତାଙ୍କର ମନେ ହେଉଥାଏ, ଆଜିର ପାଠପଢ଼ା ଏତିକିରେ ରଖି ଟିକିଏ ବିଶ୍ରାମ କରିବେ, ମମତା ଯେଉଁସବୁ କଥା କହିଗଲେ ତାହାର ଚର୍ବିତଚର୍ବଣ କରି ସାର ଗ୍ରହଣ କରିବେ । ମମତା ତାଙ୍କ ଚିନ୍ତାରେ ବାଧା ଦେଇ କହିଲେ, "ହଁ ଆଉ ଗୋଟିଏ କଥା ମଧୁବାବୁ ! ଆପଣଙ୍କ ପିତାଙ୍କର ଗୁଡ଼ିଏ ସମ୍ପତ୍ତି ଅଛି ବୋଲି କହିଲେ । ଆପଣଙ୍କ ବ୍ୟତୀତ ଆଉ କେହି ଉତ୍ତରାଧିକାରୀ ନାହିଁ । ଆପଣ ଯଦି ମୋ ବାପାଙ୍କ ପରାମର୍ଶରେ ଆପଣଙ୍କ ପିତାଙ୍କ ନାମରେ ଗୋଟିଏ ମକଦ୍ଦମା

ଢାଏର କର ନଜର ସ୍ୱତ୍ୱଟି ଆଦାୟ କର ମୋ ନାମରେ କରି ଦିଅନ୍ତେ, ତେବେ ଆମର ସମ୍ପର୍କ ସ୍ଥାୟୀ ରହିବାର ସମ୍ଭାବନା ବଢ଼ନ୍ତା ବୋଲି ମୁଁ ଭାବୁଛି ।"

ଆଉ ଅଧିକ କଥାବାର୍ତ୍ତା ହେବାର ମନୋବୃତ୍ତି ମଧୁବାବୁଙ୍କର ନଥିଲା । ବାପାଙ୍କ ସଙ୍ଗେ ମକଦ୍ଦମା କରିବାର ପ୍ରସ୍ତାବ ଆସିବାରେ ତାଙ୍କ ମନ ବାପାଙ୍କ ପ୍ରତି ଅନୁକମ୍ପାପରାୟଣ ହେଲା । ତଥାପି ସେ ଶେଷ ପର୍ଯ୍ୟନ୍ତ ସୌଜନ୍ୟ ରଖିବାକୁ କହିଲେ, "ଆପଣଙ୍କର ଏତେ ସମ୍ପତ୍ତି କ'ଣ ବା ହେବ ?"

ସାଙ୍ଗେ ସାଙ୍ଗେ ମମତା ଉତ୍ତର ଦେଲେ, "ସମ୍ପତ୍ତିର ଲୋଭ ନାହିଁ କାହାର ? ଆପଣଙ୍କର କ'ଣ ନାହିଁ ? ବିଧବାର କନ୍ୟାକୁ ଯେ ଆପଣ ପାଦରେ ଫୋପାଡ଼ି ଦେଇ ଆସିଛନ୍ତି, ସମ୍ପତ୍ତି ଯୋଗୁଁ ନା ତା' ମା'ର ବୈଧବ୍ୟ ଯୋଗୁଁ ?" ମଧୁବାବୁ କହିବେ କାହାକୁ ? ଏ କଥା ମଧ୍ୟ ସେ ମମତାକୁ ଆଦ୍ୟ-ପ୍ରାନ୍ତ କହିଛନ୍ତି ! 'ଆଜି ଆଉ ପାଠ ପଢ଼ାଇ ପାରିବ ନାହିଁ' ବୋଲି କହି ସେ ନିଜ ଶୋଇବା ଘରକୁ ଯାଇ ରକ୍ଷା ପାଇଲେ । ଲକ୍ଷ୍ମୀର ବିଦାୟ ବେଳର କଥା କେଇ ପଦ ମନରେ ଆସି ଧକ୍କା ଦେଲା, "ମୋତେ ଯିବି ବୋଲି କହିବାର ଅଧିକାର ମୋର ନାହିଁ ; କିନ୍ତୁ ବାପାଙ୍କୁ ପୁଛିବି, ମାଙ୍କୁ ପୁଛିବି । ମୋ ପ୍ରାଣ ଆଜି ନ ଯାଇ କାଲିକି ଯିବ ।" ସର୍ବଶେଷରେ, "ତୁମର କାହିଁକି ରାଗ, ଆଜି ମୋତେ କହି କାଲିକି ଯିବ"—ପ୍ରଥମ ଦିନ ଲକ୍ଷ୍ମୀ ତାଙ୍କୁ ଯାହା ପ୍ରତ୍ୟାଖ୍ୟାନ କରିଥିଲା, ତାହାପାଇଁ ଏହା କ୍ଷତିପୂରଣ ନୁହେଁ ତ ଆଉ କ'ଣ ?

ମଧୁବାବୁଙ୍କ ମନରେ ପଶ୍ଚାତ୍ତାପ ଆସିଲା । ଲକ୍ଷ୍ମୀ ଅଛି ନା ନୈରାଶ୍ୟରେ ତା' ମା' ପାଖକୁ ଗଲାଣିଭାରି ? ବାପା ତାଙ୍କର ଅବାଧ୍ୟତା ସହିଛନ୍ତି ତ ? ମା ବଞ୍ଚିକରି ଅଛି ତ ? ମଧୁବାବୁଙ୍କ ମନେହେଲା, ବାପା ଯଦି ଆଜି ଆସି ତାଙ୍କୁ ଦୁଇଟା ଗୋଇଠା ଦେଇ କାନ ଧରି ଘରକୁ ନେଇ ଯା'ନ୍ତେ, ତାହା ହେଲେ ସେ ସାନ ପିଲାଟି ପରି ଉଲ୍ଲାସ ମନରେ ତାଙ୍କ ପଛେ ପଛେ ଯାଆନ୍ତେ !

ସେ ଏହିପରି ଭାବି ଭାବି ସ୍ଥିର କଲେ, ଘରକୁ ଯା'ନ୍ତୁ ବା ନ ଯାଆନ୍ତୁ, ଆଜି ରାତିରେ ନ ହେଲେ କାଲି ସକାଳେ, ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଯିବେ । ପୂଜାରୀ ଖାଇବାକୁ ଡାକିବାରେ ସେ ଦେହ ଖରାପ ଅଛି ବୋଲି କହି ଲାଇଟ୍ ଲିଭାଇ ଶୋଇବାକୁ ଯାଉଛନ୍ତି, ମମତା ଚଟି ଖଣ୍ଡିଏ ଧରି ତାଙ୍କ ପାଖକୁ ଆସିଲେ ଓ କହିଲେ, "ମଧୁବାବୁ ! କ୍ଷମା କରିବେ, ଆପଣଙ୍କର ଏ ଚଟି ଖଣ୍ଡି

୨।୩ ଦିନ ହେଲା ଆସି ବାପାଙ୍କ ଟେବୁଲରେ ପଡ଼ି ରହିଥିଲା ।" ମଧୁବାବୁ ତରା ତର ହୋଇ ଚିଠି ଚିରି ପଢ଼ିଲାବେଳକୁ ମମତା ବାଧା ଦେଲେ, "ମଧୁବାବୁ ! ମୋ କଥାରେ ଆପଣ ଖୁବ୍ ରୁଷ୍ଟ ହୋଇଯାଇଛନ୍ତି ନା ! ମୁଁ କ୍ଷମା ପ୍ରାର୍ଥନା କରିବାକୁ ଆସିଛି । ବସିପାରେ ?" ଅନୁମତିକୁ ଅପେକ୍ଷା ନ କରି ମମତା ମଧୁବାବୁଙ୍କ ଶୋଇବା ଖଟ ଉପରେ ବସିପଡ଼ିଲେ । ମଧୁବାବୁଙ୍କର ମନେ ହେଲା ଏ କଳଙ୍କପସରାଠାରୁ ଏଇ ମୁହୂର୍ତ୍ତରେ ଶହେ କୋଶ ଦୂରକୁ ଚାଲି-ଯା'ନ୍ତେ । ନିଜକୁ ଖୁବ୍ ସମ୍ଭାଳି ସେ ପଢ଼ିବାକୁ ଲାଗିଲେ, "ପ୍ରାଣେଶ୍ୱର !"— ପଢ଼ୁ ପଢ଼ୁ ଦେହ ଶୀତେଇଗଲା । ସେତିକବେଳକୁ ମମତା ଆରମ୍ଭ କଲେ, "ମୁଁ ତ ଦେଖୁଛି ଆପଣ ଗୋଟିଏ ଭ୍ରମର । ବହୁ ନାରୀ ଆପଣଙ୍କୁ ପ୍ରାଣେଶ୍ୱର ବୋଲି ମାନିଛନ୍ତି ।" ମଧୁବାବୁ କିଞ୍ଚିତ୍ ଉତ୍ତ୍ୟକ୍ତ ହୋଇ କହିଲେ, "ଚିଠି ମୋର ଘରୁ ଆସିଛି । ଟିକିଏ ପଢ଼ିବାକୁ ଦିଅ ।"—

ଚିଠି ପଢ଼ା ଚାଲିଲା—"ମା ବାଧ୍ୟ କରିବାରୁ ଏ ଚିଠି ଲେଖିଲି, କ୍ଷମା କରିବ । ବାପା ତିନି ଦିନ ହେଲା ଠାକୁରାଣୀଙ୍କ ଘରୁ ବାହାରୁ ନାହାନ୍ତି । ମା ଆଧାର ଗ୍ରୁଡ଼ି ସାରିଲେଣି । ଆମ୍ଭମାନଙ୍କୁ ଦେଖିବାକୁ ଥରେ ଶୀଘ୍ର ଆସ ।"

ମଧୁବାବୁ କିଛି ଭାବିବା ପୂର୍ବରୁ ମମତା କହି ପକାଇଲେ, "ଦେଖନ୍ତୁ, ଆଜିକାଲିର ନାରୀ ପୂର୍ବପୁରୁଷଙ୍କ ଠାରୁ କିପରି ଫରକ୍ । ମା ଆଧାର ଗ୍ରୁଡ଼ିଲେଣି, କିନ୍ତୁ ଆପଣଙ୍କ ପ୍ରାଣେଶ୍ୱରୀ ଖାଇପିଇ ଆପଣଙ୍କ ଦର୍ଶନ ଅପେକ୍ଷାରେ ଅଛନ୍ତି ।"

ମଧୁବାବୁ କ୍ରୁଦ୍ଧ ହୋଇ କହିଲେ, "ମମତା ! ମୁଁ ତୁମ ଘରେ ପ୍ରାୟ ମାସେ ହେଲା ରହିଲିଣି । ବେଶ୍ ଆରାମରେ ଅଛି । ଶେଷ ମୁହୂର୍ତ୍ତରେ ମୋତେ ଜର୍ଜରିତ କର ନାହିଁ ।"

× × × ×

ତହିଁ ଆରଦିନ ବେଳ ଦି'ଘଡ଼ି ସରିକି ମଧୁବାବୁ ବାଡ଼ିବାଟେ ନିଜ ଘର ଭିତରକୁ ପଶିଯାଉଛନ୍ତି, ମା'ଙ୍କ ନଜର ପଡ଼ିଲା । ସେ ଦିଅଁଙ୍କ ଘରକୁ ଧାଁଉ ଧାଁଉ ପାଟି କଲେ, "ଆହେ ! ସିଠେଇ କ'ଣ ବସିଛ ମ, ଦେଖ, ପୁଅ ଆସିଲାଣି ।" ଦାସେ ଦିଅଁଙ୍କୁ ମୁଣ୍ଡିଆମାରି ଉଠୁ ଉଠୁ କହିଲେ "ଦେଖିଲ ! ମୁଁ ସକାଳେ କ'ଣ କହୁଥିଲି ? ଗଲା ପାହାନ୍ତିଆରେ ପରା ଠାକୁରାଣୀ ନିଜେ ଆସି

ମୋତେ କହିଲେ—'କାହିଁକି ଖାଲି ହେଉଚୁ, ତୋ ପୁଅ ଠିକ୍ ସମୟରେ ଆସି ପହଞ୍ଚିବ ।' ଠାକୁରାଣୀ ନ ବଗିରଥିଲେ ବାପୁଟା କ'ଣ କରିଥାନ୍ତା କେଜାଣି ?"

× × × ×

ବାପଘରର ପୂର୍ବ ଦିନ ଷ୍ଟେସନରୁ ଗୋଟିଏ ରିକ୍ସାରେ ମମତା ଓ ତାଙ୍କ ଗୃହକର୍ତ୍ତ୍ରୀ ଓ ପଛରେ ଲାଗିଥିବା ତିନିଟା ରିକ୍ସାରେ ଲୁଗାପଟା, ବାସନକୁସନ ଟ୍ରଙ୍କବାକ୍ସ ଭର୍ତ୍ତି ହୋଇ ଦାସଙ୍କ ଦୁଆରେ ଲାଗିଲା । ଦ'ଭଉଣୀଙ୍କ କନ୍ଦାକଟା ବନ୍ଧୁବାନ୍ଧବଙ୍କ ସଙ୍ଗେ ପରିଚୟ ପରେ ମମତା ମଧୁବାବୁଙ୍କ ଘରକୁ ଯାଇ ତାଙ୍କର ଖଟରେ ବସିପଡ଼ି କହିଲେ, "କଟକରେ ଆପଣଙ୍କ ଖଟରେ ବସିପଡ଼ିଲି ବୋଲି ଆପଣ ଏଠାକୁ ପଳାଇ ଆସିଥିଲେ । ଏବେ ଏଠାରେ ବସିଲିଣି, ଗୃହଲକ୍ଷ୍ମୀ କଟକ ଯିବ ।"

ଘର ତମାମ ହସଗୋଳ ଖେଳିଗଲା । ସାଇ ମାଇପେ, ବନ୍ଧୁବାନ୍ଧବ ମାଇପେ ମମତାର ବୁଦ୍ଧିକୁ ତାରିଫ୍ କଲାବେଳକୁ, ମଧୁବାବୁଙ୍କ ପଡ଼ିଶାଘର ଗୋସିଁମା କହିଲେ, "ଆଉ ସେ ବାଳୁଙ୍ଗୀ ଲକ୍ଷ୍ମୀକୁ କ'ଣ କମ୍ ବୋଲି କହିବା । ସେ ଭଉଣୀ ପାଖକୁ ଚିଠିଦେଲା ବୋଲି ସିନା ସେ ଉପାୟ କରି ଚଉସମ ଖୋଇବାକୁ ମଧୁଆକୁ ଡାକି ନେଲା । ଲକ୍ଷ୍ମୀ ସିନା ପାଠ ପଢ଼ିନାହିଁ, ପାଠୋଇ ଭଉଣୀର ନାନ୍ନୀ ତ !"

———








ପନ୍ଦ ଗୋଟ୍ଟିଏ ବୁଢ଼ା ପଣସ ଗଛଟିକୁ ଆଉଜାଇ, କେତକୀ ଅଣ୍ଟା ସଳଖିଲା ବେଳକୁ ପେଟ ସିମିଠ ଉକୁଟେଇ ହୋଇଗଲା, ମୁଣ୍ଡ ଘୂରିଲା, ଦେହ ଅବଶ ଲାଗୁଥାଏ । ରାଜଧାନୀରେ ଆଜିକୁ ପନ୍ଦର ଦିନ ତଳେ ଏଇ ଲକ୍ଷଣ ପ୍ରଥମେ ଦେଖାଗଲା ଦିନୁଁ, ତିନି ଚାରିଥର ଜଣାଗଲାଣି, କିନ୍ତୁ ପଅରଦିନ ଗାଁରେ ଆସି ପହଞ୍ଚିବା ବେଳୁଁ କିଛି ଅସୁଖ ଲାଗି ନ ଥିଲା । କେତକୀ ବିଚାରିଥିଲା ବୋଧହୁଏ 'କେନାଭୂଇଁଆ', 'ଯାଗେଶ୍ୱରୀ' ଓ 'ବଢେଇ' ଠାକୁରାଣୀମାନେ ତା' ଡାକ ଶୁଣିଲେ । ଏ ସମସ୍ତଙ୍କୁ ସେମାନଙ୍କ ଚିର ପ୍ରଚଳିତ ବିଧି ଅନୁସାରେ ସେ ଗଞ୍ଜେଇ, ଉଖୁଡ଼ା ଓ କଳା କୁକୁଡ଼ା ଯାଚି ସାରିଥାଏ । କିନ୍ତୁ କାହିଁ ? କେଉଁ ଠାକୁରାଣୀ ତ ଶୁଣିଲେ ନାହିଁ ! କେତକୀର ଗୋଟାଏ ବଡ଼ ଆଶା ପାଣି ଫୋଟକା ପରି ଫାଟିଗଲା । ଯାହାଙ୍କ ଯୋଗୁଁ ତା'ର ଏ ଅବସ୍ଥା ସେ ତ ଶୁଣି ଶୁଣିଲେ ନାହିଁ, ଯେଉଁ ଠାକୁରାଣୀଙ୍କଠାରେ ସେ ପିଲାଟି ଦିନୁ ଏତେ ନିଘା କରି

ଆସିଛୁ ସେ ତ ଶୁଣିଲେ ନାହିଁ, ଆଉ ତା'ର ଅଛୁ କିଏ ? ତା'ର ଭରସା ବୋଇଲେ ଜଣେ, କାଳୁଣୀ ଆଈ—ବୁଢ଼ୀ ଥର ଥର ଚାଲୁଛି ; ଚମ ଧୁଡ଼ୁ ଧୁଡ଼ୁ, ଦିନେ ଗୁଣ୍ଡେ ଖାଇଲେ ତିନି ଦିନ ଯାଏଁ ପେଟକୁ ମାରେ । ଇମିତି କାଳୁଣୀ ହୋଇଗଲାଣି ଯେ ଡେଲା ମିଟିମାଇଲେ ପଚାରେ, "କ'ଣ କହୁଛୁ ?" ପାଞ୍ଚହାତରୁ ଛ'ହାତ ହୋଇଗଲେ ମଣିଷ ଚିହ୍ନିପାରେ ନାହିଁ । କେତକୀ ପଥର ଦିନ ଯେତେବେଳେ ଗାଁକୁ ଆସି ତା' ଗୋଡ଼ତଳେ ମୁଣ୍ଡିଆ ମାଇଲା, ବୁଢ଼ୀ ମୁଣ୍ଡରୁ ଗୋଡ ଯାଏଁ ଆଉଁସି ପକାଇ କହିଲା, "କିଏ ? କେତକୀ ? ଅଇଲୁ । ଆଈ ମନେ ପଡ଼ିଲା, ନାହିଁ ? ଆଉ ଦିଶୁ ନାହିଁ ଲୋ, ଝିଅ ! ମଣିଷ୍ଟା ଖାଲି ଗୋଟେ ଛାଇ ପରି ଦିଉଚି । ହଉ, ହଉ ! କେଡ଼େ ଡଉଲ ଡାଉଲ ତ ହେଇଚୁ । କୁ'ବାଡ଼ପଡ଼ା ତ ଆସି ତତେ ନେଇ ଯିବ । ଏଥର ସିନା କକା ନେଇଥିଲା ଯେ ଛୁଡ଼ି ଦେଇ ଗଲା, ସେଥର ଯେ ନବ, ଏକାଥରକେ ନବ । ହଉ ନେଉ, ବୁଢ଼ୀ ଆଉ କେତେ ଦିନ ଥିବ ଯେ ଝୁରିବ, କହିଲୁ ।"

ବୁଢ଼ୀ ହେଇଛି ପଚିଶ ହାତ ଦୂରରେ, ହେଇଛି ସେ କଣମୁଣ୍ଡିଆ ପଣସ ଗଛ ତଳେ ପତର ସାଉଁଟୁଛି । ଆଜି ପାହାନ୍ତିଆରୁ କେତକୀ ତାକୁ ଯେତେବେଳେ ଉଠେଇଲା ସାଙ୍ଗରେ ଯିବାକୁ, ବୁଢ଼ୀ ସାଙ୍ଗେ ସାଙ୍ଗେ ବାହାରିଲା । କମିତି ଜାଣିଲା କେଜାଣି, କହିଲା, "ଚାଲ ଚାଲ, ବରମପୁରା ଗାଁ ମୁଣ୍ଡରୁ ଦି'ଗୋଛା ପତର ଗୋଟେଇ ଆଣିମା । ବଡ଼ ମା ଜାଳ ପେଇଁ ବଡ଼ ହିନବସ୍ଥା ହଉଚି ।" ବାଟରେ ବୁଢ଼ୀ ତା ପିଠିରେ ହାତ ମାରି କହିଲା, "କେତକୀ ଲୋ ! ବଡ଼ ମା'ର ଇମିତି ପୋଡ଼ା ଗୁଣ ମୂଳରୁ ନ ଥିଲା ମ ! ଏବେ ଚାରିଆଡ଼୍ ଚାରିଆଡ଼୍ ହୋଇ ଯୁ ବିପତ୍ତି ପଡ଼ିଛି ସିଥେରେ ସେ ଭାଙ୍ଗି ପଡ଼ୁଛି । ଦିନ ନାହିଁ ରାତି ନାହିଁ, ବାସିଆଡ଼େଇତି କରିବାରେ ଧାନ କୁଟିବାରେ ତା'ର ତ ନିସତ ନାହିଁ ! ଆଜି ବୁଝି ଦେବ, ତୁ ବଡ଼ ସା'ନ୍ତଙ୍କ ଘରେ ଟିକେ ବୋଲହାକ କରିବୁ, ଭାତ କଂସେ ତ ଅଣିମୁଁ । ଦେଖିବୁ, ବଡ଼ ମା କମିତି ଖୁସି ହବ ।

କେତକୀ କକାଙ୍କ କଥା ଆଇକି କହିନାହିଁ, ବଡ଼ ମା'କୁ କହିବାକୁ ତା'ର କୁ'କେଉଁଠି ? ବୁଢ଼ୀକୁ କହିବାକୁ ବସିଲେ, ଗାଁଯାକ ଶୁଣନ୍ତେ ସିନା, ବୁଢ଼ୀ ତ ଶୁଣନ୍ତା ନାହିଁ । ବଡ଼ ମା କଥା ଗୁଡ଼ାକ ଭାରି ଟାଣ । ସେ ଶୁଣିଲେ ତ ଗାଁ କମ୍ପେଇ ଦେବ । ମା' ମରିବାର ଆଜିକି କେତେ ବର୍ଷ ହେଲାଣି କେଜାଣି ?

ବାପା ଥିଲେ ଯେ, ଝିଅ ମୁଣ୍ଡ ଲୁଖୁରା ହେଉଛି, ସେ ଖାଉଛି କି ନାହିଁ ବୋଲି ଦିନେ ତ ପଚାରନ୍ତି ନାହିଁ । ସବୁ ବୁଢ଼ୀ ବଡ଼ ମା' । ପାଟି କରେ, ଗାଳି ଦିଏ, କିନ୍ତୁ ବେକମୁଣ୍ଡା ଧରି ଗେଫାକୁ ଗେଫା ଭାତ ଇମିତି ଚିକ୍କିଁ ପାହାର ପକାଇଲା ପରି ପାଟିରେ ଗେଞ୍ଜେ ଯେ କେତକୀ ଆକତାମାକତା ହୋଇ ଗୁଣ୍ଡିଏ ଗିଳି ଆଉ ଗୁଣ୍ଡାକ ପାଇଁ ଥାନ ଖାଲି କରେ ।

କାଲି ଓପରଓଳି ବଡ଼ ମା' କଂସେ ପଖାଳ ବାଢ଼ିଦେଇ ପାଖରେ ସଜନାଛୁଇଁ ସିଝା ଦି'ଖଣ୍ଡ ଥୋଇ ଦେଇ କହିଲା, "ଦେ ଖାଇଦେ । ଆଲୋ, କକା ସିନା ଅଦିନଆ ଶରଧାରେ ନେଇଥିଲା ଯେ ପାଞ୍ଚ ଦିଅଣ ବରାଦ କରି ଦେଇଥିବ । ତାକୁଇ ବସି ଝୁରୁନା । ଅଦିନଆ ମେଘ ବରଷିଲେ ପାଳେ ନାହିଁ, ନଷ୍ଟ କରେ । ଅସବାକରେ ଗ୍ଣ୍ଡୁଯାଏ । ନେଇଥିଲା ତ ଯା' ବୋଲି କହିଲା କାହିଁକି ? ଏଠି ତୋ. ବୋପାର ମିହ୍ନା ଭିହରୁ ତତେ ଯା' ବୋଲି କିଏ କହିବ ନାଇଁ ; କିନ୍ତୁ ଖାଇବାକୁ ମିଳିବ ଏଇଆ ।"

କେଡ଼େ ସୁନ୍ଦର କଇଁଫୁଲିଆ ପଖାଳ ହୋଇଥାଏ । ରାଜଧାନୀରେ ଓଷୁଅ-ପକା କଳପାଣିରେ ଭାତ ଗୁଡ଼ାକ କମିତି କେନାକେନା ହୋଇଯାଏ । କେତକୀର ମନ, ସବୁତକ ଖାଇଦିଅନ୍ତା, ତୋଡ଼ାଣି ମୁନ୍ଦାକ ପିଇଦିଅନ୍ତା, କିନ୍ତୁ ବଡ଼ ମା'ର କଥା, କକାଙ୍କର ସ୍ମୃତିରେ ଭାତ ବିଷ ପରି ଲାଗୁଥାଏ । ବଡ଼ ମା' କହିବାକୁ ଲାଗିଥାଏ, "ଆଲୋ, ଏ ସହରୀ ଝିଅ ! ଆଲୋ, ଲୁଗା ସଜାଡ଼ି କରି ପିନ୍ଧିଲେ, ମୁଣ୍ଡ କୁଣ୍ଡେଇଲେ ଦେହ ରହେ ନାଇଁ ମ । ପେଟେ ଖା, ଗଣ୍ଡି ଅଳସ ଗ୍ଣ୍ଡୁ କାମ କର । ଦେଖିବୁ କମିତି ସୁନ୍ଦରପଣ ବାହାରିବ । ଏଇ ପଖାଳରେ ଆମ ଦିହକ ଗଲଣି, ମୋ ଶାଶୁର ଯାଇଛି, ତୋ ମା'ର ଯାଇଛି । ଖାଇବାକୁ ନ ପାଇ ତୋ ମା' ମରିଗଲା ବୋଲି କକା କହିଲା ପରା ! ସେ ବରଷ ମା' ଠାକୁରାଣୀ ନ ଆସିଥିଲେ,ସେ ବି ମୋରି ପରି ଥା'ନ୍ତା । ସୁନ୍ଦରପଣ ଦେଖାଉଛୁ । ଆଲୋ, ତା' ଆଗରେ ତୁ କି ସୁନ୍ଦର ! ଅଣ୍ଟାରେ କାନିଟା ଭିଡ଼ି ଦେଇ ସେ ଯେତେବେଳେ ପଡ଼ର ଗୋଛୁଟା ମୁଣ୍ଡେଇ ଦାଣ୍ଡରେ ଗ୍ଲି ଆସେ, ବଡ଼ ସା'ନ୍ତ ତାକୁ ଟାପରା କରି କେତେ କଥା କହନ୍ତି । କହିବେ ନାଇଁ ? ନାତୁଣୀକି କହିବେ ନାହିଁ ତ କାହାକୁ କହିବେ ? ଆଜଯାଏଁ ତା କଥା ସେ ପାସୋରି ନାହାନ୍ତି । ସେଦିନ ପଚାରୁଥିଲେ, 'ଆଲୋ ନେତ ! କେଣି ତା' ମା'ପରି

ହୁବଚି ? ସେ ଗଲଦିନୁଁ ତମ ସାଇରେ ଆଉ ମାଇକିନିଆଟେ ଦେଖୁନାହିଁ ।' ମୁଁ କହିଲି, "ବାପା ସାଁନ୍ତ ! କେତି ହେଇଥାନ୍ତା, ସେ ବାଡ଼ପଡ଼ାଟା ତ ଆସି ତା'କୁ ଝିଆଣି ବୋଲି ଶରଧାରେ ନେଇଗଲା । କେତି ମଟର ଦେଖିଲା, କକାକୁ ଗୁହାଁରିଲା; ବଡ଼ ମା'କୁ ଟିକିଏ ଗୁହାଁରିଲା ନାହିଁ । ତମେ ସାଁନ୍ତ ସେଦିନ କହିଲ, ଯାଉ ବୋଲି । 'ଯାଉ, ଟିକିଏ ସହର ବଜାର ଦେଖି ଗୁହାଁରି ଆସୁ ।' ସାଁନ୍ତ କହିଲେ, 'ହଉ, ହଉ, ଯାଇଛୁ ତ କ'ଣ ହେଲା । ଯେ ଯାହାର ସେ ତା'ର । ତତେ ଗ୍ରୁଡ଼ି ସେ କେତେ ଦିନ ରହିବ ? ଆଜିଯାଏଁ ତ କକାଙ୍କୁ ଝିଆଣି ବଶି ନ ଥିଲେ, ଭାଉଜ ତ ଦିଶୁ ନାହାନ୍ତି । ଆଲୋ ! ନିଜର ତ ପୁଅ ନାହିଁ କି ଝିଅ ନାହିଁ, ଶ୍ରଦ୍ଧାରେ ନେଇଛୁ, ନେଉ । ହାତି ବନସ୍ତରେ ଥିଲେ ରାଜାଙ୍କର' ।"

କେତିର ଆଖିରୁ ଲୁହଧାର ଭାତ କଂସାରେ ପଡ଼ିଲା । ବଡ ମା' ସେତେବେଳକୁ ସାଁନ୍ତ ଘରକୁ ପାଇଟିକି ଗଲଣି ଖି'ର । କେତି କଂସାକ ଭାତ ନେଇ ଗୋରୁହାଣ୍ଡିରେ ପୂରାଇ ଦେଲା । ବଚ୍ଚିଗଲା, କାଲି ପାହାନ୍ତିଆରୁ ପତର ଗୋଟେଇ ଯିବ । ବଡ଼ ମା'ର ଖଟଣି ଟିକିଏ କମାଇବାକୁ ତା' ସାଙ୍ଗେ ମିଶିବ ।

କିନ୍ତୁ ପୋଡ଼ପାଡ଼ ଦିହଟା ତ ସାଧୁଛି । ଆହୁରି ସାଧିବ । ଆଉ ମାସେ ଦୁଇ ମାସ ଗଲେ ତ ଗାଁଯାକ ପଡ଼ିବ ଉଠିବ । ବଡ଼ ମା' ସମସ୍ତଙ୍କୁ ଠାଉଁ ଠାଉଁ କଥା କହି, ମୁଣ୍ଡ ଟେକି ଏ ପର୍ଯ୍ୟନ୍ତ ଚଳି ଆସିଛି । ସେ ତ ଏ ଅପମାନ ସମ୍ଭାଳି ପାରିବ ନାହିଁ । ତା'ର ଅପମାନ ହେବ ବୋଲି ସେ ସେଦିନ ଆତ୍ମହତ୍ୟା କରି ପାରିଲା ନାହିଁ । କକା ତ ସେ ଦିନ ତୁଣ୍ଡରେ ନ କହି, କାମରେ ସେଇ ଇସାରା ଦେଇଥିଲେ ।

କକା ! ସେ ରାକ୍ଷସକୁ ଆଉ କକା ବୋଲି ଭାବିଦେଲା ବେଳକୁ ଦେହ ଶୀତେଇ ଯାଉଥାଏ । ସେ ଦିନ ବଡ଼ ସାଁନ୍ତଙ୍କ ଗୁହେମିରେ ସେ କେତେ ଶରଧା ନ ଦେଖାଇଲେ । ସେଇ ଶରଧାରେ ସେ ଭୋଲି ନ ହୋଇଥିଲେ ଏ ଅବସ୍ଥା ହୋଇଥାନ୍ତା କାହିଁକି ? ସେ ଦିନ କଥା ସିନେମା ଚିତ୍ର ପରି କେତିଙ୍କର ଆଖି ଆଗରେ ନାଚିଗଲା ।

କକା ବଡ଼ ସା'ନ୍ତଙ୍କ ଗୃହଦ୍ୱାରେ ଗୋଟାଏ ଚଉକିରେ ବସିଥାନ୍ତି। ବଡ଼ ସା'ନ୍ତ ସେଇ ଚଉକି ତଳକୁ ଗୋଟିଏ ମସିଣାରେ ବସିଥାନ୍ତି। ଏଇତକ ଦେଖି ସେ ଦିନ କେତକୀର ପିଲା ମନକୁ କକା କେଡ଼େ ବଡ଼ ଲୋକ ପରି ଜଣା-ଗଲେ! ସେ ଦେଖିଛି, ଏଇ ଗୃହଦ୍ୱାରେ ବଡ଼ ବଡ଼ ଗୋରା ସାଇବମାନେ ବଡ଼ ସା'ନ୍ତଙ୍କ ସଙ୍ଗେ ମସିଣାରେ ବସନ୍ତି। କକା ତ ନିଶ୍ଚେ ତାଙ୍କଠାରୁ ବେଶି ଇମାନ୍‌ଦାର! ଏ ଭଳି ଜଣେ ଲୋକ ତା'ର କକା! ଗର୍ବରେ କେତକୀର ଛାତି ଫୁଲିଗଲା। ସେତିକି ବେଳେ ସା'ନ୍ତ ବଡ଼ମା'କୁ କହିଲେ, "ଆଲୋ ନେତ! ଏଙ୍କୁ ଚିହ୍ନୁଛୁ! ସ୍ୱେ ଆମର ଗାଁର। ତୁ' ପୁଅାଣୀ ହୋଇ ଆସିଲା ବେଳକୁ ତମର ଘରୁ ଜମିଦାରଙ୍କ ପୁଅ ହୋଇ ଗ୍ରଲି ଯାଇଥାନ୍ତି। ପିଲା ଦିନେ ଆମେ ଦୁହେଁ ସାଙ୍ଗ ହୋଇ ପଢ଼ୁଥିଲୁ। ଖୁବ ବଡ଼ ଲୋକ, ସବୁବେଳେ କାମ ଧନ୍ଦା ଲାଗିଛି। ଏବେ ତ ତାଙ୍କର ଆହୁରି ଧନ୍ଦା। ଆମ ରାଜ୍ୟର ଭାର ଏବେ ତାଙ୍କ ମୁଣ୍ଡରେ। ତମମାନଙ୍କୁ ମନେ ପକାଇବାକୁ ତାଙ୍କର ବେଳ କେଉଁଠି? ଯାହା ହେଉ, ରକ୍ତର ଟାଣ କ'ଣ ସହଜ ଟାଣ? ସେ କହୁଛନ୍ତି, କେତକୀ ତାଙ୍କ ସାଙ୍ଗରେ ଦିନ କେତୋଟା ରହିବ। ରହୁ। ସାଧୁଆର ଝିଅ କ'ଣ ତାଙ୍କର ଝିଅ ନୁହଁ? ସାଧୁଆ ଯିମିତି ତୋ' ଦିଅର, ସେ ସିମିତି ତୋ' ଦିଅର।" ବଡ଼ ମା' କହିଲା, "ହଁ, ସା'ନ୍ତ, ସେ କଥାକୁ କ'ଣ ମୁଁ ନାହିଁ କହୁଛି। ଦିଅର ଆଜି ଭାଉଜକୁ ଖୋଜୁଛନ୍ତି। ଝିଆରୀକୁ ଖୋଜୁଛନ୍ତି! ଆଜି ସିନା ଆପଣମାନେ ତାଙ୍କୁ ଡକେଇଥିଲେ ବୋଲି ଆସିଥିଲେ, ଆମକୁ ସଙ୍ଖୋଳିବାକୁ ତ ଆସିନାହାନ୍ତି! ନେବେ ଯେବେ ଝିଅକୁ ନିଅନ୍ତୁ, କିନ୍ତୁ ବେଗେ ଛାଡ଼ିଦେବେ। ମୋର ଆଉ କିଏ ଅଛି? କାଲୁଣୀ ବୁଢ଼ୀଟା ତ ତାକୁ ଗଣ୍ଠି ଧନ କରି ଧରିଛି। ମୂଳିଆପିଲା ମୂଳିଆଙ୍କ ଘରେ ସିନା ରହିଲେ ସୁନ୍ଦର। ଆପଣ ତଳେ ବସିଛନ୍ତି, ଦିଅର ମୋର ଗୋଡ଼ ଲମ୍ବେଇ କୁରୁଚରେ ବସିଛନ୍ତି! କେତକୀ ଯେବେ ଇମିତି ଉପରମୁହାଁ ହୋଇଯିବ, ତେବେ କିମିତି ଚଳିବ କେଜାଣି?"—କଳାହାଣ୍ଡିର କଥାକୁ କେହି ଧରିଲେ ନାହିଁ। ସା'ନ୍ତ ଏତିକି ବୁଝିଲେ, ବଡ଼ ମା' ତା'ର ଯିବାରେ ରାଜି। କେତକୀ କକାଙ୍କ ସାଙ୍ଗେ ମଠରକୁ ଗଲା।

କକା ସେଇ ବାଟରେ କୋରାପୁଟ ଗସ୍ତରେ ଯାଉଥାନ୍ତି । ବ୍ରହ୍ମପୁରରେ କେତକୀ ପାଇଁ କେତକୀ ରଙ୍ଗର ଶାଢ଼ୀ କଣାହେଲା, ଏକାଥରକେ ୬ ଖଣ୍ଡ ; ତା ସାଙ୍ଗକୁ ଛ' ଖଣ୍ଡ ବ୍ଲାଉଜ୍, ସାବୁନ୍, ଅତର, ବାସନା ତେଲ, ଚରୁଣୀ ପାନିଆ—ତା'ର ପାଇଁ ଏତେ ସରଞ୍ଜାମ ! କେତକୀର ଆଖି ଖୋସିହୋଇଗଲା । ସକାଳୁ ଦିନ ଦି'ପହରଯାଏଁ ଗୋବର ଗୋଟାଇ ଗୋଟାଇ ଗାଣ୍ଡି ଆରେ ଦି'ଲେଣ୍ଡା କମ୍ ଥିଲେ, ବଡ଼ମା' କହେ, "କଲେ ! ପୋଡ଼ାମୁହିଁ, କାହା ସଙ୍ଗେ ବାଲିରେ ହସଖୁସି ଲଗାଇଥିଲୁ କି ?" ସେଇ ବଡ଼ ମା'ଠାରୁ ଆଜି ଶହେ ମାଇଲ ଦୂରରେ ରହି କେତକୀ ମନ ଭରି ଉଶ୍ୱାସ । ଆଉ ଗୋବର ଗୋଟାଇବା ନାହିଁ କି ପଖାଳ ତେଣ୍ଟିବା ନାହିଁ । ବ୍ରହ୍ମପୁର ଡାକ ବଙ୍ଗଳାରେ ପହଞ୍ଚି ପହଞ୍ଚି କକାଙ୍କ ପାଖରେ ବସି ସେ ଯେତେବେଳେ ହଳଦିଆ ପିଠା ସାଙ୍ଗରେ ଚା' ପିଇଲା, କକା ହସି ହସି ପଚାରିଲେ, "ସେ କି ପିଠା କହିଲୁ ?" ସେ ଅଣ୍ଡା-ପିଠା । ଅଣ୍ଡା ପୁଣି ଏଡ଼ିକି ସୁଆଦ ! ସେ ପଠାଣସାହି ବାଡ଼ି ଆଡ଼ୁ ଦିନେ ଗୋଟେ କୁକୁଡ଼ା ଅଣ୍ଡା ଗୋଟାଇ ଆଣିଥିଲା ଯେ ବଡ଼ମା' ପାଟିରେ ସାଇ କମ୍ପେଇ, ସେଦିନ ତା'କୁ ଲୁଗା ଧୁଆଇଥିଲା ।

ଖାଇକରି ଉଠିଲାବେଳକୁ ଦୋକାନରୁ ଶାଢ଼ୀ ବ୍ଲାଉଜ୍ ଆସିଥାଏ । ସାବୁନ୍ ଲଗାଇ ଗାଧୋଇ ପଡ଼ିବାକୁ କକା ତା'କୁ ଗାଧୁଆ ଘରକୁ ପଠାଇ ଦେଲେ । ଆଗରୁ କିଏ ଆଣି ଗରମ ପାଣି ଠାଏ ଓ ଥଣ୍ଡା ପାଣି ଠାଏ ରଖିଥାଏ । ସେ ସାବୁନ୍ ଲଗାଇଲା ବେଳକୁ ତା' ଦେହରୁ ଚନ୍ଦନର ବାସନା ଉଠୁଥିଲା । କେତକୀ ନିଜ ଦିହକୁ ଶୁଙ୍ଘିଲା । ସତେ ତା'ର ଦେହରେ ଏତେ ବାସନା !

କକା ତା'କୁ ନ ଡାକି ଶାଢ଼ୀ ବ୍ଲାଉଜ୍ ଧରି ଗାଧୁଆ ଘରକୁ ପଶି ଆସିଲେ । ସେତେବେଳକୁ ତା ପିନ୍ଧାରେ ପାଣି ଲାଗି ସେ ଲଗଲା ବୋଲି କହିଲେ ଚଳେ । ଲାଜରେ ତା' ସର୍ବାଙ୍ଗ ଥରିଗଲା । କକା କହିଲେ, "ମତେ ଗୋଟାଏ ଲାଜ କ'ଣ ? ଏ ଲୁଗା, କୁରୁତା ତୁ ପିନ୍ଧି ଜାଣିବୁ ନାହିଁ ବୋଲି ମୁଁ ଆସିଲି ।" ତଉଲିଆ ଚପୁଡ଼ି ସେ ତା'ର ସର୍ବାଙ୍ଗ ପୋଛିଦେଲେ । ଛାତି ପୋଛିଲା ବେଳେ ସେ ଉଁ, ଉଁ କହୁଥିଲା । କକା ହସି ହସି ତା'କୁ ବ୍ଲାଉଜ୍ ପିନ୍ଧାଇଦେଲେ । ସେତିକିବେଳେ ସେ ଟିକିଏ ଟାଣ ହୋଇଥାନ୍ତା କି ?

ତା'ମନ ସେତିକିବେଳେ କମିତି କମିତି ହୋଇଥିଲା ; ବଡ଼ ମା' ପରି ଦି'ପଦ ଟାଣ କଥା କହିବାକୁ ତା'ର ମନ ହୋଇଥିଲା । କିନ୍ତୁ ସେ ଯେତେବେଳେ ଦର୍ପଣରେ ତା' ନିଜ ମୁହଁକୁ ଦେଖିଲା, ସେତେବେଳେ ତା'ର ରାଗ କୁଆଡ଼େ ଗଲା । ମୁହଁ ଲାଜରେ ନାଲି ହୋଇଗଲା । କକାଙ୍କ ପ୍ରତି କୃତଜ୍ଞତାରେ ଛାତି ଫୁଲିଗଲା । କକା ମୁରୁକି ମୁରୁକି ହସି ତା'ରି ମୁହଁକୁ ଚାହିଁଥାନ୍ତି ।

କେତକୀର କୃତଜ୍ଞତା ଆହୁରି ବଢ଼ିଲା ଯେତେବେଳେ ମଟର ପଚାଙ୍ଗୀ ଘାଟି ଉପରକୁ ଚଢ଼ୁଥାଏ । ଚାରିଆଡ଼େ ପର୍ବତ । ପର୍ବତର ବେକଯାଏଁ ଓଢ଼ଣା ପରି ମେଘ ଘୋଡ଼ାଇଥାଏ ; ପବନରେ ଓଢ଼ଣା ଖସିଲା ପରି ମେଘ ହଲି ହଲି ଏ ପର୍ବତରୁ ସେ ପର୍ବତକୁ ଖସୁଥାଏ ; ତା'ରି ଭିତରେ ସାପପରି ସଡ଼କଟା । ଯେଉଁଠାରୁ ମଟର ବାହାରିଥାଏ, ୧୦ମିନିଟ୍ ପରେ ପୁଣି ଆସି ସେଇଠାରେ ପହଞ୍ଚେ । ତଳ ସଡ଼କଠାରୁ କାହିଁ କେତେ ଉଚ୍ଚରେ ; କିନ୍ତୁ ସେଇ ସଳଖା । କକା ତା'ରି ଦେହକୁ ଲାଗି ବସିଥାନ୍ତି, ମଝିରେ ମଝିରେ ପଚାରୁଥାନ୍ତି, 'କମିତି ଲାଗୁଛି ?' ସେ କହିବ କ'ଣ ? ମନ ହେଉଥାଏ, ତାଙ୍କରି କୋଳରେ ମୁହଁ ଲୁଚାଇ କାନ୍ଦନ୍ତା । ବଡ ମା' କ'ଣ ଏ ସୁଖ ବୁଝିବ ? ବାପା ଥା'ନ୍ତେ କି ?

ଚାହୁଁ ଚାହୁଁ କୋରାପୁଟ ସର୍କିଟ୍ ହାଉସ୍ ହୋଇଗଲା । ଚାରିଆଡ଼େ ସାନ ବଡ଼ ହୋଇ କେତେ ପର୍ବତ । ସେଇଥିରୁ ଗୋଟିଏ ପର୍ବତ ଉପରେ ସର୍କିଟ୍ ହାଉସ୍ । ଏମିତି ସୁନ୍ଦର ଘର କେତକୀ ବାଟରେ ଆଉ କେଉଁଠି ଦେଖିନାହିଁ । ତାଙ୍କ ମଟର ହତା ଭିତରେ ପଶିଗଲାବେଳେ ପ୍ରାୟ ୧୫ଜଣ ପୁଲିସ ବନ୍ଧୁକ ଟେକି ଯେମିତି ଠିଆ ହୋଇଗଲେ, ତା ଦେଖି କେତକୀ ଛାନିଆଁ ହୋଇଗଲା । କକା ହସି ହସି କହିଲେ, "ମୋତେ ପାଲ୍ଲେଟି ନେବାକୁ ସେମାନେ ଏପରି କରୁଛନ୍ତି । ଡରୁଛୁ କାହିଁକି ?" କେତକୀ ନିଜକୁ ଉପହାସ କରି ହସିଲା । କେତେ ବଡ଼ ହାକିମ ଆସି ସର୍କିଟ୍ ହାଉସ୍‌ରେ ପହଞ୍ଚିଲେ । କକା କାହାକୁ ପଦେ କହିଲେ, କାହାକୁ କିଛି କହିଲେ ନାହିଁ । ସବୁଠାରୁ ବଡ଼ ହାକିମଙ୍କୁ ଡାକି କହିଦେଲେ, 'ମୋର ଏଠାରେ ତିନିଦିନ ରହିବାର କଥା, ଏଥର ବିଶ୍ରାମ କରିବାକୁ ସାତଦିନ ରହିବି । ପ୍ରଥମ ଚାରିଦିନ କୌଣସି ସରକାରୀ କାର୍ଯ୍ୟରେ କୁଆଡ଼େ ଯିବି ନାହିଁ । ଚାରିଆଡ଼େ ଖବର ପଠାଇଦିଅ ।' କେତକୀକୁ

ବଡ଼ ଆନନ୍ଦ ଲଗିଲା । ଏଭଳି ଜାଗାରେ ସେ ସାତଦିନ କାହିଁକି, ସବୁ ଦିନେ ରହିଯାନ୍ତା କି ?

ରାତି ପହିରେ ହେଲା ବେଳକୁ ଖିଆ ପିଆ ସବୁ ସରିଗଲା । କକା କହିଲେ, "ଏତେବାଟ ଆସି ହାଲିଆ ହୋଇ ପଡ଼ିଲୁଣି, ଆସ ଶୋଇବା ।" କେତକୀ କହିଲା, "କ'ଣ ଗୃହକୁ ଆସିଥାଇଁ କି ? ମୋର ତ ମନ ହେଉଛି, ବାହାରେ ଯାଇ ବୁଲନ୍ତି ।" କକା କହିଲେ, "ହଉ ଆ, ଶୁଅ । କାଲି ସକାଳୁ ଯେତେ ଇଚ୍ଛା ବୁଲିବୁ । କାଲି ଏଠାର ଆଦିବାସୀ ମାଇକିନିଆଁଙ୍କ ନାଚ ଦେଖିବୁ । ଗୃହଆଡ଼େ ଯେତେ ଆମୋଦ ପ୍ରମୋଦ, ମଉଜ ମଜଲିସ୍ ଅଛି, ମୋ'ର ପାଖେ ରହି ତୁ ସବୁ ଭୋଗକର ।"

ବଡ଼ କୋଠରୀଟା ମଝିରେ ବଡ଼ ବଡ଼ ଦୁଇଟା ଖଟ ଯୋଡ଼ା ହୋଇ ପଡ଼ିଛି । ସେଥିରେ ତ କକା ଶୋଇବେ । ସେ ଶୋଇବାକୁ, ଖଟ ଉପରେ ଚଉତା ହୋଇ ଥୁଆ ହୋଇଥିବା ଖଣ୍ଡିଏ କମ୍ବଳ ନେଇ ଗୋଟିଏ କୋଣକୁ ଯିବ ବୋଲି କମ୍ବଳ ଧରୁଛି, କକା ତା'ର ହାତକୁ ଧରିଲେ ଓ ଟେକି ନେଇ ଖଟ ଉପରେ ଶୁଆଇ ଦେଲେ । କହିଲେ, "କେତକୀ ମୋ ପାଖରେ ନ ଶୋଇ ଆଉ କେଉଁଠି ଶୋଇବୁ ?" ସେତେବେଳକୁ ସେ ତାଙ୍କର ଦୁଇଟି ବଳିଷ୍ଠ ବାହୁରେ ତାକୁ ଜାକି ସାରିଲେଣି । କେତକୀ ସେଥିରୁ ମୁକୁଳିବାକୁ ଚେଷ୍ଟା କରୁ କରୁ କହିଲା, "ଆପଣ ମୋର କକା ! ଏମିତି କ'ଣ କରୁଛନ୍ତି ?"

କକା କହିଲେ, "ହଁ, ବାହାରକୁ ମୁଁ କକା ସତ, କିନ୍ତୁ ପ୍ରକୃତରେ କ'ଣ ମୁଁ ତୋର କକା ? ମୁଁ କୋଉ ଦିନୁଁ ପୁଅ ହୋଇ ଯାଇଚି । ତୁମର ଆମର ତ ଏବେ ଆଉ ସମ୍ବନ୍ଧ ନାହିଁ । ତୋ' ପିଲାଦିନୁଁ ଆଜିଯାଏଁ ମୋତେ କେବେ ଦେଖିଥିଲୁ ? ସେ ଦିନ ତୁମ ଗାଁର ସଭାରେ ବକ୍ତୃତା ଦେବାବେଳେ ତୋତେ ମୁଁ ଦେଖିଲା ବେଳୁ ବିଗ୍ରୁଛି, ମାଳତୀ ଫୁଲଟାଏ ବଣରେ ମଉଳି ଯାଉଛି । ମୁଁ ତାକୁ ଖଟୁଲିରେ ବସାଇବ । ତୋ ପାଇଁ ଯାହା କଲିଣି ସେ କିଛି ନୁହେଁ । ମୁଁ ତୋତେ ଏ ଦେଶର ଜଣେ ନାମିନେତ୍ରୀ କରିବ । ତୁ ବି ମୋର ପରି ସଭାସମିତିରେ ବକ୍ତୃତା ଦେବୁ । ତୋ ପଛରେ ଦେଶର ହଜାର ହଜାର ସତୀ ସାଧ୍ୱୀ ଗୋଡ଼ାଇବେ ।"

କେତକୀ କୁନ୍ଥୁ କୁନ୍ଥୁ ହେଉଥାଏ ; ତଥାପି ଭିଡ଼ ମୋଡ଼ ହେଉଥାଏ । କକା ରାଗିଗଲେ, "ଦେଖ୍, ତୁ ବେଶି ଖୋସାମତ ଚାହୁଁଛୁ । ଅଭିକା ଦାଣ୍ଡଦୁଆର ଫିଟାଇ ବାହାରକୁ ବାହାର କରିଦେବ । ଟିକିଏ ଇସାରା ଦେଇଦେଲେ କାଲି ସକାଳୁ ତୋତେ କେହି ଅନାଇବେ ନାହିଁ । କାଲି ସକାଳ ତ ଦୂରର କଥା, ଏଇ ରାତିରେ ବାଘ ଭାଲୁ ଟିକି ଟିକି କରିଦେବେ । ମୋ ଖଟକୁ ଗୋଡ଼ରେ ଠେଲ ନା । ଏଇଥିରେ ଆଶ୍ରୟ ପାଇ ଦାସୀ ରାଣୀ ହୋଇଥିଲେ । ଏଇଥିରୁ ବଞ୍ଚିତ ହୋଇ ଆଜି ଛତରଖାଇ ହୋଇ ବଜାରରେ ବୁଲୁଛନ୍ତି ।"

କେତକୀ ବାହାରର ବାଘ ଭାଲୁଙ୍କ ଡରରେ ଖଟ ଉପର ବାଘକୁ ପାଟି ଫିଟାଇଲା ନାହିଁ । ଘଣ୍ଟାକ ପରେ ଲୁଗାପଟା ସଜାଡ଼ି ଶୋଇଲା ବେଳକୁ କହିଲା, "ଏକଥା ଯଦି କେହି ଜାଣିବ ?" କକା ଆଶ୍ୱାସନା ଦେଲେ, "କେହି ଜାଣିବେ ନାହିଁ । ଜାଣିଲେ ବି ପାଟି ଫିଟାଇବେ ନାହିଁ ! ତୁ ମତେ ଚିହ୍ନି ନାହୁଁ । ରାଜଧାନୀକୁ ଚାଲ, ଦେଖିବୁ ।" କେତକୀର ମନେ ପଡ଼ିଲା, ସନ୍ଧ୍ୟାବେଳେ ବଡ଼ ହାକିମଗୁଡ଼ାକ କପରି କୁକୁର ପରି ହେଉଥାନ୍ତି, ମନେ ପଡ଼ିଲା ଗାଁରେ କମିଟି କକା ଚଉକିରେ ଗୋଡ଼ ଲମ୍ବାଇ ବସିଥାନ୍ତି, ବଡ ସା'ନ୍ତ ନିର୍ବିକାର ଭାବେ ତଳେ ବସିଥାନ୍ତି । ସେ କକାଙ୍କ ଛାତିରେ ମୁହଁ ଗୁଞ୍ଜି ଶୋଇ ପଡ଼ିଲା ।

ଆଜି ବରମପୁର ଟୋଟା ଭିତରେ ପଦ୍ମଗୋଚ୍ଛ ପାଖେ ଠିଆ ହୋଇ କେତକୀ ଭାବୁଥାଏ—ସେ ଦିନ ହେଲେ ସେ ସର୍କିଟ୍ ହାଉସର ବାହାରକୁ ଚାଲି ଯାଇଥାନ୍ତା ; ବାଘ ଭାଲୁ ଖାଇ ଦେଇଥାନ୍ତେ । ନିନ୍ଦା ତ ରଟନ୍ତା ନାହିଁ । ଆଜି ହେଲେ ବାଘ ନେଇଯା'ନ୍ତା ! ଏଇ ଜଙ୍ଗଲରେ ବାଘ ମାଡ଼ିଛି ବୋଲି ଆଈ କହୁଥିଲା । ଆସନ୍ତା ହେଲେ । × × × ×

ସାତଦିନ ପରେ ସେମାନେ କୋରାପୁଟରୁ ଆସିଲେ । ତା'ପରେ ୬ ମାସରୁ ବେଶି ବେଶ୍ ଶାନ୍ତିରେ ରାଜଧାନୀରେ କେତକୀ ରହିଲା । କକା ତା'ର ପାଠପଢ଼ା ପାଇଁ ମାଷ୍ଟ୍ରାଣୀ ରଖିଦେଲେ । ନିଜର ଦରିଦ୍ର ଝିଅଟିକୁ ହଠାତ୍

ଦିନେ ଦେଖି ଅନୁକମ୍ପାରେ ଘେନି ଆସି  ଦେଶକାର୍ଯ୍ୟ ପାଇଁ ତାଲିମ  କରୁଛନ୍ତି ବୋଲି ପ୍ରଚାର  ହେବାରେ  ତାଙ୍କର  ମହତ୍ତ୍ୱ  ଯେତିକ  ବଢ଼ିଲା,  କେତକୀର ମଧ୍ୟ ମାନ ସେତିକ ବଢ଼ିଲା । ଏଇପରି ଆଉ କେତେ ଦିନ ଯାଇଥାନ୍ତା  । ଦିନ ତମାମ କକାଙ୍କ ସଙ୍ଗେ ଦେଖା ମିଳେ ନାହିଁ । ରାତିରେ ଖୁଡ଼ୀ  ଥିଲେ,  ମଝିରେ ମଝିରେ ଗାଧୁଆ ଘରେ, ବୈଠକଖାନାରେ, ଘରର କୌଣସି ଅନ୍ଧାର କୋଣରେ ତାଙ୍କର ସ୍ପର୍ଶ ଅନୁଭବ ହୁଏ । ଖୁଡ଼ୀ କିନ୍ତୁ ରାଜଧାନୀରେ ପ୍ରାୟ ରହନ୍ତି  ନାହିଁ । ସେ ଆସିଲେ,  କେତକୀ  ଜେନାଭୂଇଁଆଙ୍କୁ  ଗଣ୍ଡେଇ  ଯାଚେ,  କମିତି  ସେ ବେଗେ ଯିବେ । କକା ଗସ୍ତରେ ଗଲେ  ମଧ୍ୟ  ତା'ର  ମନ  ଖରାପ  ହେବାର ଚାକରାଣୀ ଲକ୍ଷ୍ୟ କଲାଣି ।

ଥରେ କକା ଗସ୍ତରେ ଯାଇଛନ୍ତି, କେତକୀର  ମୁଣ୍ଡ  ଖୁବ୍  ବଥେଇଲା । ଦେହ କିମିତି ଲାଗିଲା, ତଳ ପେଟ ଭାରି ବୋଧ  ହେଲା  ।  ସେ  ଚାକରାଣୀକୁ ରୋଗର ଲକ୍ଷଣ ସବୁ କହିବାରେ ସେ ମୁହଁ ଛୁଆଁଡ଼ି ଜବାବ୍  ହେଲା,  "ଆଲୋ, ଅଭାଗୀ, କାହାକୁ  କହୁଛୁ ! ତୋ'ର  ପରି  ଯ୍ୟାର  ପୋଷିଆଁ  ବାପ  ମୋତେ ଧରିଆଣି ଏଇ ଅବସ୍ଥା କରିଥିଲା । ଥରକୁ ଥର ପେଟ  ଭଙ୍ଗାଇ  ଯୁବତୀ  ବେଳ ଗଡ଼ିଲା । ସ୍ୱାଙ୍କର ଘରେ ଜୀବନ କଟିଲା ପୋଇଲି  ହୋଇ । ଯେତିକି ଦିନ ସୁଖ ପାଇଲୁ, ପାଇଲୁ । ପେଟ ହେଲାଣି ଲୋ, ପେଟ ହେଲାଣି । ଯେ  ଏଡ଼େ  ସୁଆଗ କରୁଥିଲା, ଏ କଥା ଶୁଣିଲେ ସେ କିମିତି ହବ ଦେଖିବୁ ।"

କେତକୀ କିଛି ନ କହି ତୁନି ହୋଇ ରହିଲା !  ସତେ  ତା'ର  ଅବସ୍ଥା କ'ଣ  ହେବ  ? କକାଙ୍କର  କ୍ଷମତା  ଅତୁଳ ; ତା'  ପ୍ରତି   ତାଙ୍କ  ସ୍ନେହର ତୁଳନା ନାହିଁ । ସେଇ ଯାହା ବ୍ୟବସ୍ଥା କରିବେ । ବିଚାରି କେତକୀ ତୁନି ହୋଇ ରହିଲା । କକା  ଆସିଲେ, ଦିନ  ଦି'ପହରେ । କାମ  ଧନ୍ଦାରେ  ରାତି  ୧୦ଟା ପର୍ଯ୍ୟନ୍ତ ଲାଗିଲେ । ତା'ପରେ ଟିକିଏ ସୁଯୋଗ ପାଇ ସେ ଯେତେବେଳେ ତାଙ୍କ ପାଖକୁ ଗଲା, ପଦେ କଥା କହିଚ କି  ନାଇଁ,  ଜଣା  ପଡ଼ିଲା  ଚାକରାଣୀ  ସବୁ ଫୋଡ଼ି ଦେଇଛି ।

ସେ କହିଲା, "ଏବେ କ'ଣ କରିବା । ଏକଥା ଯଦି ପ୍ରଘଟ ହୁଏ ?"

କକାଙ୍କର  ସେ  ରୂପ ! ବାପରେ  ବାଘ  କାହିଁକି  ଇମିତି  ହେବ  ? କହିଲେ, "ମୁଁ  କରିବ କ'ଣ ?  ଗୋବରଗୋଟେଇଟାକୁ  ଆଶ୍ରୟ  ଦେଲି ଯେ

ଶେଷରେ ମୋତେ କହୁଛୁ, 'କ'ଣ କରିବା ?' ମୁଁ ସବୁବେଳେ କହେ, 'ନୈତିକ ବଳ ବଡ଼ ବଳ' । ନିଜକୁ ଯଦି ଠିକ ନ ରଖିବ ତେବେ ପିଠିରେ ପଡ଼ିବ କିଏ ? କହ, କୋଉ ଦୁର୍ବୃତ୍ତ ତୋ'ର ଏ ଅବସ୍ଥା କରିଛି, କହ । ଯାହା ନାମ କହିବୁ, କାଲି ତଥ ଥାଉ କି ନ ଥାଉ, ତା'ର ସଙ୍ଗେ ତୋର ବିଭାଘର କରିଦେବି ।"

କେତକୀ ଅବାକ୍ । କାହାକୁ କ'ଣ କହିବ ? ତୂନି ହୋଇ ଘରୁ ବାହାରି ଗଲା ବେଳେ କକା ପୁଣି ଡାକିଲେ, "କେତକୀ ଏଣ୍ଡେ ଆ' । ପାନ ଖଣ୍ଡେ ଆଣେ । ପାଣି ଗ୍ଲାସେ ଆଣେ ।" ପାଣି ଆଣି କୋହରେ ହାତକୁ ବଢ଼ାଇ ଦେଲା ବେଳେ ତା' ହାତକୁ ଧରିବାକୁ ଯାଉ ଯାଉ କହିଲେ, "ଗୃହିଣୀଟା ସମସ୍ତଙ୍କୁ ତୋ କଥା କହିଥିବ ବୋଲି ବିଗୁରି ବଡ଼ ପାଟିରେ ସିମିତ କହିଲି, ମନରେ ଦୁଃଖ କରିବୁ ନାହିଁ । ଆ, ମୋ ପାଖକୁ ଆ ।" କେତକୀ ଥରୁଟାଏ ତାଙ୍କ ଆଡ଼କୁ ଚାହିଁ ମୁହଁ ବୁଲାଇ ଆସିଛି ଯେ ଆଉ ତାଙ୍କ ସଙ୍ଗେ ଦେଖା ହୋଇନାହିଁ । ତା'ପରେ ପ୍ରାୟ ୧୦ ଦିନ ସେ ରାଜଧାନୀର ସେଇ ଡ଼ଆସରେ ରହିଲା । ଗୃହିଣୀ ହାତରେ କକା ଖବର ପଠାଇଲେ 'ପେଟ ପୋଡ଼ା' ଖାଇବାକୁ, ଜଣେ ଡାକ୍ତରଣୀ ବି ଆସିଲେ ଅପରେସନ୍ କରି ଦେବାକୁ । ସବୁ କଥାକୁ ତା'ର ଗୋଟିଏ 'ନାଇଁ' । ତା ପାପର ସେ ପ୍ରାୟଶ୍ଚିତ୍ତ କରିବ । ଗାଁରୁ ଯାଉ, ସମାଜରୁ ଯାଉ, ଯାହା ହେଉ ପଛେ, ଗୋଟାଏ ପାପରୁ ନିଷ୍କୃତି ପାଇବାକୁ ସେ ଆଉ ଗୋଟିଏ ପାପକୁ ଆଶ୍ରୟ ଦେବ ନାହିଁ ।

× × × ×

ପଣସଗଛମୂଳେ ଅବଶ ଦେହକୁ ଟିକିଏ ସାଷ୍ଟମ କରୁ କରୁ ଏଇସବୁ କଥା ମନରେ ଖେଳିଯିବାରୁ କେତକୀ ମନରେ ଗୋଟିଏ ଅଦ୍ଭୁତ ଦମ୍ଭ ଓ ସାହସ ଆସିଲା । ସେ ଯାଗେଶ୍ୱରୀଙ୍କୁ ସେଠାରେ ମୁଣ୍ଡିଆଟିଏ ମାରି କହିଲା, "ମା ! ମତେ ଉଦ୍ଧାର କରିବାକୁ ଡାକୁଥିଲି । ମୋର ଯାହା ହେଉ ପଛେ, ପେଟରେ ଯେଉଁ ମହାତ୍ମାକୁ ରଖିଛ ତାକୁଇ ଘଣ୍ଟ ଘୋଡ଼ାଇ ରଖ ।"

ସେତିକିବେଳକୁ କାଳୁଣୀ ଆଈ ଦୂରରୁ ଡାକଦେଲା, ଆଲୋ କେତି ! ଆଉ ଟିକିଏ ରହ । ମୁଁ ଟିକିଏ ପୋଖରୀରୁଠରୁ ଆସେ, ଯିବା । କୁହୁଡ଼ିରେ ବୁଢ଼ୀ କେଉଁଠିକି ଯିବ ବୋଲି ଡରି ସେ ତାରି ଆଡ଼କୁ ଯିବାକୁ ଗୋଡ଼

ବଢ଼ାଇଛୁ, ପଛରୁ ଡାକ ଆସିଲା, "କେତକି ! ମତେ ଦେଖି ପଳଉଛୁ କାଲେ ! ଟିକିଏ ରହ ମ ।" ଗୁହିଁଦେଲାବେଳକୁ ବରଜୁଭାଇ । ସେ ଗାଁ ଛାଡ଼ି ଯିବାର ମାସେକ ପୂର୍ବେ ଏଇ ଥାନରେ ଏଇ ବରଜୁଭାଇ ତାକୁ କହିଥିଲା, "କେତକି ! ପିଲାଦିନେ କେତେ ଖେଳିଛେଁ ! ତୁ ହଁ କରନ୍ତୁ ବୋଇଲେ, ଜୀବନଯାକ ସିମିତି ଖେଳ ଖେଳ କଟିଯା'ନ୍ତା !" ସେ ଦିନ ସେ ଖିଲ୍ ଖିଲ୍ ହସି ଏ କଥାକୁ ଉଡ଼ାଇ ଦେଇଥିଲା । ତାକୁ ସତର, ବରଜୁଭାଇକି ସେଇଆ ହିବ, ନଇଲେ ବର୍ଷେ ଅଧିକା । ସେ ପୁଣି ତା'କୁ ବଶ୍ୱ ହବ ! ବରଜୁ ଲାଜରେ ଗଲାବେଳେ କହିଥିଲା, "ତୋଠାରୁ ମୋର ବୟସ ବେଶି । ମୋ କକା ତ ପୁଣି ୧୯ ବର୍ଷରେ ତା' ଭାଉଜକୁ ଦୁତିଅ ହୋଇଥିଲା । ମୋର କେହି ନାହିଁ, କିଛି ନାହିଁ ବୋଲି ତୁ ମତେ ଇମିତି କହୁଛୁ ! ହଉ ଦେଖିବା, ଜେନାଭୂଇଁଆ ଯେବେ ସତ, ତେବେ ତୁ ମୋର ହବୁ, ହବୁ, ହବୁ ।"

ସେଇଦିନୁଁ ବରଜୁଭାଇ କାଲିକତା ଯାଇଥିଲା ଯେ ତା'ର ସାଙ୍ଗେ ଏକା ଗାଡ଼ିରୁ ଷ୍ଟେସନ୍‌ରେ ଓହ୍ଲାଇଲା । ସାଇରେ ମାଇପେ କଥାବାର୍ତ୍ତା ହେଉଥିଲେ, ସେ ଗୁଡ଼େ ଟଙ୍କା ଆଣିଛି, ଗାଁରେ ରହିବ, ଭଙ୍ଗା ଘରଟା ତୋଳିବ, ବଳଦ ହଳେ କିଣି ଚାଷ କରିବ. ଭଡ଼ା ବୋହିବ । ରାଜଧାନୀରେ ମନ ଦୁଃଖ ହେଲା ବେଳେ, ସେ ବରଜୁଭାଇ କଥା ମନେ ପକାଏ । ଆହା, ସେଦିନ କ'ଣ ଆଉ ଫେରିବ ! ବରଜୁଭାଇ ଆଉ କହିବ, ଖେଳଖେଳ ଜୀବନ କଟାଇ ଦେବା ବୋଲି ! ଯଦି ବା ସେ କହିବ, କେତକୀ ବା କମିତି ହଁ କରିବ । ବରଜୁଭାଇ ପରି ସିଧାସଳଖ ମଣିଷ ଉପରେ ସେ କାହିଁକି ତା' ପାପଭାର ଲଦିଦେବ । ତା' ଡାକ ଶୁଣି କେତକୀ ମନକୁ ଟାଣ କରିଦେଲା, ସବୁ କଥା ଖୋଲିଖୋଲି କହି-ଦେବ—ବରଜୁଭାଇ ତା'ଠାରୁ ମନ ଛଡ଼ାଇ ଦେଉ—ଆଉ ଦିନେ ତା' ସଙ୍ଗେ କଥାବାର୍ତ୍ତା ହେବାକୁ ଇମିତି କୁହୁଡ଼ି ଭିତରେ ବଣଜଙ୍ଗଲକୁ ନ ଆସୁ ।

× × × ×

ବଡ଼ ସା'ନ୍ତ ସେଇଦିନ ବେଳ ପହରକ ସରିକି ତାଙ୍କ ବାଡ଼ିରେ କୋଶଳା ଶାଗ କିଆରି ଖୁରୁସାଉଛନ୍ତି । ଏଇ ବାଡ଼ିଟାରେ ତାଙ୍କର ଭାରି ଶ୍ରଦ୍ଧା । ନାନା ପ୍ରକାର ପନିପରିବା ନିଜ ଝିଅ ପାଳିଲା ପରି ପାଳନ୍ତି ; ଫଳ ପାଚିଗଲେ, ଶାଗ ପାଚିଲା ହୋଇଗଲେ, ନିଜ ହାତରେ ନେଇ କ୍ୱାଇଁ ଆଦରରେ ସାଇର

ସ୍ୱାକୁ ତାକୁ ଦେଇ ବୁଲୁଥାନ୍ତି । ବରଜୁ ଆସି ପଛ ଆଡ଼େ ଠିଆ ହେଲା । ବଡ଼ ସାଆନ୍ତଙ୍କୁ ସମସ୍ତଙ୍କର ଡର । ତାଙ୍କ ବେଳରେ ଶୁଣିବେ, ତାଙ୍କ ବେଳରେ କହିବେ । ବେଳ ଜଗି ତାଙ୍କ ସଙ୍ଗେ ଚଳିଲେ ସେ ଭାରି କଅଁଳ, ଭାରି ରସିଆ । ନାହିଁ ଯେବେ···ଏକଥା ବରଜୁକୁ କାହିଁକି, ଗାଁର ସମସ୍ତଙ୍କୁ ଜଣା । ଘଡ଼ିଏ ଯାଏଁ ସେ ସେମିତି ଠିଆ ହେଲା । ଶାଗ କିଆରୀ ଖୁରୁପା ସରିଲା, ଗଳିଆ ଗଳିଆ ଦେଖି ବେଙ୍କେ ଶାଗ ଉପୁଡ଼ା ହେଲା । ସେତିକ ଧରି 'ନାରାୟଣ' ବୋଲି ଡାକଟାଏ ଦେଇ ଉଠିଲା ବେଳକୁ ତାଙ୍କର ନଜର ପଡ଼ିଲା ବରଜୁ ଉପରେ, ସେ ପାଁପଡ଼ି ମୁଣ୍ଡିଆ ମାରୁଛି । କହିଲେ, "କିରେ ବରୁଜା, ତୁ କେତେବେଳେ ଆସି ଚୋରର ପରି ଠିଆ ହୋଇଚୁ ! ମୁଁ ଶୁଣିଲିଣି ତୁ ଢନ ଧନ ହେଇ ଆସିଲୁଣି । ଶଳା, କାହା ଗଣ୍ଡି କାଟି ଆସିଛୁ କିରେ ! ଘରୁ ତ ବାହାରୁନାଇଁ । କାଲି ନେତ କହୁଥିଲା, ଘର ତୋଳିବୁ, ବଳଦ କିଣିବୁ, ଗାଁରେ ରହିବୁ । ଆରେ ଟଙ୍କା କେତେ ଆଣିଛୁ ? ମୋର ବଳଦ ହଳକ ନେ । ପିଲେ ଲଗେଇ-ଛନ୍ତି ବଡ଼ ବଳଦ କରିବେ । ତୁ ତାଙ୍କୁ ରଖ, ଦାଣ୍ଡରେ ଢନଶହ ମୂଲ ହେଉଛନ୍ତି. ତୁ ନେଲେ ଦୁଇଶହ ଦେବୁ ।"

ନ ମାଗୁ ନ ମାଗୁ ବରଜୁକୁ ବର ମିଳିଲା ପରି ଲାଗିଲା । ସେ ବଳଦ ହଳକ ଢନଶହ କାହିଁକି, ଆଉ ପଚାଶରେ ବ ମିଳିବେ ନାହିଁ । ସେ ଗୁଣୁ ଗୁଣୁ ହୋଇ କହିଲା, "ସେ ବଳଦ ଦାଣ୍ଡରେ ଢନ ଶହରୁ ପଚାଶ ଷାଠିଏ ବେଶି ହେବେ ।" ବଡ ସାଆନ୍ତ ରାଗିଲା ପରି କହିଲେ, "ତୁ ଶଳା ବଉବଜାରରେ ଲୁଗାଗଣ୍ଠି ବୋହିବାବାଲା, ବଳଦ ଭାଉ ଜାଣିବୁ କ'ଣ ?" ବରଜୁ ତୁନି ହେଲା । କୂଅମୂଳରେ ଶାଗତକ ଧୋଇ ଆଣିବାକୁ ବରଜୁ ହାତକୁ ବଢ଼ାଇ ଦେଇ, ବଡ ସାଆନ୍ତ ତା'ର ପଛରେ ଯାଉଯାଉ ପଚାରିଲେ, "ଆରେ ! ଭକୁଆ ! ବଚାରୁଛୁ ପରା, ବଳଦ ହୋଇଗଲେ, ଘର ତୋଳି ଦେଲେ, ମଣିଷ ଫସାଙ୍ଗ ହୋଇଯାନ୍ତି ! ଆରେ ଗୋଟିଏ ଟୋକୀ ଉପରେ ଆଖି ପକା । ତୁ ଗୋଟିଏ ଆଣିଲେ ଆମେ ସେଥିରେ ଭାଗୁଆଳୀ ହୁଅନ୍ତେ ।"

ବରଜୁ ଶାଗ ଉପରକୁ ଆହୁରି ମୁହଁ ପୋତି କହିଲା, 'ବାପା ସାଆନ୍ତ ! ସେଇ କଥା ପଚାରିବାକୁ ଆସିଥିଲି ।"

ସା'ନ୍ତ ହସହସ ହୋଇ କହିଲେ, "ଆରେ କାହା ଉପରେ ଆଖି ପକାଇଛୁ ?" କେଶି ନାଁ ଶୁଣି ସେ ବଡ଼ ପାଟିରେ ହସି ହସି କହିଲେ, "ଏଁ, ରେଲରେ ମନାମନ ହୋଇଗଲା କିରେ ? ଆରେ ସେ ରାଜା ଟିକେ ? ମୁଁ ଶୁଣିଥିଲି, ସେ ତା' କକା ଘରେ ଭାରି ପୋଷାକରେ ଥିଲା । ସେ ତ ବାବୁଭାୟା ବରଟେ ପାଇବ । ତୋ ପାଇଁ ରାଜା ଟିକେ ?"

ବରଜୁ କହିଲା, "ରାଜା ନାଇଁ କି ନାରାଜ ନାଇଁ ।"

"ଆରେ ! ତା'ହେଲେ ତ ରାଜା । ମାଇକିନିଆଁ ନାହିଁ କଲେ ବି ହଁ ବୋଲି ବୁଝାଯାଏ । ସେ ଯଦି ନାରାଜ ନୁହେ ତେବେ ତ ରାଜି । 'ମିଆଁ ବିବି ରାଜି, କିଆ କରେଗା କାଜି ?' ଆମକୁ ଆଉ ପଚାରୁଛୁ କଣ ?"

ବରଜୁ ଶାଗଧୂଆ ଶେଷ କରି ଠିଆ ହୋଇ, ଦି' ଚାରି ପଦରେ ଅସଲ କଥାଟା ଜଣାଇ ଦେଲା । ବଡ଼ ସା'ନ୍ତଙ୍କ ମୁହଁ ଗମ୍ଭୀର ହୋଇଗଲା ; ମନକୁମନ କହିଲେ "ମୂଳରୁ ବାଳୁଙ୍ଗା । ଭଲ ହେବ କିମିତି ! ବିଚାରିଥିଲି, ଧନ ପାଇଲା, ମାନ ପାଇଲା, ରାସ୍ତାରେ ରହିବ । ବୃଥା ଆଶା !" ତା'ପରେ ବରଜୁ ଆଡ଼କୁ ଚାହିଁ ପଚାରିଲେ, "ତୁ ଜାଣିଲୁ କିମିତି ?"

ନିଜେ କେଶି ସବୁ କହିଛି ଶୁଣି ବୁଢ଼ାଙ୍କ ମୁଖମଣ୍ଡଳ ପ୍ରସନ୍ନ ହୋଇଗଲା । ସେ କରୁଣାରେ ଦ୍ରବିଗଲା ପରି କହିଲେ, "ବରଜୁ ! କଥାଟି ଭଲକରି ବିଚାରେ । କେଶିକି ତୁ ଷୋଳପଣ ସୁଖ ପାଇପାରିବୁ ଟି ? ଆଉ ହପ୍ତେ ଖଣ୍ଡେ ବିଚାରି ମୋତେ କହିବୁ ।" ବରଜୁ ଅଧୀର ଭାବରେ କହିଲା, "ମୁଁ ବିଚାରିଛି ମହାପୁରୁ ! କେଜାଣି ମୋର ଭୁଲ ହେଉଥିବ ବୋଲି ତମକୁ ପଚାରିଲି । ତମେ ତ ହଁ କରୁଛ, ଆଉ ବିଚାରିବି କ'ଣ ? ଆପଣ ବିଚାରିଲେ ଏଇ ଆଗାମୀ ତିଥିରେ ବିଭାଘର ହେବ । ଯେତେ ବେଗେ ହେବ, କଥା ସେତିକି ଛପିକରି ରହିବ ।"

ବଡ଼ ସା'ନ୍ତଙ୍କର ମୁଖମଣ୍ଡଳରେ ସେତେବେଳର ଯେଉଁ ଆଭା ତା'କୁ ଦେଖିବ କିଏ ? ବରଜୁ କହିଲା, "ମୁଁ ଆଜି ଯାଉଛି ରାଜଧାନୀକୁ । ଆପଣ ବାକୀ ସବୁ କଥା ବୁଝିବେ ।"

"କାହିଁକି ? ରାଜଧାନୀରେ ତୋ'ର କ'ଣ କାମ ?"

"ମୁଁ ସେ ରାକ୍ଷସକୁ ଦି'ପଦ ପଚାରିବାକୁ ଯିବି ।

ସାଙ୍ଗେ ସାଙ୍ଗେ ବଡ଼ ସା'ନ୍ତଙ୍କ ମୁହଁ ଲାଲ ହୋଇଗଲା । ସେ ଗର୍ଜନ କଲା ପରି କହିଲେ, "ତମେ କେମିତି ପଣ୍ଡିତ ଆମେ ଜାଣୁ । ଆରେ, ଥରେ ପରା କେଉଁଠାର ଲୁଗା ସାଧୁଆ ଛାଣିଦେଇଥିଲା ବୋଲି ତୁ ତାକୁ ମାରି ମାରି ଗଣ୍ଡାର ବିଲରେ ହିଡ଼ ତଳେ ପକାଇଦେଇ ଆସିଥିଲୁ । ଆରେ, କେଉଁଠି କାକାଙ୍କୁ ତୁ ସିମିତି ପଚାରିବାକୁ ଗଲେ ଜୀବନ ନେଇ ଫେରିବୁ ଟିକି ? ଆରେ, ତାଙ୍କର ଏଇଲେ ମୁଣ୍ଡରେ ହୁହୁଡ଼ି ଜଳୁଛି । ତାଙ୍କ ମୁକାବିଲା କରିବେ ଭଗବାନ୍, ତୁ ନୁହଁ । ଆମ ହାତରେ ଯଦି ତାଙ୍କୁ ସଜାଡ଼ି ହୁଅନ୍ତା ତେବେ ମୁଁ କଣ ଏଡ଼େ ନାକାଲ ଯେ ଗାରେ ଶାଗ କଆଁଶି ଖୁରୁସାଉଥାନ୍ତି । ଆପଣା କଥା ଆପେ ବୁଝ । ପର ଚିନ୍ତା କାହିଁକି ଲାଗିଛି ?"

ବରଜୁଆ ମାଡ଼ ଖାଇଥିବା ଗୁହାଳ ପିଲାପରି ତଳକୁ ମୁହଁ କରି ଠିଆ ହେଲା । ପୁଣି ସା'ନ୍ତ ବାତ୍ସଲ୍ୟରେ ପଚାରିଲେ, "କିରେ ! ଆଉ କ'ଣ ? ସିମିତି ଠିଆ ହେଇଛୁ, ସା'ନ୍ତାଣୀ ଦେଖିଲେ କହିବେ ମୁଁ ତତେ ମାରିଛି ବୋଲି ।"

ବରଜୁ ସନ୍ତର୍ପଣରେ କହିଲା, "ଯେବେ ପିଲାଟିଏ ହୁଏ ?" ସା'ନ୍ତ କହିଲେ, "ତମେ ପାଳିବ । ଆରେ ପିଲା ତ ନାରାୟଣ । ପିଲାରେ ତୋ ପିଲା, ତା ପିଲା କ'ଣ ? ମାଇପକୁ ଯଦି ଦେଖି ପାରିବୁ, ତେବେ ତା ପିଲାକୁ ଦେଖି ପାରିବୁ ନାହିଁ ? ପର ପିଲାକୁ ତ ଆଣି ଲୋକେ ପୋଷ୍ୟପୁତ୍ର କରୁଛନ୍ତି !"

ଏତିକିବେଳେ ସା'ନ୍ତାଣୀ ଆସି ପହଞ୍ଚି ସାଙ୍ଗେ ସାଙ୍ଗେ ଅଭିଯୋଗ ଆରମ୍ଭ କଲେ, "ହଇଏ, ଏ ବରଜୁ ଉପରେ ରାଗୁଥିଲ କାହିଁକି ? ପିଲାଟି ପାଞ୍ଚ ଶହ ଟଙ୍କା ଆଣିବ ବୋଲି ଯାଇଥିଲା ଯେ ରାତି ନାହିଁ, ଦିନ ନାହିଁ ଖଟି ଖଟି ଯେଉଁ ଦିନ ପାଞ୍ଚ ଶହ ହେଲା ସେ ଦିନ ଧରି ଗାଁକୁ ଆସିଛି । ନେତ ହାତରେ ମୋ ପାଖକୁ ଟଙ୍କାତକ ପଠେଇଛି । ମୋର ତମକୁ କହିବାକୁ ମନେ ନାହିଁ ।"

ସା'ନ୍ତ କହିଲେ, "ଆରେ, ତମେ ଟଙ୍କା ପାଇଛ ବୋଲି ତା ପକ୍ଷିଆ ହେଉଛ । ଆମ ଉପରେ ସେ ଯେଉଁ ଭାର ଲଦିଲାଣି, ସେତକ ଆମେ ପାରିଲେ ସିନା ! ବରଜୁଆ କହୁଛି, ସେ ଓ ମୁଁ କେଉଁଠିକୁ ଭାଗୁଆଳୀ ହୋଇ ବାହା ହେବୁଁ ।"

ସାଆନ୍ତାଣୀ ବି ଆନନ୍ଦରେ ବିଭୋର ; କହିଲେ, "ମୁଁ ପରା ଏତେବେଳ ଯାଏ ଲାଗି ଲାଗି ନେତକୁ ମଙ୍ଗେଇ ତମକୁ ପଚାରିବାକୁ ଆସୁଛି ।"

ବଖ୍ରାଘର ରାତି ; ବାରଟାରୁ ବଳିଗଲାଣି । ବରଜୁ କେତେବେଳୁ ଖାଇ ପିଇ ଶୋଇଛି । ସାଇ ମାଇପେ କାମଧନ୍ଦା ସାରି ସେଇ ଘରକୁ କେତକୀକୁ ଠେଲିଦେଇ ବାହାରୁ ଦୁଆର କିଳିଦେଲେ । କେତକୀ ଘର କୋଣରେ ଘଡ଼ିଏ ଠିଆ ହେଲା । ତା'ପରେ ଧୀରେ ଧୀରେ ଯାଇ ବରଜୁର ପାଦ ଦୁଇଟି ଧରି ଟିକିଏ ଆଉଁସି ସେଥିରେ ମୁଣ୍ଡ ଲଗାଇଲା । ତାତିଲା ଲୁହ ଧାରରେ ବରଜୁର ପାଦ ତିନ୍ତିଗଲା । ବରଜୁକୁ ନିଦ ହୋଇ ନଥାଏ । ସେ ଆଉ ସମ୍ଭାଳି ନପାରି, କେତକୀକୁ ଭିଡ଼ି ନେଲା କୋଳକୁ । କେତକୀ କହୁଥାଏ, ରକ୍ଷା ତ କଲ ! ଆଉ ମୋ ପାପ ଦେହରେ ହାତ ଲଗାଅ ନାହିଁ । ମୁଁ ତମରି ଗୋଡ଼ ସେବା କରି କରି ଜୀବନ କଟାଇବି । ହାତରେ ପଇସା ହେଲେ, ଆଉ ଗୋଟିଏ ମାଇପ ଆଣି ଦେବ, ତମେ ସୁଖରେ ରହିବ ।" ବରଜୁ କହିଲା, "କେତି ! ଏଇ ଦିନକୁ ମୁଁ ଦି'ବରଷ ହେଲା ଚାହିଁଥିଲି, ତୁ କାନ୍ଦୁଛୁ ! ବଡ଼ ସା'ନ୍ତ ମତେ ବସାଇ ସବୁ ବୁଝାଇଛନ୍ତି । ଯାଗେଶ୍ୱରୀଙ୍କୁ ଡ଼ାକେ ପୁଅଟିଏ ହେଉ ତା'କୁଇ ଧରି ତା' ବାପକୁ ସାଧ କରିବା ।"

× × × ×

ଦେଢ଼ମାସ ପରେ । ପୋଖରୀ ତୁଠରେ ମାଇକିନିଆଙ୍କର ସଭା ବସିଛି । ସମସ୍ତେ ଗୋଟେ ପଟ—ସବୁ ଭଲ ହେଲା, ବରକୁ କନ୍ୟା ମାନିଲା, ବର କିଛି ପିଲା ନୁହେଁ, ଜୁଆନ ଭେଣ୍ଡା । ହେଲେ, କେନାଘର ଦାସଘର ସଙ୍ଗେ ବନ୍ଧୁ କରିବା ମନକୁ ପାଉନାହିଁ । ବରଜୁର ଜାତି ଶ୍ରେଷ୍ଠ । ଗାଁରେ ତା' ବାପ ଅମଳ-ଯାକ ଏକଘରିଆ ହୋଇଥିଲେ । ନେତ ଶୁଣୁଥିଲା, ଶୁଣୁଥିଲା. ଶେଷକୁ ସମ୍ଭାଳି ନ ପାରି କହିଲା, "ହଉ ହଉ, ତମେ ଜାତି ଗୃହୁଥାଅ । ଆଲେ, ବାହାଘର ଦିନଠୁ ଝିଅର ଲୁଗା ପଡ଼ିନାହିଁ । ମା ଯାଗେଶ୍ୱରୀ ଯଦି ତେର ଟିକିଏ ଲଗେଇ ଦେବେ, ତେବେ ଦାସ ଘର କୁଳ ରହିବ, ଆମ କୂଳ ବି ରହିବ । ଯାହା ତ ହେବାର ହେଲାଣି, ପୋଖରୀ ତୋଠ ମୋ । ସମସ୍ତେ ଯାଗେଶ୍ୱରୀଙ୍କୁ ଜଣାଅ, ମୋ ପିଲା କମିଣ୍ଡି ସୁରୁଖୁରୁରେ ଖଲାସ ହୋଇଯାଉ ।" ତୋଠଯାକ ମାଇପିଙ୍କର ମୁହଁରେ ଆନନ୍ଦର ଢେଉ ଖେଳିଗଲା । ବାଞ୍ଝ ମଧୁଆଭାର୍ଯ୍ୟା ଗାଧୋଇ ସାରି ପାଣି ଠେକୁ ଠେକୁ କହିଲା, "ମା ! ମୋ'ରି ଉପରେ ଏତେ ନିର୍ଦ୍ଦୟା !"

———



ପହିଲି ଭୋଗ ମାସ । ସୂର୍ଯ୍ୟ ଉଦୟର ବହୁପୂର୍ବରୁ ବଡ଼ଦେଉଳର ପେଜନଳା ବାଟେ କ୍ଷୀଣ ଧାରରେ ପେଜ ଗଡ଼ୁଥାଏ । ଲୋକଟି ନଳାମୁହଁରେ ଗୋଟିଏ ଛେଲୁଆ ଦେଖାଇଥାଏ । ଛେଲୁଆ ଚକରେ ଗୁଡ଼ିଏ ଛୋଟ ଛୋଟ ଛିଦ୍ର । ପେଜ ସେଇବାଟେ ଗଳିଯାଉଥାଏ । ପେଜ ସାଙ୍ଗେ ଆସୁଥିବା ଅନ୍ନ ଯୋଡ଼ାକ ପୁଞ୍ଜାକ ଛେଲୁଆରେ ଛାଣି ହୋଇ ରହୁଥାଏ ଲୋକଟି ଖଣ୍ଡିଏ ଛିଣ୍ଡା କନା ଅଣ୍ଟାରେ ଗୁଡ଼ାଇଥାଏ । ଦେହରେ ଖଣ୍ଡେ ଅତି ଚିରା ପୋଷାହା କୁରୁତା । ଦେବର୍ଷି ନାରଦ ସଡ଼କ ଉପରୁ ଲୋକଟିକୁ ଦେଖି ଓ ତା'ର ଉଦ୍ୟମରେ ଆମୋଦିତ ହୋଇ ଟିକିଏ ଠିଆ ହେଲେ । ଲୋକଟିକୁ ଚାହିଁ ଚାହିଁ ହସିଲେ ।

ଲୋକଟି ତାଙ୍କ ହସିବାରେ ଟିକିଏ କ୍ଷୁବ୍ଧ ହୋଇ କହିଲା, "ମହାପୁରୁ, କାହିଁକି ହସିଲ ? ପେଜରୁ ଭାତ ଦି'ଟା ଛାଣିକରି ରଖୁଛି ଓଳିକ ଚଳିଯିବ । ଏଥିରେ ହସିବାର କ'ଣ ଅଛି ?"

ନାରଦ ଆହୁରି ଟିକିଏ ହସି କହିଲେ, "ଓଳିଏ ଚଳିବାକୁ ତୁ ଏତେ ପରିଶ୍ରମ କରିବାରୁ ଟିକିଏ ହସ ମାଡ଼ିଲା । ସେଇ ଭାତର ତ ପେଜ । ବରଂ

ପେଜରେ ବେଶି ସାର । ପେଜ ଦୁ ଚଳା ପିଇଦେଲେ ତ ଓଳକ ଚଳିଯା'ନ୍ତା ।
ଏତେ କଳ କୌଶଳ କରି ରାନ୍ଧୁଛୁ କାହିଁକି ବୋଲି ମତେ ଅପସନ୍ଦ ଲାଗିଲା ।"

ଲୋକଟି ବେଶି ବଗିଡ଼ିଗଲା । କହିଲା, "ମହାପୁରୁ ! ମୁଁ ଏଡ଼େ ଅବସ୍ଥା
ହେଲିଣି ଯେ ଶେଷରେ ଏଇ ପେଜନଳାର ଭାତପୁଞ୍ଜାକୁ ଗୁହାଁରିହେଛି ।
ଆପଣଙ୍କର ମନ, ନଳାରେ ମୁହଁ ଲଗାଇ ଦୁ'ଚଳା ପିଇ ଦିଅନ୍ତି, ନା ? ଏ କାଳ
ତ ସିମିତ ହେଇଚି । ସୁନାମୁଦିଆ ସୁନାମୁଦିଆଙ୍କୁ ଚହ୍ନୁଛନ୍ତି । ବାବାଜି ବଇଷମ
ଦୁଃଖୀର ଦୁଃଖ ବୁଝୁଥିଲେ ଯେ, ଏଥର ସେତକ ବି ଗଲାପରି ଲାଗୁଛି ।"

ନାରଦ ମହା ଅଡୁଆରେ ପଡ଼ିଲେ । ଲୋକଟିକୁ ସଦ୍‌ଜ୍ଞାନ ଦେବାକୁ ଯାଉ
ଯାଉ ଏବେ ତା'ମନରେ ଦୁଃଖ ଦେବାହିଁ ସାର ହେଲା ଦେଖି ସେ ବ୍ୟସ୍ତ
ହେଲେ ; କହିଲେ, "ଆରେ ବାଇଆ ! ମୁଁ ତୋ ଦୁଃଖ ଲାଘବ କରିବାକୁ ସିନା
କହୁଥିଲି ! ଖାଲି ପୁଷ୍ଟିକର ହେଲେ ତ ହେବ ନାହିଁ । ପାଟିକୁ ରୁଚିକର
କଥା । ପେଜ ଅପେକ୍ଷା ଭାତ ତ ଆଜିକାଲି ସମସ୍ତଙ୍କୁ ଅଧିକ ରୁଚିକର ହେଉଛି ।
ଯାହା କରୁଛୁ, ଠିକ୍ କରୁଛୁ । କର, କର ।"

ଲୋକଟି କହିଲା, "ମହାପୁରୁ, ଆଗ କଥାକୁ ଧରୁନାହିଁ ଯେ ଏବେ କ'ଣ
କହିଲ ? ମୁଁ ଯାହା କରୁଛି ସ୍ୱା ପୁଣି ଆପଣଙ୍କୁ ଭଲ ବୋଲି ଦିଶିଲା ! ନା ?
ହଁ, କାହିଁକି ନ କହିବ ? ଭଗବାନ ତ ସ୍ୱା କରଉଛନ୍ତି, ସ୍ୱା ଶୁଣେଇବେ ନାହିଁ
ଆଉ କ'ଣ ଶୁଣେଇବେ । ଭଗବାନ ଥରେ ହାବୁଡ଼େ ପଡ଼ନ୍ତେ କି ?"

ନାରଦଙ୍କୁ କଥା ବୁଲେଇ ଦେବାକୁ ବାଟ ମିଳିଲା । ସେ କହିଲେ,
"ହଇରେ ବାୟା ! ଭଗବାନଙ୍କୁ ଦେଖିଲେ କ'ଣ କରନ୍ତୁ, ଭଲା କହିଲୁ ।"

ଲୋକଟି କହିଲା, "କ'ଣ ମାରନ୍ତି ନା ଗାଳି ଦିଅନ୍ତି ? ଖାଲି ଟିକିଏ
ପଚାରନ୍ତି, ମୁଁ ଇମିତି କେତେକାଳ ଘାଣ୍ଟି ହେଉଥିବି ?"

ନାରଦ କହିଲେ, "ହଉ ଏଇ କଥା ତ ! ଆମେ ପଚାରି ଦେବା । କାଲି
ଏତିକବେଳେ ମୁଁ ତୋତେ ତାଙ୍କ ଜବାବ କହିବି ।"

ସେ କଏ ଲୋକଟିକୁ କହିବାକୁ ପଡ଼ିଲା । ଲୋକଟି ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ
କରି ବିଦାୟ ଦେଲାବେଳେ କହିଲା, "ମହାପୁରୁ ଏ ଅରକ୍ଷିତଆ କଥା
ପାସୋରିବ ନାହିଁ ଟି ?"

ନାରଦ ଭଗବାନଙ୍କର ପ୍ରାଇଭେଟ ସେକ୍ରେଟେରୀ, ପୁଣି ବେସରକାରୀ —ଯିମିତି ଆମ ମୁଖ୍ୟମନ୍ତ୍ରୀମାନେ ଜଣେ ଜଣେ ରଖିଥାନ୍ତି । ତାଙ୍କର ଆଉ ସମୟ ଅସମୟ ନାହିଁ । ତାଙ୍କ ବେଳରେ ସେ ଆସନ୍ତି, ମାଲିକଙ୍କ ଅନ୍ଦର ମହଲଯାଏଁ ପ୍ରବେଶ ଅଧିକାର ଥାଏ । ନାରଦ ସବୁଦିନ ଆସନ୍ତି, ଭଗବାନଙ୍କର ପହଡ଼ ଭାଙ୍ଗିବା ବେଳକୁ । ଆଜି ଡେରି ହୋଇଗଲା । ଭଗବାନ ସକାଳ ଜଳଖିଆରେ ବସୁଛନ୍ତି । ନାରଦ ମଧ୍ୟ ବସିଲେ । ଭଗବାନ ଚା' ଖାଇଲେ, ନାରଦ ମଧ୍ୟ ସେଥିରେ କୋଅଲରୁ ନର୍ମାଲ୍ ଟିକିଏ ବାହାର କରି ପକାଇ, ହାତଯୋଡ଼ି, ଜିଭ ଫୋଟକା କରି ଚୁମୁକେ ଚୁମୁକେ ପିଉଥାନ୍ତି । ଭଗବାନ ହସି ହସି ପଚାରିଲେ, "କିଓ, ନାରଦ ! ଆଜି ଏତେ ଡେରି ହେଲା କେମିତି ? ସେଥିପାଇଁ ଏ ଚା' ପିଆ ଦଣ୍ଡରେ ପଡ଼ିଲ ସିନା ?"

ନାରଦ କହିଲେ, "ମହାପ୍ରଭୁ ! ଏ ତ ମୋର ଭାଗ୍ୟ । ଖାଉନ୍ଦଙ୍କ ସଙ୍ଗେ ଏକା ଟେବୁଲରେ ଚା' ଖାଇବା ସୌଭାଗ୍ୟ ଯାହାକୁ ମିଳୁଛି, ତା'ର ଫୋଟକା କ'ଣ କରିବ ? ଆହୁରି ଗୋଟିଏ ଦଣ୍ଡରେ ପଡ଼ି ଯାଇଛି । ସେଥିଯୋଗୁଁ ଆପଣଙ୍କୁ ମଧ୍ୟ ଟିକିଏ ନଥି ଘାଣ୍ଟିବାକୁ ପଡ଼ିବ ।"

ଏହାପରେ ଉପକ୍ରମ କରି ସେ ଅରକ୍ଷିତଆ ସଙ୍ଗେ ତାଙ୍କର ଯାହା ଯାହା କଥାବାର୍ତ୍ତା ହୋଇଥିଲା ତାହାର ବଖାଣ କଲେ ଓ ସେ ଯେଉଁ ପ୍ରତିଶ୍ରୁତି ଦେଇ ଆସିଥିଲେ ସେ କଥା କହିଲେ ।

ଭଗବାନ ଟିକିଏ ଚିନ୍ତିତ ହେଲେ, କହିଲେ, "ଦେବର୍ଷି ! ବୃଥାଟାରେ ଏତିକି ମୁଣ୍ଡକୁ ଆଣିଲ ? ସ୍ୱେ କ'ଣ ଯେତେ ସହଜରେ ତୁଟିଯିବ ବୋଲି ବିଚାରିଛ ସେତେ ସହଜରେ ତୁଟିବ ? ମର୍ତ୍ତ୍ୟରେ ଦେଖୁନାହଁ, ଗୋଟିଏ ମକଦ୍ଦମା ରୁଜୁ ହେଲେ କେତେ ଦିନ କେଜେ ଘୁସୁରୁଛି, ସମସ୍ତଙ୍କୁ ଘୋସାରୁଛି ।"

ଦେବର୍ଷି କହିଲେ, "ଭଗବାନ, ମର୍ତ୍ତ୍ୟ ସଙ୍ଗେ କ'ଣ ଆମରି ତୁଳନା ହେବ ? ପଣ୍ଡିତ ଜବାହରଲାଲ୍ ଏବେ କହୁଛନ୍ତି, 'ମର୍ତ୍ତ୍ୟର ବିଚାରକମାନେ ଅଯୁସରେ ରହୁଛନ୍ତି, ଲୋକଙ୍କ ସୁଖଦୁଃଖ ଦେହକୁ ନେଉ ନାହାନ୍ତି, ସାମାନ୍ୟ ସାମାନ୍ୟ ଆଇନ ପଏଣ୍ଟ ଉପରେ ଲମ୍ବା ଛିଣ୍ଡାଉଛନ୍ତି' । କିନ୍ତୁ ଆମର ଯେ ବିଚାରକ ସେ ସମୁଦ୍ର ଭିତରେ ଶୁଅନ୍ତି, ପୁଣି ସାପ ଉପରେ ! ଆର୍ତ୍ତର ଡାକକୁ ସବୁବେଳେ କାନ ଡେରିଥାନ୍ତି । ସହସ୍ର ହାଣ୍ଡିକୁ ଏକ ଠେଙ୍ଗାରେ ସାବାଡ଼ କରି ଦିଅନ୍ତି !"

ଭଗବାନ ମୁରୁକି ହସି କହିଲେ, "ଜବାହରଲାଲ ଜଜଙ୍କ ନ ଚହି, ମେଦବୀଷ୍ଣ ଖାତରେ ଯାହା ମନକୁ ପାଉଛି ତାହା କହୁଛନ୍ତି । ତୁମେ ବି ସେଇ ପରି ଜାଣ, ଏଠାରେ ତୁମକୁ ଗୃହଖୁଣି ମାଫ୍ । ହେଇଛି, କାର୍ଯ୍ୟରେ ଦେଖ, ତମେ ଓ ମୁଁ କେତେ ହାନସ୍ତା ହେବା !"

ଭଗବାନ ଘଣ୍ଟି ଦେଲେ ; ସାଙ୍ଗେ ସାଙ୍ଗେ ଜୟ ବିଜୟ ଆସି ହାଜର ହେଲେ । ଭଗବାନ ହୁକୁମ କଲେ, "ଆରେ, ବଡ଼ବାବୁଙ୍କୁ ଡାକ ଆଣିଲ ।" ଜୟବିଜୟ କୁନ୍ଥ କୁନ୍ଥ ହୋଇ ଗଲେ । ଆଜିକାଲି କୌଣସି ଅମଲା ସାଢ଼େ ଦଶଟା ଆଗରୁ ଆସୁନାହାନ୍ତି, କି ସାଢ଼େ ଗୃହଟା ପରେ ରହୁ ନାହାନ୍ତି । ପୂର୍ବେ ସମସ୍ତେ ଭଗବାନଙ୍କୁ ଗୃହିଁ କରି ବସିଥାନ୍ତି, ଏବେ ସେମାନଙ୍କର ଅମଲା ସଙ୍ଘ ହେଲାଣି । ପରସ୍ପର ଭିତରେ ସାମାଜିକତା ବଢ଼ିଗଲାଣି । ତେଣୁ ଅସମୟରେ ଯାହାକୁ ଖୋଜିବ, ଏକ କଥା—'ବାବୁ ବୁଲି ଯାଇଛନ୍ତି' ।

ଯାହା ହେଉ ଜୟବିଜୟଙ୍କ ସୌଭାଗ୍ୟକୁ ବଡ଼ବାବୁ ଜଣକ ଘରୁ ସେଇ ବାଟେ ବସାକୁ ଫେରୁଥିଲେ । ନାରଦଙ୍କ ଯୋଗୁ ଭଗବାନ ଡକାଇ ପଠାଇଛନ୍ତି ଶୁଣି, ସେ ନାରଦଙ୍କୁ ବରବର ମୁହଁରେ ଗୃହିଁ ଭଗବାନଙ୍କ ସାମ୍ନାରେ ଆସି ହାଜର ହେଲେ । ଡକାଇବାର କାରଣ ଶୁଣି କହିଲେ, "ମଣିମା ! ସେ କେଉଁଠାର ଲୋକ ଜାଣିଲେ ସିନା ତା ନଥି ଖୋଜିବ ।"

ନାରଦ କହିଲେ, "ସକାଳୁ ସେ ବଡ଼ ଦେଉଳ ପେଜନଳାରୁ ଅନ୍ନ ଗୁଣେ, ଆଉ ଲୋକନାଥ ପଦାର ବଡ଼ ବରଗଛ ମୂଳେ ରାତିରେ ଶୁଏ ।"

ଭଗବାନଙ୍କ ଅଫିସର କାଗଜପତ୍ର ଶୃଙ୍ଖଳାକୁ ଧନ୍ୟ କହିବା, ନା ନାରଦଙ୍କ ଉକ୍ତସ୍ଥାନ ନିର୍ଣ୍ଣୟରେ କୁଶଳତାକୁ ଧନ୍ୟ କହିବା, ମିନଟ ଦଶଟା ଭିତରେ ବଡ଼ବାବୁ ଗୋଟିଏ ଫାଇଲ ଆଣି ଭଗବାନଙ୍କ ଟେବୁଲ ଉପରେ ଥୋଇଦେଲେ । ଭଗବାନ ଫାଇଲର ନାଲିଫିତା ଫିଟାଇ ମଲାଟର ଶିରୋନାମ ତଳକୁ ଗୃହିଁଦେଇ, ନାରଦଙ୍କୁ କହିଲେ, "ହେଇଛି, ତା'ର ପୂର୍ବଜନ୍ମରୁ ଆମ ପାଖେ ମାତ୍ର ଆଠ'ଣ୍ଡା ଜମା ଅଛି । ଆମ୍ବୁଷ ଗୁଡ଼ାଏ । ତା'କୁଇ ବାଣ୍ଟିବୁଣ୍ଟି ତା'ର ଦୈନିକ ପଡ଼ା ଖଞ୍ଜା ହୋଇଛି । ସେ ଆଉ ବଡ଼ ଆଶା କଲେ, ମୁଁ ଆଣିବି କୁଆଡ଼ୁ ?"

ନାରଦ ସାଙ୍ଗେ ସାଙ୍ଗେ ଯାଇ ଅରକ୍ଷିତଆକୁ ଏ ଖବର ଦେଇଦେବେ ବୋଲି ଖୁସିରେ ବାହାରିଲେ । ଭଗବାନଙ୍କ ନଥି କେଡ଼େ ବେଗେ ଆସେ, କେଡ଼େ ସୁନ୍ଦର ହିସାବ, ଭାବି ଭାବି ଭଗବାନଙ୍କର ଗୁଣଗାନ କରୁ କରୁ ବୀଣା ବଜାଇ ବଜାଇ ସେ ଆଗ ଗଲେ ସେଇ ପେଜ ନଳା ପାଖକୁ । ଅରକ୍ଷିତଆର ଭାତ ଧରି ସରି ନଥାଏ ।

ମୁନିଙ୍କ ଉପରେ ତା'ର ନଜର ପଡ଼ିବାରୁ ସେ ଧାଇଁଆସି ମୁଣ୍ଡିଆ ମାଇଲା । ମୁନି ସରଳ ମମତାରେ ସବୁ କଥା ଗାଇଗଲେ । ଫେରିବାକୁ ତରତର ହୋଇ ସେ ଖାଲି ଅପେକ୍ଷା କରିଥାନ୍ତି, ଅରକ୍ଷିତଆ ମୁଣ୍ଡିଆଟିଏ ମାଇଲେ ସେ ତାଙ୍କ ରାସ୍ତା ଧରିବେ ।

ସେତେବେଳକୁ ଅରକ୍ଷିତର ଆଖି ଦି'ଟା ଲାଲେଲାଲ । ସେ ମାର୍ ନମାର୍ ହୋଇ ପାଟି କଲା, "ମହାପୁରୁ ! ଏଇ ଭଗବାନଙ୍କୁ ଆପଣ ଏତେ ଟେକୁଥାନ୍ତି ପରି ? ଆଚ୍ଛା, ସେ ଯେଉଁ ଆଠ'ଣ୍ଡାଟି, ତାହା ମୋର ନା ତାଙ୍କ ବାପ ଗଣ୍ଡି ? ମୋ ସମ୍ପତ୍ତି ମାଡ଼ିବସି ସେ ଇମିତ ଶହେ ବର୍ଷଯାଏଁ ପଡ଼ିଦେବେ, କୋଉ ନ୍ୟାୟରେ ? ଆମ ପୁଞ୍ଜାକ ଆମକୁ ଦିଅନ୍ତୁ । ପେଟକୁ ପୁଞ୍ଜାଏ ଭଲ କରି ବଢ଼େଇ ଖାଇଲେ ବରଂ ଭଲ, ଇମିତ ପ୍ରତିଦିନ ପେଜ ନଳାରେ ଛେଲୁଆ ପଟେଇବାଠାରୁ । ଆମର ଏସ୍ତେ ଲୋଡ଼ା ନାହିଁ ।" ଏହା କହି ଅରକ୍ଷିତଆ ଛେଲୁଆ ଖଣ୍ଡିକ ଏମିତି ତଳେ କୁଟି ଦେଲା ଯେ ସେ ଏକାବେଳକେ ଗୁଣ୍ଡୁ ଗୁଣ୍ଡା ହୋଇଗଲା । ଖପରି ଖଣ୍ଡେ ଆସି ନାରଦଙ୍କ ଗୋଡ଼ପାଖେ ବାଜେ ନ ବାଜେ ।

ନାରଦଙ୍କ ବୁଦ୍ଧି ବଣା । ସେ ଅତି ନିରୀହଭାବେ ପଚାରିଲେ, "ହଉ, ଏବେ କ'ଣ କହୁଛୁ ?"

ଛେଲୁଆ ଖଣ୍ଡି ଯିବା ପରେ ତ ଅରକ୍ଷିତର ଗୃରି ଦଉଡ଼ି କଟିଗଲା । ସେ ଭାରି ଚଢ଼ା ଗଳାରେ କହିଲା, "ମୁଁ କ'ଣ କହିବ, ମହାପୁରୁ ? ଆପଣ ନିଜେ ବିଚାର କରୁ ନାହାନ୍ତି ? ପାଞ୍ଚଜଣଙ୍କୁ ପଚାରିବେ ଯଦି ପଚାରନ୍ତୁ । ଏ ତ ସୃଷ୍ଟିରେ ନଥିବା କଥା ! ମୋ ସମ୍ପତ୍ତି ସେ ରଖିବେ କାହିଁକି, ଇମିତ ଅନୁଗ୍ରହ କଲାପରି ପଢ଼ି ଦେବେ କାହିଁକି ? ମୋର ଆଠ'ଣ୍ଡା ହେଉ, ବା ସ୍ତା ଭିତରେ କିଛି କମିଥାଉ, କଡ଼ା ଝାନ୍ତିରେ ହିସାବ କରି ମତେ ଦେଇ ଦିଅନ୍ତୁ; ମୁଁ ସେଥିରେ ଦିନେ ଚଳେ ବା ଓଳିଏ ଚଳେ !"

ନାରଦ ଚୁପ୍ । ଅରକ୍ଷିତ ଟିକିଏ ଥଣ୍ଡା ହେବା ପରେ ସେ ଡର ଡର କହିଲେ, "ହଇରେ ବାଇଆ ! ଭଗବାନଙ୍କଠାରେ ଇମିତ ଦ୍ରୋହୀ ହେଉଛୁ କାହିଁକି ? ତାଙ୍କ ମନ ଧରି ନ ଚାଲିଲେ କ'ଣ ସଂସାରରେ ଚଳି ହେବ ?"

ବଗୃରର ରାଗ ପୁଣି ପଞ୍ଚମକୁ ଚଢ଼ିଲା । ସେ ପୁଣି ପାଟିକଲା, "ମହାପ୍ରଭୁ ! ଯାହାଙ୍କର ବଉ ଅଛି, ପିଲାକୁଟୁମ୍ବ ଅଛନ୍ତି, ଭଗବାନଙ୍କଠାରୁ ଯେ ଅକାଳେ ସକାଳେ ପୁଞ୍ଜେ ପାଉଛନ୍ତି, ସେ ସିନା ମନ ଧରି ବସିବେ, ମୋତେ କ'ଣ ସେ ତାଙ୍କ ବାପ ଗଣ୍ଠି ଦେଉଛନ୍ତି କି ? ଓଲଟି ଆମ ଧନ ସେ ମାଡ଼ି ବସିଛନ୍ତି । ଆମେ ମନ ଧରିବୁ କାହିଁକି ? ଆପଣ କହୁ ନାହାନ୍ତି ?"

ନାରଦ ଆଉ କହିବେ କ'ଣ ? ଆଶ୍ରମକୁ ବା ଫେରିବେ କିମିତି ? ସେଇଠାରୁ ସେ ପୁଣି ବାହୁଡ଼ିଲେ ବୈକୁଣ୍ଠକୁ । ସେତେବେଳକୁ ଭଗବାନ୍ ଖାଇସାରି ଗଡ଼ତପଡ଼ତ ହେଉଛନ୍ତି । ତାଙ୍କୁ ଉଠାଇବେ କିପରି ? ନାରଦ ଆସିବାର ଜାଣି ପାରି ଭଗବାନ୍ ତାଙ୍କୁ ପାଖକୁ ଡାକି କହିଲେ, "କିଓ, ସେଇ ଅରକ୍ଷିତଆ ଯୋଗୁଁ ଫେରିଲ କି ? ସେ ସବୁତକ ଏକା ଦିନକେ ପାଇବାକୁ କହୁଚ କି ?"

ନାରଦ ଭକ୍ତିରେ ଗଦ୍‌ଗଦ ହୋଇ କହିଲେ, "ମହାପ୍ରଭୁ ଆପଣ ତ ଅନ୍ତର୍ଯାମୀ !"

ଭଗବାନ କହିଲେ, "ଏତିକରେ ଯଦି ଅନ୍ତର୍ଯାମୀ ହୁଅନ୍ତି, ତେବେ ତ ସମସ୍ତେ ଅନ୍ତର୍ଯାମୀ । ତୁମେ କ'ଣ କଳି ପାରି ନ ଥିଲ, ସେ ତା ପୁଞ୍ଜି ଟା ନିଜ ହାତରେ ପାଇବାକୁ ଜିଦ୍ କରିବ ବୋଲି । ହଉ, ଯାଅ ତା'କୁ କହିବ, ସେ ତା ଆଠ'ଣ୍ଡାଟି କାଲି ବଡ଼ି ସକାଳୁ ପାଇଯିବ । ଏଥର ତା' କଥା ସେ ବୁଝୁ ।"

ନାରଦ ବିଦାୟ ନେଲା ବେଳେ ଭଗବାନ୍ ପୁଣି ଚେତାଇ ଦେଲେ, "ବୁଝିଲ, ନାରଦ ! ଏପରି ଭୁଲ ଆଉ କରିବ ନାହିଁ । ଲୋକେ ଯଦି ତାଙ୍କର କର୍ମଫଳ ଜାଣିଯିବେ, ତେବେ ଏକାଦିନକେ ସେ ସବୁ ହାତ କରିବାକୁ ଚାହିଁବେ ; ଆମ କମ୍ପାନୀରେ ଏକା ଦିନକେ ଲାଲବତୀ ଜଳିଯିବ ।"

ତହିଁଆର ଦିନ ସକାଳୁ ତା'ର ସମସ୍ତ ପାଉଣା ଚୁକ୍ତି ହୋଇଯିବ ଏଇ ଆଶାରେ ଅରକ୍ଷିତର କର୍ମପ୍ରେରଣା ଲୋପ ହୋଇଗଲା । ଆଗରୁ ତ ନିଜ ଜୀବନ ନିର୍ବାହ ଶସ୍ତ ଖଣ୍ଡ ଯାଇଛି । ସେ ଯାଇ ନିଜ ଗଛ ମୂଳରେ କଡ଼ଲାଗି

ହୋଇଗଲା । ଆଉ ପେଜ ଗ୍ରୁଣିବା ଦରକାର ନାହିଁ, କି କାହାକୁ ହାତ ପତାଇବା ଦରକାର ନାହିଁ ।

ରାତି ହେଲା । ରାତି ସାରା ସେ ସ୍ୱପ୍ନ ଦେଖୁଥାଏ । ଭଗବାନଙ୍କ ଆଠ'ଣ୍ଡା କେତେ ? ସେ ବିଷୟରେ ନାନାପ୍ରକାର କଳ୍ପନା ତା ଆଗରେ ରୂପ ନେଇ ସିନେମା ଚିତ୍ର ପରି ଚାଲି ଯାଉଥାଏ । କେତେବେଳେ ଦିଶେ, ଆଠ'ଣ୍ଡା ବୋଇଲେ 'ଗୋଟାଏ ନାଇହାଣ୍ଡି ମାହାରଦ, ଡାଲି ଭୁଜଣା ହୋଇ ଚାରି କୁଡ଼ୁଆ । କେତେବେଳେ ଜଣା ଯାଉଥାଏ, କୋଠାବାଡ଼ି, ପୋଇଲି ପରିବାର, ପଲଙ୍କ ସୁପାତି, ହାତି ଘୋଡ଼ା । କେତେବେଳେ ଜଣା ଯାଉଥାଏ, ଆମର ଦେଶୀ ହିସାବରେ ଆଠଗଣ୍ଡା ବୋଇଲେ ଦୁଇ ନୂଆ ପଇସାରୁ ବେଶୀ ; କିନ୍ତୁ ଅଢ଼େଇରୁ କମ ହୋଇଥିବାରୁ ଆଜକାଲି ବୁଝାମଣାରେ ସେଇ ଦୁଇଟି ମାତ୍ର ମିଳିବ । ଏମିତି ଗୁଡ଼ାଏ ସ୍ୱପ୍ନ ଦେଖି ସ୍ୱପ୍ନରୁ ଉଠି ବିଚାରି, ପୁଣି ସ୍ୱପ୍ନ ଦେଖି, କୋଇଲି ବୋବେଇବା ବେଳ ହେଲା ବେଳକୁ ତା'କୁ ଟିକିଏ ନିଦ ଆସି ଯାଇଛି, ତା' ଆଗରେ ଜଣେ କିଏ ଠିଆ ହେଲାପରି ଦିଶିଲା । ସେ ତଡ଼ବଡ଼ରେ ଉଠି ବସି କହିଲା, "କିଏ ସେ ?"

ସୌର ସାଉକାରେ ସେ ଅଞ୍ଚଳର ଜଣେ ବଡ଼ ବ୍ୟବସାୟୀ । ଜାହାଜରେ ମାଲ ପତ୍ର ନେ ଆଣ କାରବାର କରୁଥିଲେ । ପ୍ରାୟ ୧୬।୧୭ ବର୍ଷ ହେଲା ଗଲେ ସେ ଆଉ ଫେରିଲେ ନାହିଁ । 'ସେ ଆଉ ଫେରିବେ ନାହିଁ' ଏହି ଧାରଣା ବର୍ଷେ ଖଣ୍ଡେ ପରେ ଜଣେ ଦୁଇ ଜଣଙ୍କ ମନରେ ଉଙ୍କିମାରିଲା । ଏବେ ବଢ଼ି ବଢ଼ି ତାଙ୍କ ସ୍ତ୍ରୀଙ୍କ ବ୍ୟତୀତ ଆଉ ସମସ୍ତଙ୍କଠି ମାଡ଼ି ଯାଇଥାଏ । ସ୍ତ୍ରୀ କିନ୍ତୁ ବିଶ୍ୱାସ କରୁଥାନ୍ତି ଯେ ତାଙ୍କର ସ୍ୱାମୀ ନିଶ୍ଚୟ ଫେରିବେ—ଆଜି ନେତାଜୀ ସୁଭାଷ ବୋଷ ନିଶ୍ଚୟ ଫେରିବେ ବୋଲି ଯେପରି କେତେ ଜଣ ବିଶ୍ୱାସ କରୁଛନ୍ତି । ଏପରି ବିଶ୍ୱାସ କଲେ, ଲୋକେ ମୂର୍ଖ ବୋଲି କହିବେ, ପାଗଳା ବୋଲି କହିବେ—ପ୍ରିୟ ଲୋକେ ସାହୁକାରଆଣୀଙ୍କୁ ଏଇପରି ବୁଝାନ୍ତି । ତାଙ୍କ ମନକୁ କିନ୍ତୁ ଏକଥା ପାଏ ନାହିଁ । ସେ କହନ୍ତି, "ମୋ ସ୍ୱାମୀ ଫେରିବେ ବୋଲି ମୁଁ ବିଚାରୁଛି ; ବାୟା ବୋଲି କିଏ କାହିଁକି କହିବ ? ମୋର ତ ଅନ୍ୟ ଗତି ନାହିଁ; ସେ ଆସିବେ ବୋଲି ବିଚାରିଲେ ଦୋଷ କ'ଣ ହେଲା ?" ସେ ଏପରି ଖାଲି ଯେ ବିଚାରନ୍ତି ତା ନୁହେଁ, ଅହିଅନ୍ତିମାଇପିଙ୍କ ପରି ଅଳଙ୍କାର ପତ୍ର ନାଇଥାନ୍ତି । ଶୁଣିଲେ କହନ୍ତି, "କେଜାଣି

ସେ କେତେବେଳେ ଆସି ପହଞ୍ଚିଯିବେ, ମୁଁ ତ ପୁଣି ସେତେବେଳକୁ ଚାହିଁ ଚାଲିବ ।"

ସ୍ୱାଙ୍କର ବାଡ଼ ଦୁଆରେ ଦଣ୍ଡେ ବସି କଥାବାର୍ତ୍ତା ହେବାକୁ ଅରକ୍ଷିତଆକୁ ଭାରି ସୁଖ ଲାଗେ । ଆଗେ ତାଙ୍କର ଦୁଆରୁ ମୁଠାକ ମିଳୁଥିଲା । ଏବେ ଦୁଇ ଚାରି ବର୍ଷ ହେଲା ସେ ବି ହେଲେଣି ଅରକ୍ଷିତ । ଅରକ୍ଷିତଆର ଥିଲେ ସେ ତାଙ୍କୁ ଦିଅନ୍ତା । ତାଙ୍କୁ ମାଗିବ କିମିତି, ଯାଚିଲେ ବା ନେବ କିମିତି ? ତଥାପି ତୁଣ୍ଡ ହେମନ୍ତ ଟିକିଏ ଦେବାପାଇଁ ସେ ସକାଳୁ ଆପଣାପୁଞ୍ଜାକ କରି ସାରିଲେ ସାହୁକାର ଘରକୁ ଚାଲିଯାଏ । ସାହୁକାର ଥିବାବେଳେ ତାଙ୍କ ଘରୁ ପୁଞ୍ଜିଏ ପାଇବାକୁ ଯାଉଥିଲା । ଏବେ ସେ ଅଡୁଆ ବାକି ରହି ନ ଥାଏ ।

କାଲି ତ ସାହୁକାରଆଣୀଙ୍କ ସଙ୍ଗେ ଦୁଃଖ ସୁଖ ହେଲାବେଳେ ସେହି ମହାଜନଙ୍କ ମୁହଁଟା ତା' ଆଗରେ ଦିଶି ଯାଇଥିଲା । ସେଇ ରୂପଟା ହଠାତ୍ ସ୍ୱପ୍ନରେ ଆସି ଦିଶିଯିବାରୁ ଅରକ୍ଷିତଆ 'କିଏ ସେ ?' ବୋଲି ପାଟି କରି ଉଠିଲା ।

ସେ କହିଲେ, "କିରେ ଅରକ୍ଷିତଆ, ତୁ' ଯେଉଁଠି ସେଇଠି ଶୋଉଥିବୁ ପରା ବୋଲି ବିଚାରି ଏଇବାଟେ ଗାଁକୁ ଯାଉଛୁ ।"

'ଏଁ, ଏଁ' ବୋଲି କହି ଅରକ୍ଷିତ ଉଠି ଠିଆ ହୋଇ ପଡ଼ିଲା । ହାତ ଯୋଡ଼ି କରି କହିଲା, "ସାହୁକାରେ ? ଆହେ ମୁଁ ସ୍ୱପ୍ନ ବୋଲି ବିଚାରୁଛୁ ? ହଉ ହଉ, ସା'ନ୍ତ ବେଗେ ଘରକୁ ଯାଅ । ସାଆନ୍ତାଣୀ ଚାହିଁଛନ୍ତି ପରା ! ......ହଁ ସା'ଆନ୍ତେ ! ମିଛ ନୁହଁ ! କାଲି କହୁଥିଲେ, 'ଅରକ୍ଷିତ ! ସମସ୍ତେ କହୁଛନ୍ତି ଅସମ୍ଭବ । ଯିବା ତ ଅସମ୍ଭବ ହେଲା ନାହିଁ, ଆସିବା ଅସମ୍ଭବ ହେବ କାହିଁକି କହିଲ ?' ତାଙ୍କୁ ଦେଖି ପରା ମୁଁ କାବା ହେଉଚି, ସାଆନ୍ତେ ! ପୁଅଙ୍କର ମଧ୍ୟ ବିଚାର ତାଙ୍କରି ପରି । ସାଙ୍ଗ ପିଲାଟେ ପଚାରିଦେଲା ଯେ, ସାନ ସାଆନ୍ତେ ଧାଇଁ ଯାଉ ଯାଉ କହିଲେ, 'କାଲି ସକାଳେ' । ଯାଅ ସାଆନ୍ତ, ଯାଅ, ସେ ତ ଉଠି ନ ଥିବେ ପହଞ୍ଚିଯିବ ।"

ସାହୁକାରେ ତରତର ହେବାର ଲକ୍ଷଣ ନ ଦେଖାଇ କହିଲେ, "ଆରେ ! ତୋ'ଠୁ କଥା ଶୁଣିଲେ ତ ଘରେ ଯାଇ ପହଞ୍ଚି ସାରିଲା ପରି ଲାଗୁଛି । ହଁ, ସାଆନ୍ତାଣୀ ଭଲ ହୋଇଛନ୍ତି ନା ଅଧିଆ ଅଛନ୍ତି ବି ?"

ଅରକ୍ଷିତ ହସି ହସି ବାଟେଇ ଦେଉ ଦେଉ ହସି ହସି କହିଲା, "ସେଇଥିପାଇଁ ପରା କହୁଛୁ ବେଗେ ଯିବାକୁ ।"

ସାହୁକାରେ ଆଗକୁ ଗୋଡ଼ କାଢ଼ୁ କାଢ଼ୁ ଅଣ୍ଟାରୁ କ'ଣଟେ କାଢ଼ି ଅରକ୍ଷିତ ଆଡ଼କୁ ବଢ଼ାଉ ବଢ଼ାଉ କହିଲେ, "ଆରେ ! ନେ ନେ ! ଶଳା ଜନ୍ମ ଅରକ୍ଷିତ, ମାସେ ଖଣ୍ଡେ ଅଇସ କର ।"

ଅରକ୍ଷିତକୁ ଜାଲୁଜାଲୁଆରେ ବି ଦିଶିଲା, ହଳଦିଆ ରଙ୍ଗ ! ସାଙ୍ଗେ ସାଙ୍ଗେ ମନେ ପଡ଼ିଗଲା, ନାରଦଙ୍କ କଥା । ଭଗବାନଙ୍କ ଆଠ'ଣ୍ଡା ! ସ୍ୱାକୁଇ ବାଣ୍ଟିକୁଣ୍ଟି କରି ଦେଉଥିଲେ ! ସୁନାର ମୂଲ୍ୟ ବଢ଼ିଗଲା ! ଶହେ ବର୍ଷର ଖୁରାକ !

ଅରକ୍ଷିତ ଗାଧୋଇ ପଡ଼ି, ସୁନା ମୋହରଟିକୁ ଭଲ କରି ବାଲି ରଗଡ଼ି ଘଷାଘଷି କରି ଧୋଇ ଦେଲା, ଆଞ୍ଜୁଳା କରି ବରଗଛର ସିନ୍ଦୂରମୁଣ୍ଡିଙ୍କ ଆଗରେ ତା'କୁ ତଳେ ଥୋଇ କହିଲା, "ମା ! କାଲି ମୋ କଥାରେ ଚଢ଼ିଯାଇ ଠାକୁରେ ସବୁତକ ପଠେଇ ଦେଇଛନ୍ତି । ତୋ'ରି ପାଖରେ ରହୁ । ଆଜି ତା'କୁ ତୋ'ରି ମିଶ୍ରୁ ଖର୍ଚ୍ଚ କରି ଦେଉଚି ।"

ତା' ଧମକରେ ମା' କେତେ ଡରିଲେ କେଜାଣି, ଅରକ୍ଷିତିଆ ଯାଇ ଦେଉଳ ଦୁଆରେ ଯାହାକୁ ଦେଖିଲା, କହିଲା, "ଆଜି ଟିକିଏ ଯିବେ ସିନ୍ଦୂର-ମୁଣ୍ଡିଙ୍କ ଠିକି ।" 'ମହାପୁରୁ ! ଆପଣ ପାଣି ମୁନ୍ଦେ ଛୁଞ୍ଚି ଦେବେ' ; 'ମହାଜନେ ତମେ ଟିକିଏ ପହଞ୍ଚେଇ ଦେବ; 'ମୁଁ ଆଉ ତା'କୁ କାହିଁକି ଛୁଇଁବି'; 'ହଁ ଭାଇ, ଯାହାକୁ ଦେଖିବୁ କହିଦେବୁ'; 'ସାଆନ୍ତ, କେତେ ମୁଁ କହିବି କମିତି, ଭଗବାନ ପରା ତା'କୁ ଶହେ ବର୍ଷକୁ ସାଇତି ଥିଲେ; ଆପଣ ଯେତେ କହିବେ ସେତେ ଜଣ ଆଣିବେ ।'

ଏଇପରି ପ୍ରଚୁର ସକାଳ ଲୋକ ମିଳୁ ନାହାନ୍ତି ବୋଲି ସିନା ଠେଲି-ଭିଜନ ଯାଏ ଗଲାଣି ! ଆନ ମୁଣ୍ଡରେ ଯାଇ ମଣିଷ ଡେର ପହଞ୍ଚିଲେ । ବ୍ରାହ୍ମଣ ୨୭ ଜଣ, ଆଷ୍ଟପ୍ରହରୀ କଥାଟାଏ ଦେଖିବେ, ଏଥିପାଇଁ ପିଲା ପିଚିକା ବି ଆଣିଆନ୍ତି । ତାଙ୍କ ଅରକ୍ଷିତିଆ ଠାକୁରାଣୀ ମାଜଣା କରୁଛି ବୋଲି ସହରର ସବୁତକ କୁଢ଼ୀ କାଙ୍ଗାଳ ଯାଇ ସେଇଠାରେ ହାଜର । ଗୁଡ଼ାଏ ବି ଜନପ ଆସିଆଏ । ଏ ମୋହରଟା କେତେକୁ ଚଳୁଛି ଜଣା ନ ପଡ଼ିବାରୁ ସୁନା କଷରେ ମହାଜନ ନେଇଲି ଯେ ତୃଷ୍ଣା କରି ଗୁରଣ ଟଙ୍କା ବଢ଼ାଇ ଦେଲା । ଅରକ୍ଷିତ କହିଲା,

'ମାହାଜନେ, ଅଧିକର ଲୁଗା ଦିଅ, ଅଧେ ଟଙ୍କା ଦିଅ ।' ମହାଜନ ସକଳଙ୍କ ଶୁଣି ଜିଭ କାମୁଡ଼ି ପକାଇଲେ । ତା'ଙ୍କୁ ଜଣା ପଡ଼ିଲା, ସତେ ଯିମିତି ସିନ୍ଦୂରମୁଣ୍ଡି ଜିଭ ବାହାର କଲାଣି । ଶସ୍ତା କାଳ ତ ! ଦି'ଗାଣ୍ଠି ଲୁଗା ଯୋଡ଼ାଏ ମୋଟିଆ ନେଇ ହାଜର ହୋଇଥାନ୍ତି । ଟଙ୍କାରେ ପୁଣି ଦି'ଶହକୁ ତିନି ଶହ । ଗୁଡ଼ିଆ ମହାଜନମାନେ ବି ଦୟାକଲେ । ଯେତିକି ସରଞ୍ଜାମ ଜୁଟିଥିଲା, ସେଥିରୁ ସଂଳେ ପୁଷ୍ଟେ ହଜାରେ ଲୋକ ପାଇଗଲେ । ଶେଷକୁ ବାହ୍ମଣ ସାଆନ୍ତେ ଜଣେ ଜଣେ ହୋଇ ବିଦାକି ନ ହୋଇ ନିଜ ନିଜ ଗାଁ କୋଠମାନଙ୍କୁ ଅଣାଏ ଲେଖାଏଁ ଟଙ୍କେ ନ'ଅଣା ( ଅର୍ଥାତ୍ ଏକଟଙ୍କା ୫୪ ନୂଆ ପଇସା—ସମାନ ଛିଣ୍ଡିଗଲା ! )· ନେଇ ସନ୍ତୋଷରେ ଗଲେ ।

ଅରକ୍ଷିତ ଚଉତରା ଓଳେଇ ଦେଇ ଧୂଆଧୋଇ ହୋଇ ସେଇ ଗଛର ସନ୍ଧିରୁ କୁଡ଼ୁଆଟି ବାହାର କରି ତା ଭିତରୁ ମୁଠାଏ ପାଟିକି ପକାଇ ପୁଣି ଯାଇ ପାଣି ପିଇ ଆସିଲା । ସେଥିରେ ବଳିଥିବା ପ୍ରସାଦକୁ ଅଟକଳ କରି କହିଲା, "ସ୍ୱେ ଯେଉଁ ଦିନ ସରିବ, ସେଇ ଦିନ ଶେଷ । ସ୍ୱେ କମିତି ! ନୋଇଲେ ନାହିଁ କ'ଣ ନା ପେଜକଳାକୁ ଛେଲୁଆ ଦେଖାଇ ଥା !" ମହାସନ୍ତୋଷରେ ଅରକ୍ଷିତିଆ ଘୁଂଘୁଡ଼ି ମାଇଲା । ଭଗବାନଙ୍କ ଯୁ କଷା ହୋଇଗଲା ସହଜରେ । ଆଠ ଗଣ୍ଡା ବୋଇଲେ ଛ'ଅ ଶହ ! ତିନି ଶହକୁ ଦୁଇଗାଣ୍ଠି ଲୁଗା, ନଗଦ ତିନି ଶହ ।

ଦିନେ ଦି'ଦିନ ଯାଇଛି କି ନାହିଁ ; ଯଜମାନ ଘଇତାମାଇପେ ଦିହେଁ ନୋଟ୍ ବିଡ଼ାଟେ ବଢ଼ାଇ ଦେଇ କହିଲେ, "ଆରେ ଅରକ୍ଷିତ ! ସେଥର ଯିମିତି କରେଇଥିଲୁ ସିମିତି ଗୋଟାଏ ମାଜଣା କରେଇ ଦେବୁ ।" ବରଗଛ କୋରଡ଼ର କୁଡ଼ୁଆଟି ଇମିତି ହେଉ ହେଉ ସବୁବେଳେ ପୂର୍ଣ୍ଣ ରହିଲା । ଅରକ୍ଷିତ ଆପଣା ପାଇଁ ପଦ ପକାଏ ନାହିଁ । କହେ, "ସାଆନ୍ତ ! ଏତିକି ତ ସବୁ । ଏତିକି ସରିଲେ ସରିଲା । ଆପଣଙ୍କ ପ୍ରସାଦ ସେବା କରୁ କରୁ ତ ଉମର ବିତିଲା । ସେଇ ପ୍ରସାଦ ଟିକିଏ ମୁଁ ଶୋଇଲା ବେଳକୁ ପାଏ, ଶୁଏ ।"

ପ୍ରତିଦିନ ଗୋଟାଏ ଲେଖାଏଁ ମାଜଣା ଦିନେ ଦିନେ ଦି'ଟା । ଲେଖନକାର ଜଣେ ରହିଲେ, ପୂଜକ ନମୁଦ ହେଲେ, ମୋଟିଆ ହେବେଇତ ହୋଇ ଜଣେ ଜଣେ ନମୁଦ ହେଲାପରି ହୋଇଗଲେ । ଅରକ୍ଷିତିଆକୁ

ରହସ୍ୟରେ ଡାକୁ ଡାକୁ ସମସ୍ତେ ସବୁବେଳେ ଡାକଲେ, ଅରକ୍ଷିତ ବାବା ! ନାରଦଙ୍କ ସାଙ୍ଗେ ଦେଖାହେବା ଦିନଠାରୁ ସବୁକଥା ଗୋଟି ଗୋଟି କରି ମନେ ପକାଇ ଅରକ୍ଷିତ ଭଗବାନଙ୍କୁ ଜଣାଏ, "ମହାପୁରୁ ! ଏକାଦିନକେ ପରି ସବୁ ଦେଇ ପକେଇବି ବୋଲି କହିଥିଲ ! ଆଜିଯାଏଁ ସରିଲା ନାହିଁ ? ଏଇ କିସ୍ତିରେ ସବୁ ଭଲ !"

ସରୁଛି କେତେକେ ? ବର୍ଷ ପାଞ୍ଚଟାରେ ଅରକ୍ଷିତ ବାବାଙ୍କପାଇଁ ଗୋଟାଏ ପୀଠ ହୋଇଗଲା—ପୀଠ କାହିଁକି, ସିଂହାସନ । ଦିନ ତମାମ ଚୁଲିଲା ଖଇରାତ । ଦଶବର୍ଷ ସରିକି ଅରକ୍ଷିତ ବାବାଙ୍କ ମଠର ନାମ ଚାରିଆଡ଼େ ବିଖ୍ୟାତ ହୋଇଗଲା ।

ଦିନେ ନାରଦଙ୍କର ହଠାତ୍ ମନେ ପଡ଼ିଲା ଅରକ୍ଷିତଆ କଥା । ଲୋକଟା ପଛରେ ଧାଇଁ ଧାଇଁ ଆସି କହିଥିଲା, "ମହାପୁରୁ ପାସୋରିବ ନାହିଁ" ବୋଲି । ନାରଦଙ୍କ ମନ ଡେଙ୍ଗେଇଲା ସିନ୍ଦୂରମୁଣ୍ଡିଙ୍କ ଆଡ଼କୁ । ତା'ପରେ ମନେ ପଡ଼ିଲା, ଭଗବାନଙ୍କ ଆଠ'ଣ୍ଡାଟା କେତେ ଜାଣିଗଲେ ତାଙ୍କ ସମ୍ଭାର କଳି ହୋଇଯିବ । ହିସାବ କିତାପର ପ୍ରୟୋଜନ ହେବ ନାହିଁ । ସେ ଝଡ଼େଦମ୍ ବାହାରିଲେ । ପେଜନଳା ପାଖରେ ଗୁଡ଼ାଏ ଅନଷା କଲେ, ବରଗଛଟା ତ ଏକାବେଳକେ ଠଉରେଇ ପାରିଲେ ନାହିଁ ! ଦି' ଚାରିଜଣଙ୍କୁ ପଚାରିଲେ, "ସେ ଯେଉଁ ଲୋକଟି ପେଜନଳାରୁ ଭାତ ଗୁଣ୍ଡି ଖାଉଥିଲା, ଲୋକନାଥ ପଦା ବଡ଼ ବରଗଛ ମୂଳେ ଶୋଉଥିଲା, ସେ କେଉଁଠି ଅଛି ? ଅଛି ନା ମଲାଣି ?" କିଏ ହସିଲା, କିଏ ମୁଣ୍ଡରେ ଆଙ୍ଗୁଠି ବୁଲେଇ କହିଲା, 'ଏମିତି ଲୋକ ତ ଆମେ ଦେଖିନାହୁଁ' ; ଜଣେ ସାନ୍ଦୀ ଆଉ ଜଣକୁ କହିଲା, 'ଆହା ବିଚାରି, ଡୋର କୌପୀନ ସିନା ଧରିଛି, ସଙ୍ଗ ଛାଡ଼ି ପାରିନାହିଁ । କିଏ ଗୋଟିଏ ଆପଣାର ଲୋକ ଏଇଠେଇ ଭିକ ମାଗୁଥିଲା, ତାକୁ କେଉଁ ଝୁରୁଛି ଦେଖ' ; ଆଉ କିଏ କହିଲା, "ବାଇଆଟାଏ ମ ! ଏଠେଇ ପୁଣି କେଉଁ ଅରକ୍ଷିତଟା ପେଜନଳାରୁ ଭାତ ଗୁଣ୍ଡୁଥିଲା ?"

ନାରଦ ତଲାସ କରିବା ବୃଥା ବୋଲି ବିଚାରିଲାବେଳକୁ, ଜଣେ ବୁଢ଼ାଲୋକ କହିଲା, "ମହାପୁରୁ ସେ ପେଜନଳା ଅରକ୍ଷିତକୁ ଆଉ ଦେଖିଲେ ବି ଚିହ୍ନିପାରିବ ନାହିଁ । ସେ ପରା ଏଇଲେ ଅରକ୍ଷିତ-ବାବା ବାବାଜି

ହେଲେଣି । ସେଇ ଲୋକନାଥ ପଦା କଣରେ ତାଙ୍କର ମଠ ; ଯାଅ ଖୋଜିବ, ଦେଖାହେଲେ ହୋଇଯାଇ ପାରେ ।"

ନାରଦ ଯାଇ ପହଞ୍ଚିଲ ବେଳକୁ ଭାରି ଭିଡ଼ । ଲୋକ ପାଞ୍ଚଶହ ହେବେ, ସଦର ଦରଜାବାଟେ ଭିତରକୁ ପଶିବାକୁ ସମସ୍ତେ ଏକାବେଳକେ ମୁସୁଣ୍ଡେଇ-ଥାନ୍ତି । ନାରଦ ତାଙ୍କର ଭିତରେ ପଶି ଗୁଡ଼ାଏ ଧକାଂଧକ୍କା ଖାଇଲେ । ଭଗବାନଙ୍କ ଚରଣାମୃତ ପାନ କରି କରି ତ ତାଙ୍କ ଦେହରେ କଣ୍ଟା ରହିଥାଏ । ସେ ଏ ଧସ୍ତାଧସ୍ତିକୁ ପାରନ୍ତେ କେତେକେ ? ସେ ତଳେ ପଡ଼ି ଚକଟି ହୋଇଗଲେ । ସଦର ଦରଜାର ନେପାଳି ଦରୁଆନର ନଜର ନ ପଡ଼ିଥିଲେ ସେ ସେଇଠାରେ ମୋକ୍ଷ ପାଇ ଯାଇଥାନ୍ତେ । ଦରୁଆନ ବିଚରା ତାଙ୍କୁ ଟେକିନେଇ ମଠ ଭିତରେ ଶୁଆଇଲା । ବହୁତ ଛିଞ୍ଚା ବିଞ୍ଚା ପରେ ସେ ସାଷ୍ଟମ ହେଲେ ।

ଅଭ୍ୟାଗତ ଯାକ ଖାଇ ପିଇ ଲୁଗା ପଟା ନେଇ ଫେରିଲେ । ଗହଳି ଟିକିଏ ଭାଜିଲା । ବାବା ମଣୋହି କରିବେ ବୋଲି ତାଙ୍କ ଅଇଣ୍ଠା କୁଡ଼ୁଆ ଆସି ଥୁଆ ହେଲାଣି, ବାବାଙ୍କ କାନରେ ବାଜିଲା, ସକାଳୁ ଜଣେ ବୈଷ୍ଣବ ଅଣ୍ଟା ଜଖମ ହୋଇ ପଡ଼ିଛନ୍ତି । ତାଙ୍କ ଖବର ବୁଝି ଆସିବାକୁ ସେ ବାହାରିଲେ । ଘର ଭିତରେ ପଶି ଯାଉ ଯାଉ ତାଙ୍କର ନଜର ପଡ଼ିଲା, ନାରଦଙ୍କ ଉପରେ । ସେ ଶେଯ ପାଖରେ ସାଷ୍ଟାଙ୍ଗ ଦଣ୍ଡବତ ହୋଇ ଚିତ୍କାର କଲେ, "ମହାପୁରୁ ! ତମକୁ ପୁଣି ଏ ଦଣ୍ଡ କିଏ ଦେଲା ? ଓହୋ ! ଭଗବାନଙ୍କର ରାଗ ଏତେ ବେଳଯାଏଁ ଛାଡ଼ୁନାହିଁ ।"

ନାରଦ ସତକୁ ସତ ଅରକ୍ଷିତଆକୁ ଚିହ୍ନି ପାରିଲେ ନାହିଁ । ସ୍ୱେ ସେଇ ଅରକ୍ଷିତ ବୋଲି ଯେତେବେଳେ ସେ ଜାଣିଲେ, ତାଙ୍କ ମନରେ ଅପୂର୍ବ ଆନନ୍ଦ ହେଲା । ଭଗବାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରି ସେ ଗାଇଲେ, "ମହାପୁରୁ ! ଧନ୍ୟ ତମର ଲୀଳା ! ତମେ ବିଗୁଡ଼ିଲେ ସୋଲ ବୁଡ଼େ, ପଥର ଗଗନମାର୍ଗରେ ଉଡ଼େ ।" ତାଙ୍କ ପୀଡ଼ା କୁଆଡ଼େ ଉଭେଇଗଲା ।

ଅରକ୍ଷିତ ତାଙ୍କର ପାଖେ ଦୁଃଖସୁଖ ହେଉ ହେଉ କହିଲା, "ମହାପୁରୁ ! ତମର ସାଙ୍ଗେ ଦେଖା ହେଲାଦିନ ମୁଁ ବଡ଼ କଷ୍ଟ ପାଉଛି ! କେଡ଼େ ଅଚିନ୍ତ

ହୋଇଥିଲି । ଘଣ୍ଟାଏ ମେହନେତ୍ କରି ଦେଲେ ଖାଇବା ପୁଞ୍ଜିକ ମିଳି-ଯାଉଥିଲା । ମୋ ଆଠ'ଣ୍ଡ୍ରା କରେଇ ଦେଲି ଯେ, ଦେଖ, ଏ ପର୍ଯ୍ୟନ୍ତ ସରିଲା ନାହିଁ । ପାହାନ୍ତିଆରୁ ରାତିଅଧ ଯାଏଁ ସବୁବେଳେ ଘୁ ଘୁ ଲାଗିଛି । ସନ୍ଥ ମହନ୍ତ-ମାନଙ୍କର କେତେ ପୀଡ଼ା ନ ହେଉଛି । ଆଜି ପୁଣି ଆପଣଙ୍କୁ ସ୍ନା ହେଲି ! ଭଗବାନଙ୍କୁ ଟିକିଏ କହିବେ, ଆଠ'ଣ୍ଡ୍ରାରୁ ଆଉ ଯାହା ବଳିଛି ସେ ଆଗପରି ରଖନ୍ତୁ, ମୋତେ ଯେମିତି ଫପଡ଼ି ଦେଉଥିଲେ ଦିଅନ୍ତୁ । ସ୍ନାଠାରୁ ସେ ସହସ୍ରେ ଗୁଣେ ଭଲ ଥିଲା ।"

ଭଗବାନ୍‌ଙ୍କ ଦୁଆରେ ହାଜିରା ଦେବାରେ ଡେରି ହୋଇଛି ବୋଲି ମନେ ପଡ଼ିବାରେ ନାରଦ କୁନ୍ଥେଇ ମନ୍ଥେଇ ହୋଇ ଉଠିଲେ, ଛିପେଇ ଛିପେଇ ରାସ୍ତା ଧରିଲେ ।

ଖଣ୍ଡେ ବାଟ ଯାଇଛନ୍ତି, ଗୋଟିଏ ଗଛମୂଳେ ଜଣେ ବାବାଜି ବାଇବଳୁ ହେବାର ଦେଖି ସେଠାରେ ଦଣ୍ଡେ ବସେଇଲେ । ବାବାଜି ଅରକ୍ଷିତ ବାବାଙ୍କ ଠାରୁ ଲୁଗା ଗାମୁଛା ଦି'ଖଣ୍ଡ ଓ ଖଣ୍ଡେ କମ୍ବଳ ସକାଳୁ ଆଣି, ଲୁଗାଗଣ୍ଡିଲିଟି ମୁଣ୍ଡକୁ ଦେଇ ଟିକିଏ ଶୋଇ ପଡ଼ିଥିଲେ । ମୁଣ୍ଡତଳୁ ଗଣ୍ଡିଲିଟି କିଏ ମାରି ନେଇଛି । ଆଗରେ ଘୋର ଶୀତଦିନ ! କାଲି କମିତି କଟିବ ସେଇଥିପାଇଁ ସେ ବାଡ଼େଇଁ କଚ୍ଛିଡ଼ି ହେଉଥାନ୍ତି । ତାଙ୍କ ଦୁଃଖ ଦେଖି ନାରଦ ଆଶ୍ୱାସନା ଦେଉ ଦେଉ ନିଜର ପରିଚୟ ଦେଲେ ; ବିରାଦ୍ ବି ପାଇଲେ,"ମହାରାଜ, ଭଗବାନଙ୍କୁ ପଚାରିବେ, ମୁଁ ଏଇପରି ଅସୁବିଧାରେ ଆଉ କେତେ ଦିନ ଘାଣ୍ଟି ହେବ ?"

ନାରଦ ଗୋଟିଏ ଗୋଡ଼ ଦାବି ଦାବି ଆସୁଥିବାର ଦୂରରୁ ଲକ୍ଷ୍ୟ କରି ଭଗବାନ୍ ନିଜେ ପାଛୋଟି ଗଲେ ; ନାରଦଙ୍କୁ ନିଜେ ଟେକି ନେଇ ରାଣୀହଂସପୁରକୁ ଗଲେ । କିଏ ନାରଦଙ୍କ ଗୋଡ଼ ଚିପି ଦେଲା, କିଏ ଚଉସମ ପିଆଇଲା, ଭଗବାନ୍ ନିଜେ ବି ଆଉଁସି ପକାଉଥାନ୍ତି । ନାରଦ ଝାଡ଼ିଝୁଡ଼ି ହୋଇ ବସି, ଅରକ୍ଷିତଆ କଥା ସବୁ ବଖାନ କଲେ । ଭଗ୍‌ବାନ୍ ମୁରୁକି ହସିହସି କହିଲେ,"ଦେଖିଲ

ନାରଦ ! ମୁଁ ସେଦିନ କହୁଥିଲି ନା, ତମେ ଏପରି ଯାହାକୁ ତାହାକୁ ଚହ୍ଲାଦେଇ ଆପେ ପାଣ୍ଡି ହେବ, ମତେ ବି ପାଣ୍ଡିବ ?"

ନାରଦ ପ୍ରତିବାଦ କଲେ,"ଭଗବାନ୍ ମୁଁ ତ ଦେହରେ ମୁଣ୍ଡରେ ପାଇଲି । ଆପଣଙ୍କର କ'ଣଠାଏ ହୋଇଗଲା ?"

ଭଗବାନ୍ ଲକ୍ଷ୍ମୀଙ୍କ ଆଡ଼କୁ ଚାହିଁ ହସିହସି କହିଲେ, "ଶୁଣ ୟାଙ୍କ କଥା । ୟାଙ୍କର ଅଣ୍ଟା ଟିକିଏ ଜଖମ୍ ହେଲା ବୋଲି ୟାଙ୍କୁ କେତେ ବଡ଼ ଦିଶୁଛି ? ସମାନ ଦଶ ବର୍ଷ ହେଲା, ଆମେ ଯାହା ହରକତ ହେଲୁଣି, ସେ୍ଥ ଜାଣିବେ କୁଆଡ଼ୁ ? ୟାଡ଼େ ଆମ ଘରେ କଳି ଲଗାଇ ଦେଇ, ସେ ଅରକ୍ଷିତଆଣ୍ଟା ଦିନରାତି ମୋତେ ଦୋଷ ଦେଉଛି—କ'ଣ ନା, ମୋର ଯୋଗୁଁ ସେ ପରା ଲୁନ୍ଲାଏ ଅଡ଼ୁଆରେ ପଡ଼ିଛି ?"

ନାରଦ ତେଜର ହୋଇ ବସି କହିଲେ, "ହଁ, ମହାପ୍ରଭୁ, ମତେ ତ ମିନତି କରୁଥିଲା । ଆପଣଙ୍କୁ ପୁଣି ସେ କି ଦଣ୍ଡ ଦେଇଛି ?"

ଭଗବାନ କହିଲେ, "ଲକ୍ଷ୍ମୀଙ୍କୁ ପଚାର ଆହେ, ସେଦିନ ଇମିତ ବଳାଜୋର କରି ତା ପାଣ୍ଠି ଟା ନେଇଗଲା । ତହିଁଆର ଦିନ ବଡ଼ ଭୋରରୁ ତା ଆଠ'ଣ୍ଡା ତାକୁ ଦେଇଦେଲି । ସେତକ ନେଇ ସିନ୍ଦୂରମୁଣ୍ଡି ଠାକୁରାଣୀଙ୍କ ଦ୍ୱାରା ଆମ ଗନ୍ତାଘରେ ମୁତ୍‌ଫରକା (miscellaneous) ଡିପୋଜିଟ୍ କରିଦେଲି । ସିନ୍ଦୂରମୁଣ୍ଡି ତ ସେଇ ଡିପୋଜିଟ୍ ବଳରେ ପ୍ରତିଦିନ ବୁହାଇ ଲଗିଛନ୍ତି । ଲକ୍ଷ୍ମୀଙ୍କ ସାଙ୍ଗରେ ତାଙ୍କର ଏଇଥିପାଇଁ ଝଟାପଟା ଲାଗିଲାଣି ।"

ନାରଦ କହିଲେ, "ଓହୋ ! ଲେକଟା ତ ଭାରି ଗୁଲକ୍ !"

ଭଗବାନ କହିଲେ, "କ'ଣ ସେତକ ! ସେ ଡିପୋଜିଟ୍ ପୁଣି ଜାଲ । ନାମକୁ ମାତ୍ର ଟଙ୍କା ଡିପୋଜିଟ୍ ହେଲା, ସବୁତକ ଦରିଦ୍ର ନାରାୟଣ ସେବାରେ ଲଗେଇ ଦେଲି । ତା'ର ଫଳରେ ତା'ଭଣ୍ଡାର ପୂର୍ଣ୍ଣ ହେଲା । ଯେତକ ଦେଲା ବିଭବ ସେତକ ବଢ଼ିଲା । ଆପଣା କର୍ମର ଫଳରେ ସେ ପାଣ୍ଡି ହେଉଛି, ଏଣେ ପ୍ରଚାର କରୁଛି କ'ଣ ନା, 'ଆମ ଆଠ'ଣ୍ଡା ଆମେ ଦେଉଛୁ ଯେ ସରନାହିଁ ।

ଏବେ ଦିନେ କହୁଥିଲା, ତହିଁଆର ଦିନ ସକାଳେ ସତ୍ରୁ ଦେବୁ ବୋଲି କହି ଆମେ ଜବାବଭ୍ରଷ୍ଟ ହେଲୁ । ତମର ଯୋଗୁଁ ତ ଅପବାଦ ! କହିବ କାହାକୁ ?"

ନାରଦ କାଇଲି ହୋଇ କହିଲେ, "ମହାପ୍ରଭୁ, ଆଜି ତ ଆଉ ଗୋଟାଏ ବାର୍ତ୍ତା ଆଣିଛି !" ଆମ୍ବଗଛ ମୂଳ ବାବାଜିଙ୍କ କଥା ବର୍ଣ୍ଣନା କରି ନାରଦ କୈଫିୟତ ଦେଲେ, "ପ୍ରଭୋ ! ଆଜି ଅଣ୍ଟାର ପୀଡ଼ାରେ ବୁଦ୍ଧି ହଜିଯାଉଥାଏ । ନ ବୁଝି ପରିଚୟ ଦେଇଦେଇଛି ।"

ଦେହ କଷ୍ଟ ଉପରେ ମନକୁ କଷ୍ଟ ଦେବା ଠିକ୍ ହେବ ନାହିଁ ବୋଲି ଭଗବାନ ନାରଦଙ୍କୁ ଦୋଷ ନ ଦେଇ ବଡ଼ବାବୁଙ୍କୁ ଡକାଇଲେ । ବଡ଼ବାବୁ ନଥି ଆଣି ଶୁଣାଇଦେଲେ, "ଆମ କୋଠରୁ ତାଙ୍କୁ କୌପୀନ ଖଣ୍ଡେ ମିଳିଥିଲି, ସେତିକ ବି ପଅର ଦିନ ସକାଳେ ଓ୍ୱାପସ ଆସିବ ।"

ନାରଦ ନଥିର ଭୁଲ ଦର୍ଶାଇ କହିଲେ, "ଆଜି ସକାଳୁ କମ୍ବଳ, ଲୁଗା, ଗାମୁଛା ସେ ପାଇବାର ନିଜେ କହୁଛି । ଖାଲି କୌପୀନ ମିଳିଥିଲା ବୋଲି ଲେଖି ଦେଇଛ କିମିତ ?"

ଭଗବାନ ବୁଝାଇ ଦେଲେ, "ସେ ସ୍ୱା ତା ଜିନଷ ନେ ଆଣ କରୁଥିବ ନା । ଯେଉଁ କମ୍ବଳ, ଲୁଗାଗାମୁଛା କଥା କହୁଛ ସେତକ ଆଉ ଜଣକୁ ମିଳିଥିବ । ବାବାଜି ଡାକ ପିଅନ ହୋଇ ବୋହି ଆଣିଥିଲା ମାତ୍ର ।"

ବଡ଼ବାବୁ ଆଉ ଟିକିଏ ନଥି ଲେଉଟାଲେଉଟି କରି କହିଲେ, "ହଜୁର, ତା'ବି ଲେଖାଅଛି । ସେଇ ପଡ଼ିଆରେ ଗଉଡ଼ ପିଲଟିଏ ଗାଈ ଚରାଉଥିଲା । ତା'ରି ପାଇଁ ବାବାଜି ଆଣିଥିଲେ ଲୁଗାପଟା । ଗଉଡ଼ ପିଲାକୁ ମଠରୁ ସିଧା ସଳଖ ମିଳିପାରିବ ନାହିଁ ବୋଲି ଏଇ ବାବାଜିଙ୍କୁ ପିଅନ ନିଯୁକ୍ତ କରା-ହୋଇଥିଲା ।"

ନାରଦ ହସିହସି ଆକେତା ମାକେତା ହୋଇ କହିଲେ, "ଡାକପିଅନ, ମନିଅର୍ଡ଼ର ଟଙ୍କା ଆସାମୀକୁ ଗଣିଦେଇ ହାତରୁ ପଇସା ଗଲାଭଳି ବୋଲି ମୁଣ୍ଡ ପିଟିବା କଥା ଇଏ । ଆପଣଙ୍କ ଲୀଳାରେ ପଶିବ କିଏ ମହାପ୍ରଭୁ !"

ତହିଁଆରଦିନଯାକ ନାରଦ ମନକୁ ଦାବିଲେ, ବାବାଜୀର କୌପୀନ ଭଗବାନ କିପରି ଓ୍ୟାପସ ପାଇବେ ଦେଖିବାକୁ ଯିବେ ନାହିଁ । କେଜାଣି କୌତୁହଳ ଦେଖୁ ଦେଖୁ ପୁଣି କ'ଣ ଗୋଳମାଳ ହୁଏ ! କିନ୍ତୁ ଅସଲ ବେଳକୁ ମନସ୍ଥାଣ ରହିଲା ନାହିଁ । ବଡ଼ି ସକାଳୁ ଯାଇ ସେଇ ଆମ୍ବ ଗଛରେ ଚଢ଼ି ପତ୍ର ଗହଳରେ ସେ ଛପିକରି ବସିଥାନ୍ତି ।

ବାବାଜୀ ନିଦରୁ ଉଠି ଧୂନିରେ ଟିକିଏ ତାଉ ଦେଲେ । ନିଆଁ ପୁଆଇଁ ଟିକିଏ ସାଉଙ୍ଗା ହେବାକୁ ବାହାରପାଣି ଗଲେ । ନଈରେ ଶୌଚ କରୁଛନ୍ତି, ତାଙ୍କର ନଜର ପଡ଼ିଲା ରାସ୍ତାରେ ଦିଗମ୍ବର ସନ୍ନ୍ୟାସୀ ଜମାତ ଯାଉଛନ୍ତି । ତାଙ୍କୁ ଚାହିଁ ବାବାଜୀଙ୍କର ମନ ହେଲା, "ଏ କୌପୀନ ଖଣ୍ଡକୁ ଧରିଛୁ ନାହାଳିଆକୁ । ଏଖଣ୍ଡ ଗଲେ ତ ମୁଁ ମହାମଉଜରେ ଏଇ ସନ୍ନ୍ୟାସୀଙ୍କ ସଙ୍ଗେ ମିଶିଯାନ୍ତି ।"

ଶୌଚ କରିବାକୁ ତ କୌପୀନର ଗୋଟିଏ ମୁଣ୍ଡ ଫିଟିଥିଲା । ଆର ପାଖଟି ବାବାଜୀ ଧୀର କରି ଖସାଇ ଦେଇ ଦିଗମ୍ବର ସନ୍ନ୍ୟାସୀ ହୋଇ ନଈରୁ ବାହାରି ଜମାତରେ ମିଶିଗଲେ ।

ନାରଦ ନିର୍ଭୟରେ ଗଛରୁ ଓହ୍ଲାଇ ରାସ୍ତା ଧରିଲେ ।






ପିଲାଟି ସେତେବେଳକୁ ଦୁଇ ତିନି ଶହ ହାତ ପଛରେ ପଡ଼ିଗଲାଣି । ବ୍ରାହ୍ମଣ ଟିକିଏ ଠିଆହେଲେ, ପଛକୁ ଚାହିଁଲେ, ଡାକିଲେ, "ଆରେ ପୁଅ, ଆ, ବେଗେ ବେଗେ ଆ । ଏତିକିବେଳୁ ତ ଏତେ ପଛରେ ରହିଯାଉଛୁ । ତିନି କୋଶ ବାଟ ପଡ଼ି ଯିବା !"

ପୁଅ ଏମାରମଠ ଚଉତରା ପାଖରେ ଠିଆ ହୋଇ ଗୋଟାଏ ଘୋଡ଼ାକୁ ଚାହିଁଥାଏ । ମସ୍ତବଡ଼ ଅଷ୍ଟ୍ରେଲିଆନ୍ ଘୋଡ଼ା । ତା ପାଖରେ ଥୁଆ ହୋଇଥିବା ଜିନ୍, କଲଅର, ଲଗାମ, ରେକାବ, ମୁଣ୍ଡର ଏରାପକ୍ଷୀ ମୁକୁଟ ସବୁ ନୂଆ ଚକ୍‌ଚକ୍ କରୁଥାଏ । ଘୋଡ଼ାର ଚିକ୍‌କଣ ଦେହ, ଠିଆ ହେବାର ଠାଣିରୁ, ପିଲାଟିର ଆଖି ଥରକୁ ଥର ଲଦନ ସରଞ୍ଜାମ ଉପରକୁ ଚାଲିଯାଉଥାଏ, ପୁଣି ଫେରି ଆସୁଥାଏ ଘୋଡ଼ାର ରୂପକୁ । ଏଇ ସମୟରେ ଘୋଡ଼ାର ଖାଇବା ଟାଇମ ହୋଇଗଲା । ସଇଶ ଗୋଟାଏ ବଡ଼ ବାଲ୍‌ଟିରେ ଗଅଣ୍ଡୁ ବାଲ୍‌ଟିଏ ବଢ଼ୁରା ବୁଟ କାଢ଼ି ଘୋଡ଼ାର ମୁହଁରେ ଓହଳାଇ ଦେଲା । ଘୋଡ଼ା ଖାଉଥାଏ, ସେ ମୁହଁ ଝାଡ଼ିଦେବା ବେଳେ ଗୋଟାଏ ଗୋଟାଏ ବୁଟ ତଳକୁ ଖସିପଡ଼ି ଚିତୁରାପ୍ତା

ଉପରେ ଗଡ଼ି ଗଡ଼ି ଯାଉଥାଏ । ପିଲଟିର ଆଖି ସେଇ ବୃଟ ପଛରେ ଗୋଡ଼ାଇ ଯାଏ । କେଡେ ସୁନ୍ଦର ହଳଦିଆ ରଙ୍ଗ ! ତାର ପାଟିରୁ ନାଳ ଗଡ଼ିପଡ଼ୁଥାଏ । ଏଇ ସମୟରେ ନନାଙ୍କର ଡାକ ଆସି କାନରେ ବାଜିଲା । ପିଲଟି ଘୋଡ଼ା ମୁହଁର ବାଲ୍‌ଟିଆଡ଼କୁ ଥରେ ଥରେ ଫେରି ଚାହିଁ ଚାହିଁ, ଯଥାସମ୍ଭବ ତରତରରେ ଯାଇ ବାପାଙ୍କ ପାଖରେ ପହଞ୍ଚି ଆକାଙ୍କ୍ଷା ମିଶା ସ୍ୱରରେ କହିଲା, "ନନା, ଆମେ ହେଲେ ଘୋଡ଼ା ହେଇଥା'ନ୍ତେଇଁ !" ବ୍ରାହ୍ମଣ କିଛି ଉତ୍ତର ଦେଲେ ନାହିଁ । ବାହାରି ଆସୁଥିବା ଦୀର୍ଘଶ୍ୱାସ ଚାପିରଖି କହିଲେ, "ହଉ, ଆ ଆ, ବହୁତ ବାଟ ଅଛି ।"

ଗୋଟି ଗୋଟି ହୋଇ ସକାଳଠାରୁ ଏ ପର୍ଯ୍ୟନ୍ତ ଘଟିଯାଇଥିବା ସବୁ କଥା ତାଙ୍କର ମନେ ପଡ଼ିଗଲା । ସବୁ ଦିନ ପରି ସେ ଆଜି ସକାଳେ ଗାଁରୁ ବାହାରି ଥିଲେ ପୁରୀ ସହରକୁ ; ସବୁ ଦିନ ପରି ଆଶା କରିଥିଲେ, କେହି ଯଜମାନ ଚଣ୍ଡୀ ବା ସହସ୍ରନାମ ଗୁଣିବାର ଦକ୍ଷିଣା ସ୍ୱରୂପ ବଳେ ମହାପ୍ରସାଦ ଖାଇବାକୁ ଦେବ, ଚାରଣା ଆଠଣା ଦକ୍ଷିଣା ଦେବ ; ସବୁ ଦିନ ପରି ପିଲଟି ତୋଷଣି ମନ୍ଦିଏ ପିଇ ସାଙ୍ଗରେ ଆସିଥିଲା ; ମହାପ୍ରସାଦ ପୁଳିଏ ପାଇଥା'ନ୍ତା । ଫେରିଲାବେଳେ ପିଲାଳିଆ ପ୍ରଶ୍ନ ସବୁ ପଚାରି ବାଟର କ୍ଲେଶ ମାରିଥା'ନ୍ତା, ଗୋଟାଏ ଘୋଡ଼ାଏ ଶ୍ଳୋକ ମଧ୍ୟ ଶିଖିଥା'ନ୍ତା । ଆଜି କିନ୍ତୁ ଗ୍ରହଇ ଲେଉଟିବା ପର୍ଯ୍ୟନ୍ତ ମୁଠାଏ ବୋଲି ଖାଇବାକୁ ମିଳିଲା ନାହିଁ କି ପଇସାଟିଏ ମିଳିଲା ନାହିଁ । ଜଗନ୍ନାଥଙ୍କୁ ଦେଖିବାର ତ ସୁଯୋଗ ମିଳିଲା ନାହିଁ, ଆଉ କଥା କିଏ ପଚାରୁଛି ?

ଆଜି ପରା ଦିଲ୍ଲୀଆଡ଼ୁ କିଏ ଜଣେ ବଡ଼ଲୋକ, ରଜା କି ମନ୍ତ୍ରୀ ଆସିବାର କଥା, ଜଗନ୍ନାଥଙ୍କୁ ଦର୍ଶନ କରିବାକୁ । ଦେଉଳ ଚାରିପଟେ କଡ଼ା ପୁଲିସ ପହରା । କାହାକୁ ଭିତରକୁ ଛାଡ଼ି ଦେଉନାହାନ୍ତି । ଆଗ ଶୁଣାଯାଉଥିଲା ଦଶଟା ବେଳେ ଆସିବେ, ପୁଣି ଶୁଣାଗଲା, ୧୧ଟାରେ ଆସିବେ । ଏମିତ ହେଉ ହେଉ ୧୨ଟା ଗଲା ; ଗୋଟାଏ ଗଲା ; ଶୁଣାଗଲା, ଗୋଟାକବେଳେ ତାଙ୍କର ଦିହପଦିହର ଝିଅ ସାରି ଟିକିଏ ବିଶ୍ରାମ ନେଇ ଆସିବେ । ପୁଲିସ ସବୁବେଳେହେଇ ଟି ଆସିବେ ହେଇଟି ଆସିବେ କହୁଥା'ନ୍ତି । ବ୍ରାହ୍ମଣ, ପୁଲିସ ଘେରାଉ ପାଖରେ ୩ଘଣ୍ଟା ପର୍ଯ୍ୟନ୍ତ ଠିଆହେଲେ । ଶେଷକୁ ମହାପ୍ରକାଶ ମଠ ଭିତରେ ପଶିଲେ । ସେ ମଠର ବାଆଁଙ୍କ

ଆଗରେ ସହସ୍ରନାମ ଗୁଣି ଟିକିଏ ବସିଲେ । ଦେଉଳର ତ ମିଛ ବଡ଼ି ନଥାଏ, ମଠରେ ବା ମଉଚ୍ଛୁ ହେଉଛୁ କେତେବେଳେ ? ଖାଲି ପେଟରେ, ଖାଲି ହାତରେ ମଣିଷପୂଜାର ଏଇ ବିଶ୍ୱାସିକା କଥା ବଗୃର ଗାଁ ଆଡ଼କୁ ମୁହାଁଇଥା'ନ୍ତି । ପୁଅ ସଙ୍ଗେ କଥାବାର୍ତ୍ତା ହେବାକୁ ଅବସର କାହିଁ ? ପୁଅଟି ବି ଭୋକ ପେଟରେ କାନ୍ଦୁଣୁ ମାନ୍ଦୁଣୁ ହୋଇ ଯଥାସମ୍ଭବ ପଛରେ ଲାଗିଥାଏ ।

ବ୍ରାହ୍ମଣ ଆସି ଅଠରନଳା ଉପରେ ପହଞ୍ଚିଲା ବେଳକୁ ପୁଅ ଯାଇ ରହିଲାଣି ଫାର୍ଣ୍ଟି ପଛରେ । ବ୍ରାହ୍ମଣ ଟିକିଏ ଠିଆହେଲେ, ନଈ ଭିତରେ ଆଖି ପଡ଼ିଲା, ମୁହଁ ଟିକିଏ ହସ ହସ ହୋଇଗଲା ; ପୁଅ ଆଡ଼କୁ ଗୃହିଁ ଚେଲେଇ କରି ଡାକିଲେ, "ଆରେ ପୁଅ ! ଆ ଆ, ହେଇଟି ଦେଖିବୁ, ଆ ।"

ଗୋଟିଏ କିଛୁ ବିଶେଷ ଦର୍ଶନୀୟ ବସ୍ତୁ ଦେଖିବା ଲାଳସାରେ ପିଲାଟି ଯଥାସାଧ୍ୟ ଚେଷ୍ଟା କରି ଧାଇଁ ଆସିଲା । ସେ ଶୁଣିପାରିଲା ପରି ଦୂରକୁ ଆସି ପହଞ୍ଚିବାରେ ବ୍ରାହ୍ମଣ କହିଲେ, "ଆରେ ପୁଅ, କହୁଥିଲୁ ପରା ଘୋଡ଼ା ହେବାକୁ । ଆମେ ଘୋଡ଼ା ହୋଇଥିଲେ ହୋଇଥାନ୍ତେ, ହେଇ, ସେଇ ଘୋଡ଼ା !" ଅଠରନଳା ନଈ ଭିତରେ ଗୋଟାଏ ଅତି ମେଞ୍ଚଡ଼ା ଘୋଡ଼ା ବିକଳରେ ଦଳି ଗ୍ରେବାଉଥାଏ । ଠେଙ୍ଗରେ ଗୋଟାଏ ବଡ଼ ଘା ; ସେଥିରୁ ପୁଳାଏ ଖୁମ୍ପିବାକୁ ଚେଷ୍ଟା କରୁଥିବା କୁଆକୁ ଘଉଡ଼ିବା ନିମନ୍ତେ ଲାଙ୍ଗୁଡ଼ଟାକୁ ଅନବରତ ଝାଡ଼ୁଥାଏ ; ପାଣି ଭିତରେ ବୁଡ଼ିଥିବା ଗୃରଟାଯାକ ଟାଙ୍କରେ ବୋଧହୁଏ ଜୋକ ଲାଗିଥାନ୍ତି ; ବ୍ୟତିବ୍ୟସ୍ତ ହୋଇ ଗୋଟି ଗୋଟି ଗୋଡ଼ ଟେକୁଥାଏ, ପକାଉଥାଏ ।

ପିଲାଟି ଆଉ ସମ୍ଭାଳି ପାରିଲା ନାହିଁ । ଭୋକ ଓ ନୈରାଶ୍ୟରେ ଭେଁ କରି କାନ୍ଦି ପକାଇଲା । ବ୍ରାହ୍ମଣ ପିଲାଟିକୁ କୋଳକୁ ଟେକି ଆଣିଲେ । ଗାମୁଛାରେ ଆଖି ପୋଛୁ ପୋଛୁ କହିଲେ, "ଛି, ଏତିକରେ କାନ୍ଦି ପକାଇଲୁ ? ତତେ ପରା ସେ ଦିନ ଶିଖାଉଥିଲି, ପତିତପାବନ ଆମରି ପରି, ଏହି ରୋଗଣା ଘୋଡ଼ାଟି ପରି, ଦୁଃଖୀଙ୍କି ସ୍ନେହ କରନ୍ତି ।"

ପିଲାଟି ନନାଙ୍କ ଆଦରରେ କାନ୍ଦ ବନ୍ଦ କରି ଅଭିମାନରେ କହିଲା "ଖାଇବାକୁ ତ ମୁଠିଏ ଦେଉନାହାନ୍ତି ! ଆଉ ସ୍ନେହ କ'ଣ କରନ୍ତି, ନନା !"

ବ୍ରାହ୍ମଣ ଉତ୍ତର ଦେଲେ, "ଦେବେନ୍ଦ୍ର କ ? ଦେବେ, ଦେଉଚନ୍ତି । ଜଗନ୍ନାଥ ମହାପ୍ରଭୁ ଯଦି ଦେଉନାହାନ୍ତି, ତେବେ ତୋ ବୋଉ ବଞ୍ଚୁଛି କମିତି ? ମୁ ବଞ୍ଚୁଛି କମିତି ? ତୁ ଏତ୍ତୁଟିଏ ହେଲୁଣି କେମିତି, କହିଲୁ ?"

ପୁଅର ମନ ମାନିଲା ନାହିଁ । ସେ ଅଭିଯୋଗ କଲା, "ନନା ! ଏଡ଼େ ସୁନ୍ଦର ପ୍ୟାଣ୍ଟ କୁରୁତା ଯୋଡ଼ା ପିନ୍ଧି ଯେ ବଡ଼ ଦାଣ୍ଡରେ ଠିଆ ହୋଇଥିଲେ, ଏଡ଼େ ସୁନ୍ଦର ଚକମକିଆ ମଟର ଯାହାଙ୍କର ସେଠି ରଖା ହୋଇଥିଲା, ସେମାନଙ୍କୁ ତ ଭଗବାନ ସେ ସବୁ ଦେଇଛନ୍ତି, ରହିବାକୁ ଏଡ଼େ ବଡ଼ ବଡ଼ କୋଠା ଦେଇଛନ୍ତି ; ପୁଣି ସେ ଘୋଡ଼ାକୁ ତ ଏଡ଼େ ସୁନ୍ଦର ରୂପ ଦେଇଛନ୍ତି, ଏମିତି ହଲଦିଆ ହଲଦିଆ ବୁଟ ଦେଇଛନ୍ତି ଖାଇବାକୁ ; ତେବେ ଏ ଘୋଡ଼ାକୁ କାହିଁକି ଏମିତି ପାଣ୍ଟୁଛନ୍ତି ? ଆମକୁ ପୁଞ୍ଜିଏ ଖାଇବାକୁ ବି ଦେଲେ ନାହିଁ । ନନା ! ତମକୁ ତ ଖୁବ ଭୋକ ହେଉଥିବ ? ତମେ ତ କାଲି ରାତିରେ କିଛି ଖାଇନାହଁ । ଆଜି ସକାଳୁ ଏତେବେଳ ଯାଏଁ ପାଣି ବି ଛୁଇଁନାହଁ । ମତେ ସକାଳୁ ବୋଉ ତୋରାଣି ମୁନ୍ଦାଏ ଦେଲା ବୋଲି ସିନା । କହିଲା, ତଳତଳିଆ ହୋଇ ଗିନେ ହେବ ଭାତ ଥିଲା ପରା । ଆଜି ମୁଁ ତାକୁ ଖାଇକରି ଆସିବ ବୋଲି ବୋଉ କାଲି ରାତିରେ କିଛି ଖାଇ ନଥିଲା । ସେ ସବୁ କୁଆଡ଼େ ଗଲାଣି । ମୋତେ ଏଡ଼େ ଭୋକ ହେଉଛି ଯେ ଚାଲି ପାରୁନାହିଁ ।"

ବ୍ରାହ୍ମଣ ପୁଅକୁ କାଖେଇ ବାଟ ଚାଲିଲେ । ତା ମୁଣ୍ଡରେ, ଦେହରେ ହାତ ବୁଲାଉ ବୁଲାଉ କହିଲେ, "ହଉ ହଉ, ମୁଁ ତୋତେ ଟିକିଏ କାଖେଉଛି । ତୋ ଦେହରେ ଟିକିଏ ବଳପାଉ କି ତୁ ଚାଲିବୁ । ଆଉ ଘଡ଼ିକରେ ତ ଗାଁ ହୋଇଯିବ । ଘରକୁ ଗଲେ ବୋଉ ରାନ୍ଧିଦେବ, ଖାଇବା ।"

ନନାଙ୍କର ଅଜ୍ଞତାର ସଂଶୋଧନ କରି ପୁଅ କହିଲା, "ଘରେ ଚାଉଳ ନାହିଁ ହେ ନନା ! ଆମେ କାଲି ଯୁ ପୁଞ୍ଜିକ ନେଇଥିଲେ ସେଇ ପରା କାଲି ଉପରବେଳା ରନ୍ଧା ହୋଇଥିଲା । ଆମେ ସିନା ଆଜି ଉପରବେଳା ନେଇଥିଲେ ରନ୍ଧା ହୁଅନ୍ତା !"

ବ୍ରାହ୍ମଣ ବୁଝାଇ ଦେଲେ, "ସବୁ ଧନ କ'ଣ ଆମକୁ ପୂର୍ବରେ ମିଳୁଛୁ ? ନ ମିଳାଲ ଧନ ବୋଉ ସାଇରେ କାହାଘରୁ ଅଧଭବେ ଉଧାର ଆଣିବ, ପୁଣି ମିଳିଲେ ଶୁଝିଦେବା ।"

ପୁଅ କହିଲା, "ପଡ଼ଶା ଘର ମାଉସୀଙ୍କର ପଇସା ଆମ ଉପରେ ଅଢ଼େଇ ଟଙ୍କା ହେଲଣି ! ସେ ଯେବେ ନ ଦେବେ ?"

ବ୍ରାହ୍ମଣ କହିଲେ, "ଦେବେ । ଦେବେନାହିଁ କାହିଁକି ? ଶୁଝିବା ନାହିଁ ବୋଲି ଯେବେ ଆମେ ମନରେ ବିଚାରିବା, ତେବେ ମିଳିବ ନାହିଁ । ଶୁଝିବା ପାଇଁ ଆମର ଯେଉଁ ଧନ ଯାଏଁ ମନ ଥିବ, ସେ ଧନଯାଏଁ ଉଧାର ନିଶ୍ଚୟ ମିଳିବ । ତାଙ୍କଘରୁ ନ ମିଳିଲେ ଆଉ କାହାଘରୁ ମିଳିବ ।"

ଏଇ ଆଶ୍ୱାସନାରେ ପୁଅର ଭୋକ ଟିକିଏ ମଲା ପରି ! ପଥଶ୍ରାନ୍ତ ବି ଟିକିଏ କମିଗଲା, ବୋଧହୁଏ । ସେ କୋଳରୁ ଖସି ହାତ ଧରି ଚାଲିଲା । ଚାଲୁ ଚାଲୁ ପଚାରିଲା, "ନନା ! କହିଲ ନାହିଁ, ଆମେ କାହିଁକି ଏମିତି କଷ୍ଟ ପାଇବା, ଆଉ ସେମାନେ କାହିଁକି ଏଡ଼େ ସୁଖରେ ରହିବେ ? ଭଗବାନ ଏମିତି ଅସମାନ କରି କାହିଁକି ମଣିଷ ଗଢ଼ିଛନ୍ତି ଯେ ?"

ବ୍ରାହ୍ମଣ ଉତ୍ତର ଦେଲେ, "ଭଗବାନ କାହାକୁ ଅସମାନ କରିନାହାନ୍ତି । ଯଦି ଆମକୁ ଯୋଡ଼େ ହାତ ଦେଇ, ତାଙ୍କୁ ଚାରିଟା ହାତ ଦେଇଥାନ୍ତେ, ତେବେ ଯିନା ଭଗବାନ ଅସମାନ କରିଛନ୍ତି ବୋଲି କହନ୍ତୁ । ଭଗବାନ ସମସ୍ତିଙ୍କି ସମାନ କରିଛନ୍ତି । ସମସ୍ତଙ୍କୁ ସମାନ ହାତଗୋଡ, ଆଖି, କାନ, ଦେଇଛନ୍ତି । ମନ ଓ ବିଚାର ବି ସମାନ ଦେଇଛନ୍ତି । ଜଣେ ବିଚାର ଖଟାଉଛି, ଆଉ ଜଣେ ବିଚାର ଖଟାଉନାହିଁ । ସେଇ ଯୋଗରୁ ଅସମାନ ହୋଇଯାଇଛି । ଯାହା ସବୁ ଅସମାନ ଦେଖୁଛୁ ସେ ସବୁ ମଣିଷର ନିଜ ତିଆରି, ଭଗବାନଙ୍କର ନୁହେ ।"

ପୁଅ ପଚାରିଲା, "କିମିତି ?" ନନା କହିଲେ, "ଆମେ ଆଜି ଦେଉଳକୁ ଯାଇ ପାରିଲେ ନାହିଁ । ଏଇ କଥାକୁ ଟିକିଏ ବିଚାରିରେ, ଜାଣିପାରିବୁ । ସେଇ ଯେଉଁ ପୁଲିସବାଲା ବଡ଼ ଦାଣ୍ଡରେ ଘେରି କରି ଠିଆ ହୋଇଥିଲେ, ସେ କ'ଣ ତାଙ୍କ ମନ ଖୁସିରେ ଠିଆ ହୋଇଥିଲେ ? ସେ କ'ଣ ତାଙ୍କ ମନରେ ଆମକୁ ରୋକିଲେ ?"

ପୁଅ କହିଲା, "ଆମର ପାଖରେ ପଣ୍ଡା, ନନା, ଫୁଲସବାଲା ଗୁଁ ଗୁଁ ହୋଇ ସେ ଘଣ୍ଟାବାଲାକୁ କେତେ ଗାଳି ଦେଉଥାଏ । ଯେଉଁ ସମୟରେ ଅସିବ ବୋଲି କହିଥିଲା, ସେ ସମୟରେ ନ ଅସିବାରୁ, ତାକୁ ଖୁଣୁଥାଏ । କହୁଥାଏ, 'ଦଶଟା ବେଳେ ଯଦି କହିଲ, ଦଶଟାବେଳେ ଆସ, ନାହିଁ ଯଦି ଦଶଟାବେଳେ ଅସୁବିଧା ହେଲା ଏକାଥରକେ ଉପରବେଳାକୁ ଗଡ଼ାଇ ଦିଅ, ଯାତ୍ରୀମାନେ ଦର୍ଶନକୁ ଯାଆନ୍ତୁ । ପୁଣି ଆଉ ଥରେ ଉପରଓଳିକୁ ଦେଉଳ ଶୋଧ କରିଦିଆନ୍ତୁଅନ୍ତା । ତା ନ କରି ଘଣ୍ଟାକୁ ଘଣ୍ଟା ସମୟ ଗଡ଼ାଇବାରୁ ଆମେ ଖରାରେ ସିଝୁଛୁ । କେତେ ଆଉର ଯାତ୍ରୀ ହଇରାଣ ହେଉଛନ୍ତି !' ଏମିତି କେତେ ଗାଳୁମାରୁ ହେଉଥାଏ । ସେ କ'ଣ ଏକୁଟିଆ ? ଯାତ୍ରୀଗୁଡ଼ାକ କ'ଣ କମ୍ ଗାଳି ଦେଉଥାନ୍ତି କି ?"

ବ୍ରାହ୍ମଣ ପଚାରିଲେ, "ସେଇ ଘଣ୍ଟାବାଲା ଜଣକର ବିଚାରରୁ ଏ ସବୁ ହେଲାଟିକି ? ସେ ଯଦି ଟିକିଏ ବିଚାରି ଖଟାଇଥାଆନ୍ତା, ତା ଯୋଗୁଁ କେତେ ଲୋକଙ୍କର କେତେ ଅସୁବିଧା ହେଉଛି, ଯଦି ବିଚାରିପାରିଥା'ନ୍ତା, ତେବେ ସବୁ ଠିକ୍ ହୋଇଥାନ୍ତା !"

ପୁଅ କହିଲା, "ସେ ଯଦି ବିଚାରି ନ ପାରିଲା ତାକୁ ଆଉ କିଏ କହିଲେ ନେଇଁ ? ତମେ ପରା କହ, ଆମ ରଜା ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା, ସେ କହିଲେ ନେଇ ? ମୁକ୍ତିମଣ୍ଡପର ଏଡ଼େ ବଡ଼ ବଡ଼ ପଣ୍ଡିତ ପୁରୀରେ ଅଛନ୍ତି, ସେ କହିଲେ ନେଇଁ ? ମେଜେଷ୍ଟର ଅଛନ୍ତି, ସେ କହିଲେ ନେଇଁ ?"

ବ୍ରାହ୍ମଣ କହିଲେ, "ଆରେ ପୁଅ, ଗୋଟାଏ ଗୋଟାଏ ଲୋକ ଯେତେବେଳେ ଉତ୍ପାତ ହୁଅନ୍ତି ତଳିଆ ଲୋକେ କରପତ୍ର ଯୋଡ଼ି ତୁନି ହୋଇ ରହିଯା'ନ୍ତି । ରଜା ବିଚାରୁଛନ୍ତି, ଘଣ୍ଟାବାଲାର ମନ ନେଲେ ତାଙ୍କୁ କ'ଣ ଗୋଟାଏ ପାହୁଆ ମିଳିଯିବ । ପଣ୍ଡିତମାନେ ବିଚାରୁଛନ୍ତି, ମୁକ୍ତିମଣ୍ଡପରେ ଆଶୀର୍ବାଦ ଶ୍ଳୋକଟାଏ ପଢ଼ିଦେଲେ ପାଞ୍ଚ ଟଙ୍କା ଦକ୍ଷିଣା ପାଇଯିବେ । ମେଜେଷ୍ଟର ତ ସେଇ ଘଣ୍ଟାବାଲାର ନୌକର । ମାଲିକ ଖୁସି ହୋଇଗଲେ ହାକମି ଟିକିଏ ବଢ଼ିଯିବ, ଦରମା ପଚଶ ଟଙ୍କା ଅଧିକା ମିଳିଯିବ । ଜଣେ ବିଚାର ଗୁଡ଼ିବାରୁ, ଏମିତି

ଧରାଧରି ହୋଇ ଆଉ ପାଞ୍ଚ ଜଣ ବାହାରି ଗଲୁଣିଛନ୍ତି । ସେଇମାନଙ୍କ ଅବସରରେ ଆମେ ହନ୍ତସନ୍ତ ହେଉଥାଉଁ ।"

ପୁଅ ପଚାରିଲା, "ସେ ସମସ୍ତେ ତ ପୁଣି ଠାକୁରଙ୍କୁ ମାନୁଛନ୍ତି ? ରାଜା ଛେରା ପହଁରା କରୁଛନ୍ତି ; ପଣ୍ଡିତମାନେ ପ୍ରତିପଦନ ଦର୍ଶନକୁ ଯାଉଛନ୍ତି ।"

ବ୍ରାହ୍ମଣ କହିଲେ, "ହଁ ଯାଉଛନ୍ତି ଯେ, ମହାପ୍ରଭୁଙ୍କୁ ମାଗୁଛନ୍ତି କ'ଣ ? ମହାପ୍ରଭୁଙ୍କ ଅନୁଗ୍ରହ ନ ମାଗିକରି, 'ହାକିମ ଖୁସି ହୁଅନ୍ତୁ,' 'ଦରମା ବଢ଼ାନ୍ତୁ' ବୋଲି ମାଗୁଛନ୍ତି । ମହାପ୍ରଭୁ ତ ମାୟାବୀ । ଯେ ଯାହା ମାଗୁଛନ୍ତି ତାଙ୍କୁ ସେଇଆ ମିଳୁଛି ।"

ପୁଅ ପ୍ରତିବାଦ କଲା, "ତାଙ୍କର ଏବେ କ'ଣ ଖରାପ ହୋଇଯାଉଛି କି ? ରଜା କ'ଣ ଉପାସେ ରହୁଛନ୍ତି ? ହାକିମ ହାକିମି କରି ଖୁସି ; ପଣ୍ଡିତମାନେ ଦକ୍ଷିଣା ପାଇ ମହାମଉଜରେ ଅଛନ୍ତି ।"

ବ୍ରାହ୍ମଣ କହିଲେ, "ହଉ ଥାନ୍ତୁ । ସେ ବା କେତେ ଜଣ ? କେତେ ଦିନ ପାଇଁ ବା ତାଙ୍କ ଅଇସ ? କହୁଥିଲି ପରା, ଯୁଧିଷ୍ଠିର ମହାରାଜା ସେଇ ଦିଲ୍ଲୀରେ ରାଜୁତି କରୁଥିଲେ । ତାଙ୍କ କାଳରୁ ଆଜି ମଧ୍ୟରେ କେତେ ରଜା ସେଠି ରାଜୁତି କଲେଣି । ସେମାନଙ୍କ ନାଁ କିଏ ମନେ ରଖିଛି ? ତାଙ୍କ ବଂଶରେ ପାଣି ଦେବାକୁ ବି ମଣିଷ ନାହାନ୍ତି ।"

ପୁଅ ପଚାରିଲା, "ଯୁଧିଷ୍ଠିର ତ ଏଡ଼େ ଭଲ ରଜା ଥିଲେ, ସେ କ'ଣ ସବୁ କାଳକୁ ରହିଲେ ? ସେ ବାହାରରେ ଚାଲୁଥିଲେ । ଜୀବନଯାକ ଧାଣ୍ଡି ହୋଇ ହୋଇ ଶେଷରେ ମଲେ । ଯେ ଅବସରରେ ଚାଲିଲା, ସେ ରାଜଭୋଗରେ ରହି ମଲା । ସମସ୍ତେ ତ ମରିବେ । ଭଲ ଖାଇ କରି ମଲେ ଭଲ ନୁହଁ, ନନା ?"

× × × ×

ସେତେବେଳକୁ ଦାମୋଦରପୁର ବଜାର ହୋଇଯାଇଥାଏ । ପଛରୁ ପାଟି ଶୁଭିଲା, "ଆଡ଼େଇ ହୁଅ, ଆଡ଼େଇ ହୁଅ ।" ସଡ଼କ ଦାଢ଼କୁ ଆଉଜି ଯାଇ

ପିଲାଟି ପଛକୁ ଗ୍ରହିଁଲା ବେଳକୁ, ଏମାରମଠ ଚଉତରାର ସେଇ ଘୋଡ଼ା, କେଡ଼େ ସୁନ୍ଦର ସାଜ ପିନ୍ଧି, ଟପ୍‌ଟପ୍ ହୋଇ ମାଡ଼ିଆସୁଥାଏ । ତା ଉପରେ ଜଣେ ପୁଲିସ ସାଇବ ବସି ଗୋଟେ ବଡ଼ କୋରଡ଼ା ଧରି ଦ'ପଟକୁ ଫଟ୍‌ଫଟ୍ କରି ପିଟି ଆଡ଼େଇ ଦେବାକୁ ତାଗିଦ୍ କରୁଥାନ୍ତି । ଖଣ୍ଡେ ପଛରେ ଗୋଟେ ମଟର ଆସୁଥାଏ । ସେଥିରେ ବହୁତ ଗୁଡ଼ାଏ ଫୁଲମାଳ ଓହଳଥାଏ । ମଟରଟା ଖୋଲା, ତା ଉପରେ ଛାତ ନ ଥାଏ । ମୋଟାସୋଟା ହୋଇ ତହିଁରେ ତିନିଜଣ ବସିଥା'ନ୍ତି । ଡ୍ରାଇଭର ପାଖରେ ଜଣେ ବାଦୁଆମୁହାଁ ଲୋକ ଠିଆ ହୋଇଥାନ୍ତି । ପ୍ରକାଣ୍ଡ ଲୋକ, ନାକତଳେ ଗୋଚ୍ଛାଏ ନିଶ, ମୁଣ୍ଡରେ ଗୋଟାଏ ବଡ଼ ଟୋପି, ବାଟରେ ଠିଆ ହୋଇଥିବା ଲୋକଙ୍କୁ ନମସ୍କାର ହେଲାପରି ହାତ ଟେକିଥାନ୍ତି । କିନ୍ତୁ ଯେପରି ଗ୍ରହିଁଥାନ୍ତି, ଜଣାଯାଉଥାଏ, ଗୋଟା ସୁଦ୍ଧା ଗିଳିଦେବେ । ମଟର ଏ ବାପପୁଅଙ୍କୁ ପାରି ହୋଇଛି କି ନାହିଁ, ଆଗରେ ହୋ ହୋ ଶବ୍ଦ ଶୁଭିଲା । ବ୍ରାହ୍ମଣ ଓ ତାଙ୍କ ପୁଅ ବଜାର ମୁଣ୍ଡରେ ଯାଇ ପହଞ୍ଚିଲାବେଳକୁ ଘୋଡ଼ା ଚାଲିଗଲାଣି, ମଟର ବି ଚାଲିଗଲାଣି ।

ପ୍ରାୟ ଦୁଇ ଶହ ତିନି ଶହ ଲୋକ ସଡ଼କ ଉପରେ ଜମା ହୋଇଛନ୍ତି । ମଝିରେ ୧୬।୧୭ ବର୍ଷର ଗୋଟିଏ ଯୁବକ ବେହୋସ ହୋଇ ପଡ଼ିଛି । ତା ମୁଣ୍ଡରୁ ରକ୍ତ ବୋହିଯାଉଛି । ଗୋଟାଏ ପୁଲିସ କନଷ୍ଟେବଲ ତାହା ପାଖରେ ଠିଆହୋଇ ପାଟି କରୁଛି, "ତୁମେମାନେ ଥୟ ହୁଅ । ଗୋଳମାଳ କରିବାରେ କିଛି ଲାଭ ନାହିଁ । ସାଇବ କହିଯାଇଛନ୍ତି, ସେ ସତ୍ୟବାଦୀରୁ ପୁଣି ବଡ଼ ଡାକ୍ତରଖାନକୁ ଟେଲିଫୋନ କରିଦେବେ । ଘଣ୍ଟାକ ଭିତରେ ଡାକ୍ତରଖାନାରୁ ଆମ୍ବୁଲାନ୍ସ ଗାଡ଼ି ଆସି ପହଞ୍ଚିବ । ସ୍ୱା ସାଙ୍ଗରେ ମୁଁ ନିଜେ ଡାକ୍ତରଖାନାକୁ ଯାଇ ଏହାକୁ ଛାଡ଼ିଦେଇ ଆସିବି ।"

ବ୍ରାହ୍ମଣ ରୋଗୀ ପାଖକୁ ଗଲେ, କନଷ୍ଟେବଲର ମନା ନ ମାନି । ଘୋଡ଼ା ଟାପୁ ବାଜି ମୁଣ୍ଡ ଫାଟି ଯାଇଥିବା ଯୁବକଟିର ମୁଣ୍ଡ ପାଖରେ ବସି ହୁକୁମ ଦେଲା ପରି କହିଲେ, "ତୁମ ଡାକ୍ତର ଆସିଲା ପର୍ଯ୍ୟନ୍ତ ଏଇ ଲୋକଟି ପୁଣି ବଞ୍ଚିବାର ତ ଗ୍ରହ !" ତାଙ୍କ ବଚନରେ ପାଣି ଆସିଲା । ଲୋକଟିର ଛୁଆ ବଞ୍ଚା ହେଲା ।

କନା ଖଣ୍ଡେ ଆସି ପୋଡ଼ାହୋଇ ଘୋଡ଼ାର ଛାପୁ ବାଜ ଫାଟିଯାଇଥିବା ଜାଗାରେ ମଡ଼ା ହେଲା । କିଛି ସମୟ ପରେ ଲୋକଟିର ଚେତା ଆସିଲା । ସେ ଝାଡ଼ଝୁଡ଼ ହୋଇ ବସିଲା । ଜନତା କିଞ୍ଚିତ୍ ଶାନ୍ତ ହେଲେ । ବ୍ରାହ୍ମଣ ଶୁଣିଲେ ଘୋଡ଼ା ମାଡ଼ି ଆସିବାବେଳେ ଯୁବକଟି ଅସ୍ତବ୍ୟସ୍ତ ହୋଇ ସଡ଼କର ଏ ପାଖରୁ ସେ ପାଖକୁ ପାର ହେଉଥିଲା । ପୁଲିସ ସାହେବଙ୍କ କୋରଡ଼ା ମାଡ଼ରେ ସେ ପଡ଼ିଗଲା ଓ ଘୋଡ଼ା ତାକୁ ଡେଇଁ ଚାଲିଗଲା । ଯୁବକଟି ଜଙ୍ଘରୁ ଲୁଗା କାଢ଼ି କୋରଡ଼ା ଚିହ୍ନ ଦେଖାଇଲା । ଢ଼ ଜଙ୍ଘରେ ମାଳ ପଡ଼ିଲା ପରି ଚିହ୍ନ ରହି ଯାଇଥାଏ ।

ଏତିକିବେଳେ ପୁଣି ଆଡ଼ୁ, ଜୋର ହର୍ଣ୍ଣ ଦେଇ ଆମ୍ବୁଲାନ୍ସ ଆସି ପହଞ୍ଚିଲା । ବ୍ରାହ୍ମଣ କହିଲେ "ଆରେ ବାପ୍ପା, ଯା, ଡାକ୍ତରଖାନାରେ ବାବୁ କ'ଣ ଔଷଧ ଦେବେ, ପୀଡ଼ା ଛାଡ଼ିଯିବ, ଘା' ବ ବେଗେ ଶୁଖିଯିବ ।"

ଆହତ ଯୁବକର ଏକ କଥା—ସେ କେଉଁ ଯିବନାହିଁ । ଯେ ମାରିଛନ୍ତି ତାଙ୍କ ଡାକ୍ତରଖାନାରେ ସେ ଭଲ ହେବ କିପରି ? "ଯାହାଙ୍କୁ ମାରିଆସେ ତାଙ୍କୁ କ'ଣ ତାରିଆସେ, ମହାପୁରୁ ?" ବ୍ରାହ୍ମଣ ତାକୁ ପୁଣି ବୁଝାଉଛନ୍ତି, ଏଇ ସମୟରେ ଆରପାଖରୁ ପୁଣି ଶୁଭିଲା, "ଆଡ଼େଇ ହୁଅ, ଆଡ଼େଇ ହୁଅ !" ପୁଣି ସେଇ ଘୋଡ଼ା ପଛରେ ପୁଣି ସେଇ ମଟର । ଦିଲ୍ଲୀବାଲା ହାକମ ସତ୍ୟବାଦୀଙ୍କୁ ଦର୍ଶନ କରି ଫେରୁଥାନ୍ତି । ଏଥର ଠିଆ ନ ହୋଇ ମଟରରେ ବସିଥା'ନ୍ତି ; ହାତ ନ ଯୋଡ଼ି ଗୋଟିଏ ହାତ ମଟରବାହା ଉପରେ ଓ ଆର ହାତଟି ମଟର ସିଟ୍ ଉପରେ ରଖିଥା'ନ୍ତି ।

ମୁହୂର୍ତ୍ତେକଖଣ୍ଡେ ସେଇ ସ୍ଥାନରେ ମଟର ଠିଆହେଲା । ହାକମ ଡ୍ରାଇଭରକୁ କ'ଣ କହିଲେ, ଡ୍ରାଇଭର ତଳେ ବସିଥିବା ଯୁବକଟି ଆଡ଼କୁ ଚାହିଁ ହାକମଙ୍କୁ ବୁଝାଇଦେଲେ, ଲୋକଟିର ଆଘାତ ସେପରି କିଛି ଗୁରୁତର ନୁହେଁ । ମଟର ଚାଲିଗଲା, ଆମ୍ବୁଲାନ୍ସ ଗାଡ଼ି ବ ପୁଣି ଫେରିଗଲା ।

ବ୍ରାହ୍ମଣ ପୁଅକୁ ପଚାରିଲେ, "ହଇରେ ବାପା, ଏଇ ଘୋଡ଼ା ହେବୁ ? ଏଇ ହାକମ ହେବୁ ?"

ପୁଅ କିଛି ନ କହି ଘୃଣା ଓ ବିରକ୍ତିରେ ସେହି ମଟର ଫେରିଥିବା ପୁରୀ ଆଡ଼ ରାସ୍ତାକୁ ଗୃହିଁଥାଏ । ବ୍ରାହ୍ମଣ ପୁଣି କହିଲେ, "ଆରେ ବାପା, ଆମ ଥାନ ଏଇ ଦାଲଖିଆ ଘୋଡ଼ାଙ୍କ ସାଙ୍ଗରେ, ସଡ଼କ ଦାଢ଼ରେ, ମାଡଖାଇ ପଡ଼ିଥିବା ଲୋକଙ୍କ ସାଙ୍ଗରେ ! ସେଇ ଯେ ଗଲେ, ସେ ବି ଯାଙ୍କର ଭିତରୁ ବାହାରିଚନ୍ତି, ଯେମିତି ପଙ୍କରୁ ପଦ୍ମ ବାହାରେ । ପଦ୍ମଟି ଫୁଟିଲା ତ ସରିଲା । ପଦ୍ମର ମୁଣ୍ଡାଟି କିନ୍ତୁ ସେହି ପଙ୍କରେ ରହିବ, ପୁଣି ପଦ୍ମ ବାହାର କରିବ । ଯେଉଁ ପଦ୍ମଟି ବାହାରିଲା ସେ ଦିନେ ଅଧେ ତୋଫା ଦିଶିବ, ତା'ପରେ କୁଆଡ଼େ ମିଳେଇ କରି ପଡ଼ିବ ଯେ କାହାରି ମନେ ରହିବ ନାହିଁ ; କିନ୍ତୁ ପଦ୍ମମୁଣ୍ଡା ସବୁବେଳେ ପଦ୍ମମୁଣ୍ଡା ।






( ୧ )

ମହାଦେବ ସର୍ବଶେଷରେ ମାନିଲେ, ବାସୁଆ ଗୋଡ଼ରେ ନାଲ ନ ମାରି ଆଉ ପାଦେ ହେଲେ ଆଗେଇବା ଅନ୍ୟାୟ ହେବ। କଳ୍ପକୁ କଳ୍ପ ସେ ବାସୁଆକୁ ବାହନ କରି ଆସିଛନ୍ତି। କିନ୍ତୁ ତା' ଗୋଡ଼ରେ ନାଲ ବାଡ଼େଇବା ଏପର୍ଯ୍ୟନ୍ତ ଦରକାର ହୋଇ ନଥିଲା। ଏବେ ଗୁରିଆଡ଼େ କଳାମୁଗୁନି ଗୋଟି ବିଛାଇ ଯେଉଁ ସଡ଼କ ତିଆରି ହେଉଛି, ତାହା ପବନ-ଟ୍ୟୁବ ରବର ଚକକୁ ପାଏ ସିନା, ରକ୍ତମାଂସର ଖଣ୍ଡଖୁରା ତାକୁ ସମ୍ଭାଳୁଛି କେତେବେ ? ସଡ଼କ ଦାଢ଼ର ମାଟି ଢେକା ଉପରେ ଗୁଲିବାକୁ ସେ ଷଣ୍ଢକୁ ଯେତେ ଅଡ଼ଉଥାନ୍ତି, ସଡ଼କ ମଝିର ମସୃଣ ଚଟାଣ ତାକୁ ସେତିକି ପ୍ରଲୋଭିତ କରୁଥାଏ। ଆଧୁନିକତାର ଆକର୍ଷଣ ଆଗରେ ପରମ୍ପରାର ତାଡ଼ନା ନିଷ୍ଫଳ ହେଲା। ନିକଟବର୍ତ୍ତୀ ଗାଁ ଭିତରକୁ ମହାଦେବ ପଶିଲେ, କମାରଶାଳ ଖୋଜି, ହେଲେ ନାଲର ଯୋଗାଡ଼ କରିବାକୁ।

ସେତେବେଳକୁ ରାତି ଅଧ। ହେଲେ, ଗାଁ ମଝି ସଡ଼କ, ଇଲେକ୍‌ଟ୍ରିକ୍ ଆଲୁଅରେ ଦିନପରି ଉଜ୍ଜ୍ୱଳ ଦିଶୁଥାଏ। ଗୋଟିଏ ଘର ଭିତରେ ମଧ୍ୟ ଦୁଇଟା

ଡେଜସ୍ଥର ଆଲୁଅ ଜଳୁଥାଏ । ସେଇଠାରେ ମଣିଷ ଚେଇଁଥିବେ ବୋଲି ମହାଦେବ ସେଇ ଦୁଆର ମୁହଁରେ ଡାକଲେ । ବହୁତ ଡକାଡକରେ ବାରଣ୍ଡାର ଗୋଟିଏ ଅନ୍ଧାରିଆ କୋଣରୁ ଜଣେ ଲୋକ ମୋଡ଼ିଭାଡ଼ି ହୋଇ ଉଠି ଘୋର ବିରକ୍ତିରେ ମହାଦେବଙ୍କ ପାଖକୁ ଆସି, ତାର ନିଦ୍ରାଭଙ୍ଗ ପାଇଁ କୈଫିୟତ୍ ମାଗିଲା । ଆଲୁଅ ଜାଳି ଏତେ ନିଘୋଡ଼ ନିଦ କାହିଁକି ଶୋଇଛ ବୋଲି ମହାଦେବ ପଚାରିବାରେ ସେ ଧୈର୍ଯ୍ୟ ହରାଇ ପାଟିକଲା, ଆଲୁଅରେ ତୁମକୁ ନିଦ ହେଉ ନଥିବ, ମୁଁ କିନ୍ତୁ ସ୍ତ୍ରୀ'ଠାରୁ ଆହୁରି ଟାଣୁଆ ଆଲୁଅରେ ଶୋଇ ପାରେ । ଏଇ କଥା ପଚାରିବାକୁ ମୋତେ ଏତେ ରାତିରେ ଉଠାଇଲ କାହିଁକି ?"

ମହାଦେବ ନିଜର ପ୍ରୟୋଜନ ଜଣାଇବାରେ ସେ କହିଲା, "ସରକାର ଏବେ ନୂଆ ଶିଳ୍ପଶାଳା ଖୋଲିଛନ୍ତି । କମାରଶାଳ ବି ଏଥିରେ ଅଛି । ଦିନ ଦଶଟାବେଳେ ଖୋଲେ, ସନ୍ଧ୍ୟା ପାଞ୍ଚଟାରେ ବନ୍ଦ ହୁଏ । ତା'ର ଭିତରେ ଆସିଲେ ବାବୁଙ୍କ ସଙ୍ଗେ ଦେଖାହେବ । ତମର ଯଦି ଲୁହା ଚୌକି ବା ଆଲମାରି ବା ତାଲା ଦରକାର, ତେବେ ବରାଦ କଲେ, ମାସ ଗୋଟାଏ ଦୁଇଟାରେ ତିଆରି ହୋଇପାରିବ, କିନ୍ତୁ ଏଠି ନାଲ ମିଳିବ ନାହିଁ, କି ଗୃଷ ଲୁହା ପଜିଆ ହୁଏ ନାହିଁ ।" ଏତିକି କହି ଆଖି ମୁଜି ମୁଜି ସେ ଶେଯ ଧରିବାକୁ ଯାଉ ଯାଉ କହିଲା, 'ଏ ମଫସଲିଆ ଲୋକଗୁଡ଼ାଙ୍କର କେତେଦିନରେ ବୁଦ୍ଧି ହେବ କେଜାଣି ? ବାବୁମାନେ କାରିଗର ଶିଖୁଥିବା ଇସ୍କୁଲରେ ନାଲ ଖୋଜୁଛନ୍ତି ; ଗୃଷଲୁହା, କଣ୍ଟିର କୁରାଡି ପଜେଇବାକୁ ଆଶୁଛନ୍ତି !'

'ଏ କାମ ଆଉ କେଉଁଠି ହୁଏ' ବୋଲି ପଚାରିଲା ବେଳକୁ ଜଗୁଆଳି ତା ଶେଯ ଧରିଥାଏ । ସେଇଠାରୁ କହିଲା, "ଏ ଗାଁରେ ଆଉ ସେ କାମ ହେଉ ନାହିଁ । ନାଲ ପାଇଁ ଦିନଟିଏ ନିକମା ହେବ ଯେବେ କାଲି ସକାଳୁ ଗୋରୁ ନେଇ କଟଣି ଯାଅଭାରି । ଏ ଗାଁରେ ଗୋଟେ କମାରଶାଳ ଥିଲା । ମହାରଣାର ପୁଅ ମାଇପ ମଲାଦିନୁ ସେ ଶାଳ ବନ୍ଦ କରି ଦେଲାଣି ।'' ଆହୁରି ପଚାରିବାରେ ସେ ଅତି ବିରକ୍ତିରେ କହିଲା, "ଗାଁ ମୁଣ୍ଡେ ଯେଉଁ ଭଙ୍ଗା କୁଡ଼ିଆ, ମହାରଣାର

ଘର ସେଇଠି । ଯାଅ, ଯାଅ, ସେ ତ ଗୃହିଁ କରି ବସିଛୁ, ଏଇଲେ ଶାଳ କରି ତମ ଗୋଡ଼ରେ ନାଲ ବାଡ଼େଇ ଦେବ ! ଆଉ ଯଦେ ଯଦ କହିବ, ତେବେ ଦେଖ ଏ କପିଲାସ ଠେଙ୍ଗା । ଏକା ପାହାରକେ ମାସେ ଉଠିପାରିବ ନାହିଁ ।”

ଏ ସ୍ଥାନରେ ମହାଦେବଙ୍କର ଆଉ ରହିବା ଦରକାର ନଥିଲା । ଖବର ଦେଇଥିବାରୁ ଜଗୁଆଳକୁ ଧନ୍ୟବାଦ ଦେଇ ସେ ଗାଁମୁଣ୍ଡକୁ ସଳଖିଲେ । ଦୈବାତ୍ କମାର ବୁଢ଼ା ବାହାରପାଣି ଯିବାକୁ ଉଠୁଥାଏ । ତା'ର ଗ୍ରହଣୀରୋଗ । ବୁଢ଼ା ପାଣି ସାରି ଦାଣ୍ଡଦୁଆରେ ବସି ପିକାରେ ନିଆଁ ଧରାଉ ଧରାଉ ପଚାରିଲା, “କିଓ, ମିଆଁ ସାହେବ ! ଏତେ ରାତିରେ ମୋ ପାଖରେ କ'ଣ କାମ ? ଏ ଷଣ୍ଢଟା କ'ଣ ପଶୁଚିକିତ୍ସାବାଲାଙ୍କଠାରୁ ଆଣିଲ ? ଭଲ ଗୋ-ମଙ୍ଗଳ କରୁଛନ୍ତି ! ଷଣ୍ଢଗୁଡ଼ାକ ଧରାଣ କରି ମୂର୍ଖମାନଙ୍କୁ ବାଣ୍ଟି ଦେଉଛନ୍ତି । ଆପତ୍ତି କଲେ ମୂର୍ଖ ବୋଲି ଗାଳି ଦେଉଛନ୍ତି ।”

ମହାଦେବ ବୁଝାଇବାକୁ ବହୁତ ଚେଷ୍ଟାକଲେ ଯେ, ସେ ମିଆଁ ନୁହନ୍ତି-କ ମୂର୍ଖ ନୁହନ୍ତି, ଷଣ୍ଢ ମଧ୍ୟ ଧରାଣ ହୋଇନାହିଁ, ଯଦିଓ ସେ ଆଜନ୍ମ ବ୍ରହ୍ମଚାରୀ । ବୁଢ଼ା ବୁଝିବାକୁ ନାରାଜ । ଷଣ୍ଢ ଗୋଡ଼ରେ ନାଲ ମାରିବା କଥା ଶୁଣି ସେ ତାଚ୍ଛଲ୍ୟରେ ହସି କହିଲା, “ହଇହେ ! ତମେ ମୂର୍ଖ ନ ହେଲେ କ'ଣ ହେଲ, ଷଣ୍ଢ ତ ବୋଲୁଛ ! ମିଆଁଙ୍କ ଗ୍ରାଜ ଷଣ୍ଢ ବୋଲୁଛି କିଏ ? ଆମ ଲୋକେ ଯେତେ ଧର୍ମ ଛାଡ଼ିଲେ ହେଲେ କ'ଣ ହେବ, ଷଣ୍ଢ ଧରାଣ ସିନା କରୁଛନ୍ତି, ବୋଲିବାର ଭଲ ଶୁଣିଲଣି ?”

ମହାଦେବ କହିଲେ, “ଯେ ଧର୍ମ ଛାଡ଼ୁଛନ୍ତି ସେ ତ ଓଁପରମୁହାଁ ହେଉଛନ୍ତି ; ପ୍ୟାଣ୍ଟ ସିନା ପିନ୍ଧିବେ, ମଟର ଚଢ଼ିବେ, କଣ୍ଟିରେ ହାତ ଦେବାକୁ ଖସିବେ କାହିଁକି ଯେ ଷଣ୍ଢ ବୋଲିବା ଦେଖିବ ? ସେ କଥାଗୁଡ଼ାକରେ କ'ଣ ଅଛି ? ମୁଁ ନିଜେ ମହାଦେବ । ରାତି ପାହିବା ପୂର୍ବରୁ ନାଲ ଦି'ପଟା ମୋ ପାଇଁ କରିଦିଅ । ଦିନ ହେଲେ, ମୋତେ ଲୋକେ ଦେଖିଲେ ବାରି ହାନିଅବସ୍ଥା କରିବେ । ତୁମେ ଯାହା ମାଗିବ ତା' ଦେବି ।”

ବୁଢ଼ା ବିଗିଡ଼ିଯାଇ କହିଲା, "ତମ ହବରୁ ମୁଣ୍ଡରୁ ତୁମ ଦାତାପଣିଆ ଜଣା ପଡ଼ୁଛି । ମହାଦେବ ଷଣ୍ଢ ବୁହାନ୍ତି ବୋଲି କ'ଣ ଇମିତି ଷଣ୍ଢ ଗୋଡ଼ରେ ନାଲ ବାଡ଼େଇବାକୁ ବୁଲୁଥାନ୍ତି ? ଯାହା କହିଲ, ସେଥିରେ କ'ଣ ଅଛି ? ତମ ଧର୍ମ ତମକୁ ଖାଇବ । ଯେତେ ଯାହା ଦିଅ, ମୁଁ ଗୃରବର୍ଷ ହେଲା ଶାଳ ଭାଙ୍ଗି ଲଣି । ଘରଯାକ ଓଲେଇଲେ ବି ରତିଏ ଲୁହା ମିଳିବ ନାହିଁ । କୋଇଲା ନାହିଁ, ଭାତ ନାହିଁ, ନେହିଟା କୁଆଡ଼େ ପଡ଼ିଥିବ । ଲୁହା ଘରେ ନାହିଁ । ହେଲେ ବୁଢ଼ୀର ଆଠଣି ମାଳଟେ ଥିଲା, ସେଥିରୁ ଦି'ଟା ଭାଙ୍ଗି ନାଲ ଯୋଡ଼ାଏ କରି ଦିଅନ୍ତି, ଦି' ଗୃରଦିନ ଚଳାଯା'ନ୍ତା, ତମ ସୁବିଧାରେ ତମେ ପୁଣି ଲୁହା ନାଲ କରାନ୍ତ, କିନ୍ତୁ ଏ ଗ୍ରହଣୀ କାଲ କରୁଛି । ଏଇଲେ ପୁଣି ମଡ଼େଇବ ।"

ମହାଦେବ ଆଶ୍ୱାସନା ଦେଲେ, "ଆଉ ସେ ରୋଗ ରହିବ ନାହିଁ ।" ବୁଢ଼ା ଜବାବ କଲା, "ତୁମ କାମ ହେଉ ହେଉ ଯଦି ଆଉ ବାହାରପାଣି ମଡେଇବ ତେବେ କାମ ଯେତିକ ହୋଇଥିବ ସେତିକ ।" ଏ ସର୍ତ୍ତେ ମହାଦେବ ଗ୍ରହଣୀ କଣବାରେ ବାଧା ବା କ'ଣ ? ବୁଢ଼ା ଲାଗିପଡ଼ି କୁଆଁ ତାରା ଉଇଁଲାବେଳକୁ ଷଣ୍ଢ ଗୋଡ଼ରେ ନାଲ ଦି'ପଟ ବାଡ଼େଇ ଦେଲା ।

ଷଣ୍ଢ ବର୍ଣ୍ଣକୁ ନାଲର ବର୍ଣ୍ଣ ଏକା ହୋଇଯିବାରୁ ମହାଦେବଙ୍କର ଭାରି ସନ୍ତୋଷ । ସେ କହିଲେ, "ମହାରଣେ ! ବଡ଼ କାମଟାଏ କଲ । ଏମିତି ଉଦ୍ୟମ ହୁଅନ୍ତା କି, ଦେଶରେ ସୁନା ଫଳନ୍ତା । ତୁମ ଉପରେ ମୋର ଭାରି ସନ୍ତୋଷ । କ'ଣ ବର ମାଗିବ ମାଗ ।"

ମହାରଣା କହିଲା, "ଜାଣିଲ ମିଆଁ, ଷଣ୍ଢ ଗୋଡ଼ରେ ନାଲ ବାଡ଼େଇବା ଅଧର୍ମ କାମ । ତମେ ଗୁଡ଼ାଏ ଲଗାଇବାରୁ କଲି । ଏ ପାପ ତମେ ମୁଣ୍ଡେଇବ । କଳିଯୁଗରେ ଯେ ପାପ କରେ ଓ କରାଏ ତା'ର ପାତକ । ଆଉ ଏଥିପାଇଁ ମାଗିବି କ'ଣ ? ବୁଢ଼ୀ ଥିଲେ ତା' ମାଳ ଛୁଆଁଇ ଦେଇ ନଥାନ୍ତା । ସେ ତ ଗଲାଣି । ଆଠଣି ମାଳ ପିନ୍ଧିବାକୁ ମୋ ବଂଶରେ କେହି ନାହିଁ, କି ବନ୍ଧୁବାନ୍ଧବରେ କେହି ନାହିଁ । ଥିଲେ ଅବା କ'ଣ ଏ ପୁରୁଣାକାଳିଆ ଅଲଙ୍କାର ପିନ୍ଧନ୍ତେ । ତମେ ତମ ବାଟରେ ଯାଅ । ଏତେବେଳ ବାହାରପାଣି ମଡ଼େଇଲା ନାହିଁ, ତମରି କଥାରେ । ମୁଁ ଖୁବ୍ ପାଇଲି, ଆଉ ମୋର କିଛି ଦରକାର ନାହିଁ ।"

ମହାଦେବ ବଲେଇଲେ । ବୁଢ଼ାର ଗୋଟାଏ ମାଗୁଣି ମନେ ପଡ଼ିଗଲା । ସେ କହିଲା, "ଜାଣିଲ ମିଆଁ, ତମେ ତ ପୀର କି ପୟଗମ୍ବର । ତୁମ କଥା ଫଳୁଛି । ଯଦି ପାରିବ, ମୋର ଗୋଟିଏ କାମ କର । ମୋ ବାଡ଼ିଆଡ଼େ ଗୋଟିଏ ପିଜୁଳି ଗଛ ଅଛି । ବନାରସି ପିଜୁଳି । ପାଚିଲା ଯାଏଁ ରହିଲା ବୋଇଲେ ତାକୁ ବିକି ଗୃହିଳି କିଣନ୍ତି । ଜାଣିଲ ମିଆଁ ସାହେବ, ପେଟରେ ଦାନା ପଡ଼ନ୍ତା ବୋଇଲେ ମୋର ରୋଗ ରହନ୍ତା ନାହିଁ । ଡାକ୍ତରଗୁଡ଼ାକ ଓଷୁଧ ଦେଇ ପଇସା ଟାଣି ନେଉଛନ୍ତି ଯେ, ପଥିକୁ ପଇସା ରହୁନାହିଁ, ଓଷୁଧ ଗୁଣ କରିବ କେମିତି ? ଯଦି ତୁମକୁ କିଛି ଇଲମ ଜଣା, କରି ଦିଅନ୍ତ କି, ଯେ ମୋ ପିଜୁଳି ଗଛରେ ଚଢ଼ନ୍ତା ସେ ମୁଁ ନ କହିଲେ ଓହ୍ଲେଇ ପାରନ୍ତା ନାହିଁ । ତେବେ ଏ ଛତରା ପିଲାଗୁଡ଼ାଙ୍କୁ ମୁଁ ଠିକଣା କରନ୍ତି । ପିଜୁଳିଗୁଡ଼ାକ କଷିରୁ ଆଉ ରେକେଟି ଦେଇ ପାରନ୍ତେ ନାହିଁ । ପାଚିଲେ ସେଥିରୁ ମୁଁ ଦି' ପଇସା ଭିଆନ୍ତି ।"

ମହାଦେବ ତଥାସ୍ତୁ ବୋଲି କହି, ଷଣ୍ଢରେ ବସି ଅନ୍ତର୍ଦ୍ଧାନ ହୋଇଗଲେ । ବୁଢ଼ା ଏ ଘଟଣା ଦେଖି ମହାଦେବଙ୍କୁ ମିଆଁ ପୁଅ ବୋଲି କହିଥିବା ହେତୁରୁ ଅନୁତପ୍ତ ହେଲା ଓ କତରା ମୂଳେ ମୁଣ୍ଡି ଆଟିଏ ମାରି ମହାଦେବଙ୍କ ବର କପରି ଫଳିବ, କାଲି ସକାଳୁ ଦେଖିବାକୁ ବଗୃର ବଗୃର ଶୋଇପଡ଼ିଲା ଯେ, ଉଠିଲା ବେଳକୁ ବେଳ ପହରେ । ବାଡ଼ିଆଡେ ହୋହା ନ ଶୁଭିଥିଲେ ବୁଢ଼ା ଆଉ ଶୋଇଥାନ୍ତା ।

ଝଟକିନ ବାଡ଼ି ଦୁଆର ଫିଟାଇ ଦେଖିଲାବେଳକୁ, ପିଜୁଳି ଗଛରେ ପିଜୁଳି ଯେତିକ ପିଲା ସେତିକ, କେହି ଓହ୍ଲେଇ ପାରୁନାହାନ୍ତି । କେତେ ଜଣଙ୍କ ମା'ମାନେ ମଧ୍ୟ ଆସି ଗଛମୂଳରେ କାଉକାଉ ଲଗାଇଲେଣି । ବୁଢ଼ା ଗୋଟି ଗୋଟି କରି ସବୁ ପିଲାଙ୍କୁ ତଳକୁ ଡାକି ପ୍ରତ୍ୟେକଙ୍କୁ ଦୁଇଟି ଲେଖାଏଁ କାନମୋଡ଼ା ଓ ଗୃପୁଡ଼ା ଦେଇ ବିଦା କଲା । କହିଲା, "ଆଉ ଯେବେ ଆସିବ ତେବେ ଆହୁରି ଟାଣ ଓଷୁଧ ଦେବି ।" କହିବା ନିଷ୍ପ୍ରୟୋଜନ ଯେ, ପିଜୁଳି ଗଛରେ ଆଉ ବାଦୁଡ଼ି ବି ବସିଲେ ନାହିଁ । ଟହଟହ ପାଚିବାଯାଏ ପିଜୁଳି ଥାଏ । ବେପାରୀ ଆସି ଗଛମୂଳରୁ ନେଇଯାନ୍ତି । ବୁଢ଼ାର ଦି'ଓଳି ଚୁଲି ଜଳିଲା । ତା'ର ଚେହେରା ବି ଟିକିଏ ବାଗେଇ ଯାଇଥାଏ ।

( ୨ )

ଏ ଘଟଣାର ପ୍ରାୟ ଣ୍ଟ୍ରମାସ ପରେ— । ଶୀତ ଦିନ । ବୁଢ଼ାର କୋଠା ଗରମ ହୋଇଥିବାରୁ ମନ କରିଥାଏ, ତବତ ଭାତରେ ପାଣି ପୂରେଇ, ବାଇଗଣ ପୋଡ଼ା ସାଙ୍ଗରେ ପଥ କରିବ । ପୁରୁଣା ଗୁଡ଼ାଳ ପୁଞ୍ଜିଏ ଚୂଲି ଉପରେ ଫୁଟୁଥାଏ, କଅଁଳିଆ ବାଇଗଣଟିଏ ଚୂଲିରେ ପଡ଼ିଥାଏ, ବୁଢ଼ା ଚୁଲିମୁଣ୍ଡରେ କତରାଖଣ୍ଡେ ପକେଇ ପଡ଼ିଥାଏ । ଏଇ ସମୟରେ ଦାଣ୍ଡ-ଦୁଆରେ କେହି ବାଡ଼େଇବାର ଶୁଭିଲା । ବୁଢ଼ା ଟିକିଏ ଗାମେଇ କରି ରହିଲା । ଦୁଆର ବାଡ଼ିଆ ବନ୍ଦ ନ ହେବାରୁ, ଦୁଆର ଲୋଭରେ ବାଧ୍ୟ ହୋଇ ଯାଇ ଦୁଆର ଫିଟାଇ ଦେଖେ ତ, ସ୍ୱୟଂ ଯମରାଜ ଠିଆହୋଇଛନ୍ତି । କାନ୍ଧରେ ବଡ଼ାଏ ଦଉଡ଼ି, ଦାଣ୍ଡ ମଝିରେ ମଇଁଷିଟା ଠିଆ ହୋଇଛି । ବୁଢ଼ା ଅତିଥିଙ୍କୁ ଘରକୁ ଡାକି ଜିଜ୍ଞାସୁ ହୋଇ ଗୁହିଁରହିଲା ।

ଯମରାଜ କହିଲେ, "ବୁଢ଼ା, ଆସ ! ତମର ତାରିଖ ହୋଇଗଲା । ତୁମେ ଜଣେ ଭଲ ଲୋକ ବୋଲି ଆମ ରେକର୍ଡ଼ରେ ବାହାରିବାରୁ ମୁଁ ନିଜେ ତୁମକୁ ନେବାକୁ ଆସିଲି । ତୁମର କାଳ ପୂରିବାକୁ ହେଉଛି ଆଉ ଦୁଇ ମିନିଟ ୨୪ ସେକଣ୍ଡ ବାକି ।

ବୁଢ଼ା ହାତଯୋଡ଼ି କହିଲା, "ମହାପ୍ରଭୁ ! ମୁଁ ତ ପ୍ରତିଦିନ ଆପଣଙ୍କୁ ଲୋଡ଼େ । ବୁଢ଼ୀ ଗଲା, ତିନି ପୁଅ, ତିନି ବୋହୂ, ଦଶପନ୍ଦର ନାତିନାତୁଣୀ ସମସ୍ତେ ଗଲେ । ମତେ କାହିଁକି ନେଉନାହାନ୍ତି ବୋଲି ତ ମୁଁ ଆପଣଙ୍କୁ ଦୋଷ ଦିଏ । ମୁଁ ସାଙ୍ଗେ ସାଙ୍ଗେ ବାହାରିବାକୁ ତିଆରି । ଖାଲି ଏତିକି—ଭାତପୁଞ୍ଜାକ ଆସି ହୋଇଗଲାଣି, ବାଇଗଣଟା ବି ବାରପଣ ସିଝିଗଲାଣି । ଭାତ ଗାଳି ପାଣି ମୁନ୍ଦେ ପୂରେଇ ବାଇଗଣ ପୋଡ଼ା ଯୋଡ଼ାଏ ପଥ କଲେ, ମୁଁ ବାହାରିପଡ଼ିବ । ଆପଣ ଟିକିଏ ସତାରନ୍ତୁ ।"

ଯମରାଜ କୁହୁ କୁହୁ ହେଲେ । ବୁଢ଼ା କହିଲା, "ଆଜ୍ଞା, ଆଜିକାଲି ଯେଉଁ ଜଜ୍ ଓ ହାକିମମାନେ ମର୍ତ୍ତ୍ୟରେ ଆପଣଙ୍କ କାମ କରୁଛନ୍ତି, ସେମାନେ ମଣିଷକୁ ଫାସି ଖୁଣ୍ଟରେ ଚଢ଼ାଇବା ଆଗରୁ ଶେଷ ଇଚ୍ଛା କ'ଣ ବୋଲି

ବିଚାରନ୍ତୁ । ଆପଣ ଧର୍ମରାଜ—ଟିକିଏ ବିଚାର ନ କଲେ ହେବ ? ମୋର ଦିନ ଦିନ ହେଲା ପେଟ ଗରମ । ପୁଣି ଏ ସରଦ ଗରମ କରି ପଥ୍ୟ କଲେ ଆପଣଙ୍କ ସଙ୍ଗେ ଆନନ୍ଦରେ ଯିବ । କୁନ୍ଥୁ କୁନ୍ଥୁ ହେଉଛନ୍ତ କାହିଁକି ?"

ଯମରାଜ ଏ କଥାର ଯୁକ୍ତିଯୁକ୍ତତା ବୁଝିଲେ । କିନ୍ତୁ ଏତେବେଳ ସେ କରିବେ କ'ଣ ? ତାଙ୍କର ତ ସବୁବେଳେ କାମ । ମୁହୂର୍ତ୍ତେ ଛୁଟି ନେବାର ଯୁ' ନାହିଁ । ଅନନ୍ତ କାଳରୁ ସେ ଚାକର କଲେଣି, ଦିନେ କ୍ୟାଜୁଏଲ ଛୁଟି ବି ନେଇ ନାହାନ୍ତି ! ବୁଢ଼ାକୁ ସେ ନିଜର ଅସୁବିଧା ଦର୍ଶାଇଲେ ।

ବୁଢ଼ା କହିଲା, "ଆଜ୍ଞା, ଆପଣ ଖାଲି ମୋ ଭାତ ହାଣ୍ଡିକୁ ଚାହିଁ ଠିଆ ହୋଇଥାନ୍ତୁ ବୋଲି ତ ମୁଁ କହୁନାହିଁ । ମୋ ବାଡ଼ିଆଡ଼େ ଅସଲ ବନାରସି ପିଜୁଳି ପାଚିଛି । ଆପଣ ଗଛରେ ଚଢ଼ି ଗୋଟାଏ ଯୋଡ଼ାଏ ଚାଖୁଥାନ୍ତୁ । ମୁଁ ଚଟାପଟ କାମ ସାରିଦେଉଛି । ହେଇଟି ଦେଖନ୍ତୁ, ହାଣ୍ଡିରେ ଭାତ ଲେଉଟିଲଣି । ମୋ ଆଡୁ ଆଉ ବେଶୀ ବିଳମ୍ବ ହେବ ନାହିଁ ।"

ଏ ଅଦ୍ଭୁତ ଅନୁରୋଧ ଶୁଣି ଯମରାଜ ବିସ୍ମିତ ଓ ଆନନ୍ଦିତ ହେଲେ । ତାଙ୍କ ଚାକିରି କାଳ ଭିତରେ କେତେ ଲୋକଙ୍କୁ ସେ ନେଲେଣି । କେହି ତାଙ୍କ ଆଡ଼କୁ ସନ୍ତୋଷରେ ବି ଥରେ ଚାହିଁ ନାହାନ୍ତି । ବୁଢ଼ାର କି ଅମାୟିକ ବ୍ୟବହାର ! ପାଚିଲା ପିଜୁଳିର ସ୍ୱାଦ ବାରିବାକୁ ବି ତାଙ୍କର ଟିକିଏ ଆଗ୍ରହ ହେଲା । ସେ ଶୁଣିଛନ୍ତି, ବନାରସ ଆଡ଼େ ଏ ଫଳକୁ ଅମୃତ ବୋଲି କହନ୍ତି । ସ୍ୱର୍ଗର ଅମୃତ ଓ ଏ ଅମୃତର ତୁଳନାତ୍ମକ ବିଚାର କରିବାକୁ ସେ ବୁଢ଼ାର ନିମନ୍ତ୍ରଣ ରକ୍ଷାକଲେ । ବୁଢ଼ା ବାଡ଼ିଦୁଆର ଫିଟାଇ ତାଙ୍କୁ ଗଛମୂଳକୁ ନେଇଗଲା । ଯମରାଜ ଗଛରେ ଚଢ଼ୁଚଢ଼ୁ କହିଲେ, "ବୁଢ଼ା ! ମୁଁ ବାରଦୁଆରିଆ ଲୋକ । ବେଶୀ ବିଳମ୍ବ ନ କର ଆସଭାର ।" ବୁଢ଼ା କହିଲା, "ଆଜ୍ଞା, ମୋ କାମ ସରିଲା ବୋଲି ଜାଣନ୍ତୁ ।"

ଯମଙ୍କୁ ଗୁଡ଼ାଏ ସମୟ ଅଟକାଇବ ନାହିଁ ବୋଲି ବୁଢ଼ା ତରତର ହୋଇ ପଥ୍ୟ ସାରିଦେଲା । ଶେଷ ଥର ବୋଲି ଦି'ଗୁଣ୍ଡା ବଳେଇ ବଳେଇ ଖାଇଲା । ଖାଇ ସାରିଲା ପରେ ଆସକତ ଲାଗିବାରୁ ସେଇ ଚୁଲି ମୁଣ୍ଡେ କତରା ଖଣ୍ଡେ

ଲମ୍ଭେଇ ଦେଇ ଜାକଜୁକ ହୋଇ ପଡ଼ିଗଲା । ନନ୍ଦ ଭଜନଲାବେଲାକୁ ଗ୍ଲୁଇ ଲେଉଟି ଗଲାଣି ।

ଯମରାଜ ଭାରି ବିରକ୍ତ ହେଉଥିବେ ବୋଲି ଅନୁତାପରେ ଜଡ଼ସଡ଼ ହୋଇ ସେ ତରତରରେ ବାଡ଼ଦୁଆର ଫିଟାଇ ପିଜୁଳି ଗଛଆଡ଼େ ଗ୍ଲୁହିଁ ଦେଇ କାବାକାଠ । ଯମରାଜ ଓହ୍ଲାଇବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାନ୍ତି । ବହୁ ସାଧ ସାଧନାରେ ଗଛର ଗଣ୍ଡି ପର୍ଯ୍ୟନ୍ତ ଆସୁଥାନ୍ତି । ପୁଣି କ'ଣ ହେଉଥାଏ, ସଟ୍‌କିନା ଯାଇ ଗଛ ମଝିରେ ହାଜର । ମହାଦେବଙ୍କ ଆଜ୍ଞା ତେବେ ଯମରାଜଙ୍କୁ ବ କାଟୁଛି ! ବୁଢ଼ା ଦେଖିଲା, ଗାଁ ପିଲାଙ୍କର ଯେଉଁ ଅବସ୍ଥା, ଯମରାଜଙ୍କ ସେଇ ଅବସ୍ଥା ! ସେ କାଳ ବିଳମ୍ବ ନ କରି ବାଡ଼ ଦୁଆରଟି ଭଲ କରି କିଳିଦେଇ ଘର ଭିତରେ ପଶିଲା । ବାହାରକୁ ଗଲେ ସିନା ଯମଙ୍କ ସଙ୍ଗେ ଦେଖାହେବ, ତାଙ୍କ ଦୁଃଖ ଦେଖି ଓହ୍ଲାଇବାକୁ କହିବାକୁ କେଜାଣି ବା ମନ ହେବ । ସେ ଆଡ଼କୁ ନ ଗ୍ଲୁହିଁଲେ ଗଲା ।

ମୃତ୍ୟୁ ପାଇଁ ତା'ର ଯେଉଁ ଆକାଂକ୍ଷା ଥିଲା ତାହା ହଠାତ୍ ଲୋପ ହୋଇ ଗଲା । ଜଣେ କଟକିଆ ବାବୁ ହାବୁଡ଼ିଲେ ଯେ, ବାଡଆଡ଼େ ଭଲ ବାଡ଼ କରାଇ ଦେଲେ, ଫାଣୁଆ ଗେଟ୍ ଲଗାଇ ଦେଲେ, ଦୁଇପଇସିଆ ଟିକଟ ଗୁଡ଼ାଏ ଛପାଇ ଦେଲେ ।—

ଆସନ୍ତୁ··· ଦେଖନ୍ତୁ
ପିଜୁଳି ଗଛରେ ଯମରାଜ !
ପ୍ରବେଶ ମୂଲ୍ୟ ଦୁଇ ପଇସା ( ତିନ ନୂଆପଇସା )

ଏଇ ମର୍ମରେ ପାଞ୍ଚ ସାତ ପ୍ରକାର ହ୍ୟାଣ୍ଡ୍‌ବିଲ ଛପା ହେଲା । କବିମାନେ ୪ ପଇସିଆ ବହି ଲେଖି ହାର୍‌ମୋନିୟମରେ ଗୀତ ଗାଇ ଗାଇ ବହି ବିକି ଦ୍' ପଇସା କଲେ । ଜଣେ ବେକାର ବୃଦ୍ଧ ସେ ଗାଁରେ ଗୋଟିଏ ଛୋଟିଆ ଛାପାଖାନା ବ ଆରମ୍ଭ କରିଦେଲେ । ଗାଁର ସବୁ ପିଲାମାନଙ୍କ ମୁହଁରେ ଗୀତ । ପୋଖରୀ ତୁଠରେ, ଖେଳପଡ଼ିଆରେ, ଶେଯରେ ବିଲବିଲେଇ ଗାଇଲେ—

ଆସ ଭାଇ ଆସ ଦେଖି, ରସ, ହସ
ପିଜୁଳି ଗଛରେ ଯମ ।
ପାଚି ନାଲଗୁରେ ପଥ ଭୁଲିବାରେ
ଠୁକନ୍ତୁ ନିଜ କରମ ॥

ବହୁତ ପଇସାର କାରବାର ହେଉଥାଏ । କଟକିଆ ବାବୁ ଖୁବ୍ ହାତ ସଫେଇ କରୁଛନ୍ତି, ବୁଢ଼ା ଶୁଣେ । କିନ୍ତୁ କାହାକୁ କିଛି କହେ ନାହିଁ, କି ମନ ବିରକ୍ତ କରେ ନାହିଁ । ତାକୁ କଟକିଆ ବାବୁ ଯେଉଁ ଟଙ୍କା କୋଡ଼ିଏଟି ସପ୍ତାକୁ ଦେଇ ଦିଅନ୍ତି ସେ ତାକୁ ଯଥେଷ୍ଟ । ଫସଲ ଉଠିଲା ପରେ, ଲକ୍ଷେ ଇଟା ପୋଡ଼ାଇବାକୁ ସେ ବଇନା ଦେଇ ସାରିଲାଣି । ପ୍ରତିଦିନ ସକାଳୁ, ଘରଠାରୁ କୋଶେ ବାଟରେ ଥିବା ସୋମନାଥ ମନ୍ଦିରରେ ପାଦୁକ ପାଇବାକୁ ଯାଏ । ସବୁ ଦିନ ଏକ ମାଗୁଣି—ମହାପ୍ରଭୁ ! ଗଛର ଡାଳ ନ ଭାଙ୍ଗୁ । ଯମରାଜ ସବଂଶୁଭରେ ଆଉ ଦିନ କେତେଟା ରହିଥାନ୍ତୁ । କୋଠା ଘର ବଖରା କରି ଦେବି, କୂଳ ରଖିବାକୁ ଗୋଟିଏ କାହାକୁ ପୁଅ କରି, ବାହାଥୁଆ କରିଦେବି, ତା'ର ଚଳାଚଳ ପାଇଁ ଜମି ବାର ବାଟି କିଣିଦେବି, ଟଙ୍କା ପାଞ୍ଚ ସାତ ହଜାର ପୋଷ୍ଟ ଅଫିସରେ ଜମାଇ ଦେବି ; ତା'ପରେ ଯାହା ହେବାର ହେଉ ।"

ଘଣ୍ଟଣା ଯେପରି ଗତି କରୁଥାଏ, ଜଣା ପଡ଼ୁଥାଏ, ସୋମନାଥ ଦେବ ବୁଢ଼ାର ଗୁହାରି ମଞ୍ଜୁର କରିଛନ୍ତି ।

( ୩ )

ଯମରାଜ ଯାଇ କମାର ବୁଢ଼ାର ବାଡ଼ିଆଡ଼ ପିଜୁଳି ଗଛରେ ରହିବାର ଛ'ମାସ ହୋଇଗଲା । ଟିକିଟ କରି ଯମଙ୍କୁ ଦେଖାଇବାରେ ସମ୍ପୃକ୍ତ ଲୋକଙ୍କ ବ୍ୟତୀତ, ଆଉ ସମସ୍ତଙ୍କ ଭିତରେ ଘୋର ଅଶାନ୍ତି, ଅସନ୍ତୋଷ ଦେଖାଗଲା । ଯୁଦ୍ଧ ହେଲା ; ବୋମା ପଡ଼ିଲା, ଆଣବିକ ବୋମା ବି ପଡ଼ିଲା—କିନ୍ତୁ କେହି ମଲେ ନାହିଁ । କେହି ନ ମରିବାରୁ କଳିଗୋଳର ନିଷ୍ପତ୍ତି ମଧ୍ୟ ହେଲା ନାହିଁ । ଘର ବାଡ଼ି ସମ୍ପର୍କୀୟ ଫୌଜଦାରି ଠାରୁ ଆରମ୍ଭ କରି ଦେଶ ଦେଶ ଭିତରର ଯୁଦ୍ଧ-ବିଗ୍ରହ ସବୁ ଅମୀମାଂସିତ ରହିଗଲା ।

ବାପ ମରନ୍ତେ, ବାଈସ ଶୁବ ହାତକୁ ଆସନ୍ତା, ସ୍ୱଚ୍ଛନ୍ଦରେ ଖର୍ଚ୍ଚ ବାର୍ଚ୍ଚ କରିବାକୁ ହୁଅନ୍ତା ବୋଲି ଧନୀ ଲୋକଙ୍କ ପିଲେ ଗୃହିଁକରି ବସିଥାନ୍ତି । ଦୁର୍ଭାଗ୍ୟ ରୋଗରେ ପଡ଼ିଥିବା ଲୋକେ ଘଟ ବଦଳାଇବାକୁ ଉତ୍ପିଛୁ ହେଲେ ; ଡାକ୍ତରଖାନାର ମୁର୍ଦ୍ଦାର ବୁହା ଗାଡ଼ି ଅଚଳ ହୋଇ ପଡ଼ିବାରୁ, ରୋଗୀଙ୍କ ପାଇଁ ଖଟିଆ ଅଣ୍ଟିଲା ନାହିଁ ; ବୁଢ଼ାମାନଙ୍କ ଚକାସ୍ତ୍ରା ଓ ପଥିରେ ଏତେ ଔଷଧ, ଦୁଧ ଓ ଫଳମୂଳ ଖର୍ଚ୍ଚ ହେଲା ଯେ ଉଡଆଣି ପିଲା ଭୋକ ଉପାସରେ ଛଟପଟ ହୋଇ କାନ୍ଦ ବୋବାରେ ବାପମା'ଙ୍କୁ ଅଥୟ କରି ପକାଇଲେ । ମୃତ୍ୟୁ-ନିରୋଧ ଗୃଲୁଥିବାଯାକେ ଜନ୍ମନିରୋଧ ଗୃଲୁ ରଖିବାକୁ ପ୍ରଚ୍ୟର ଓ ଔଷଧ ବିତରଣରେ ସରକାରଙ୍କୁ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବାରୁ, ଉନ୍ନୟନ ଯୋଜନାର ବିଭିନ୍ନ ବାବଦ୍ର 'ଖର୍ଚ୍ଚ ବନ୍ଦ ରହି ଖାଲି ଜନ୍ମନିରୋଧ କାର୍ଯ୍ୟ ଗୃଲୁ ରହିଲା । ଯୁଦ୍ଧଖର୍ଚ୍ଚ, ଉନ୍ନୟନ ଖର୍ଚ୍ଚ ସବୁ ବନ୍ଦ ହେବାରୁ ସେ ବିଭାଗରେ ଥିବା କର୍ମଗୃଷ୍ଟମାନେ ଛଟେଇ ଭୟରେ ପ୍ରତିବାଦ ସଭା କଲେ । କଂସେଇଖାନା ବନ୍ଦ ହୋଇଗଲା । ହଣା ହୋଇଥିବା ଗାଈ, ଛେଳି, କୁକୁଡ଼ାର ପ୍ରାଣ ନଯିବାରୁ ଲୋକେ ସେମାନଙ୍କ ଯୋଗୁଁ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଦାଣତୋଠ କାର୍ଯ୍ୟ କରୁଥିବା ଓ ଚୂଡ଼ାଦହି ଖାଉଥିବା ବ୍ରାହ୍ମଣମାନେ ଦେବ ମନ୍ଦିରମାନଙ୍କରେ ଚଣ୍ଡୀ, ବଗଳାମୁଖୀ ବୋଲି, ମଧୁସୂଦନ କୀର୍ତ୍ତିନାଦ କରି ଭଗବାନଙ୍କୁ ଦୁଃଖ ଜଣାଇଲେ ।

ଭଗବାନ ତ ସହଜେ ଟଳନ୍ତି ନାହିଁ । ଅବସ୍ଥା ଏପରି ଗୁରୁତର ହେଲା ଯେ ଶେଷରେ ସେ ଖେଳ ବନ୍ଦ କରି ଏ ବିଷୟରେ ଅନୁସନ୍ଧାନ ଆରମ୍ଭ କଲେ । ଯମରାଜଙ୍କ ଅଫିସରେ କ'ଣ ଗଳତି ହୋଇଛି ବୁଝିବାକୁ ଯେଉଁ ପରିଦର୍ଶକ ପଠାଇଥିଲେ ସେ ଆସି ଖବର ଦେଲା ଯେ ସ୍ୱୟଂ ଯମରାଜ ଛ'ମାସ ହେଲା ନିରୁଦ୍ଦିଷ୍ଟ । ତାଙ୍କ ଖାତାପତ୍ରରୁ ଜଣାଗଲା ପୌଷ କୃଷ୍ଣ ଦ୍ୱିତୀୟା ଦିନ ଅନାମ-ପୁର ଗ୍ରାମର ଅଲେଖ ମହାରଣା କମାରକୁ ଆଣିବା ପାଇଁ ଯମରାଜ ଯାଇଥିଲେ, ଆଉ ଫେରିନାହାନ୍ତି । ଅଲେଖ ମହାରଣା ବି ଆସି ନାହିଁ । ଅନୁସନ୍ଧାନ କରିବାକୁ ବାୟୁ ଦେବତା ସେଠାକୁ ପଠାହେଲେ । ସେ ଛଦ୍ମବେଶରେ ଯାଇ ଯମରାଜଙ୍କ ସଙ୍ଗେ ଦେଖା କଲେ ଓ ଯମରାଜଙ୍କୁ ଉଡ଼ାଇ ଆଣିବାକୁ ଚେଷ୍ଟା କରି ବିଫଳ ହେଲେ । ଭଗବାନ ଏ ସମ୍ବାଦ ଶୁଣି ଚିନ୍ତିତ ହେଲେ, "ସ୍ୱା

ଭିତରେ ନିଶ୍ଚୟ କିଛି ଗୁରୁତର କଥା ଅଛି ।'' ଏହାକୁ ବୁଝିବାକୁ ସେ ସ୍ୱୟଂ ଯଦି ରାତିରେ ପ୍ରଦର୍ଶନୀ ବନ୍ଦ କରି ସମସ୍ତେ ଘରକୁ ଗଲାପରେ, କମାର ବୁଢ଼ାର ବାଡ଼ିଆଡ଼ ପିଜୁଳିଗଛ ମୂଳରେ ଆସି ପହଞ୍ଚିଲେ । ଭଗବାନ ଯମରାଜାଙ୍କୁ ଦେଖି ରାଗରେ ମାର୍‌ନମାର । ଯମରାଜ ତଟସ୍ଥ ହୋଇ ଚୁପ୍ ହୋଇ ରହିଲେ ।

ଭଗବାନ କହିଲେ, "ଏ ନବରଙ୍ଗ କ'ଣ ? ନିଜର କର୍ତ୍ତବ୍ୟ ଭୁଲି ପିଜୁଳି ଖାଇବାକୁ ପିଲାଳିଆ ଆଗ୍ରହ ଦେଖାଇ ତୁମେ ଛ'ମାସ ହେଲା ନିଜେ ଖରାବର୍ଷା ଖାଇ ପଡ଼ିଛ ; ସଂସାର ଆସି ଅଚଳ ଅବସ୍ଥାରେ ପହଞ୍ଚିଲାଣି । ଏହାର କୈଫିୟତ୍ କ'ଣ ଦିଅ ।"

ଯମରାଜ କହିଲେ, "ମହାପ୍ରଭୁ ! ମୋର ଆଉ କୈଫିୟତ୍ କ'ଣ ? ମୋର ଦୀର୍ଘଜୀବନରେ ମୁଁ ଏପରି ଅବିବେଚନା ଆଉ କେବେ ହେଲେ କରିନାହିଁ, ଏହାହିଁ ମୋର ଏକମାତ୍ର ଅର୍ଜି । ଭଗବାନ୍ ! ମୋତେ କ୍ଷମା ଦିଅନ୍ତୁ, ଏ ହଟହଟାରୁ ମୋତେ କୌଣସିମତେ ରକ୍ଷା କରନ୍ତୁ ।"

ଯମଙ୍କ ସରଳ ସ୍ୱୀକାରୋକ୍ତି ଭଗବାନଙ୍କର ମନକୁ ପାଇଲା । ଦୋଷ ପାଇଁ ଦଣ୍ଡଦେବା କଥା ପଛକୁ ରଖି, ଉପସ୍ଥିତ ବିପଦରୁ ଯମଙ୍କୁ ରକ୍ଷା କରିବା ପାଇଁ ସେ ସଚେଷ୍ଟ ହେଲେ । ଧ୍ୟାନରେ ବସି ସେ ଜାଣିଲେ, ମହାଦେବଙ୍କ ବର ଯୋଗୁଁ ଏପରି ହୋଇଛି । ସାଥେସାଥେ ଗରୁଡ଼ ଉପରେ ବସି ସେ ମହାଦେବଙ୍କ ପାଖକୁ ଗଲେ । ମହାଦେବ ସବୁ କଥା ଶୁଣି, ଏ ଘଟଣାରେ ହସ୍ତକ୍ଷେପ କରିବାକୁ ଏକାବେଳକେ ନାସ୍ତି କରିଦେଲେ । କହିଲେ, "ନାରାୟଣ, ଦୁଃଖିକୁ ଅନୁଗ୍ରହ କରିବା, ଦୋଷୀକୁ କ୍ଷମା ଦେବା ଆପଣଙ୍କ କାମ, ମୋର ନୁହେ । ମୁଁ କ୍ଷମା କରିପାରେ ନାହିଁ କି କହିଥିବା କଥାର ଅନ୍ୟଥା କରେ ନାହିଁ । ନିଜର କର୍ତ୍ତବ୍ୟ ଛାଡ଼ି ଯମ ପିଜୁଳି ଖାଇବାକୁ ବସିଲେ ସଂସାର ଚାଲିବ କିମିତି ? ସେ ଧର୍ମରାଜ ହୋଇ ଯଦି ଏପରି କରନ୍ତି, ତେବେ ଆଜିକାଲି ସରକାରୀ କର୍ମଚାରୀ ଓ ମନ୍ତ୍ରୀମାନେ ଲାଞ୍ଚ ଖାଇ ଯେ କଳାକୁ ଧଳା କରୁଛନ୍ତି, ସେଥିରେ ଦୋଷ କ'ଣ ?"

ଭଗବାନ୍ କହିଲେ, "ସେ କଥା ତ ଠିକ୍ । କିନ୍ତୁ ଏହାର ସମାଧାନ କିପରି ହେବ ?"

ମହାଦେବ କହିଲେ, "ସ୍ବାର ସମାଧାନ ଧ୍ୱଂସ । ଯମରାଜ ସେଇ ପିଁଜୁଳ ଗଛରେ ସିମିତ ଥା'ନ୍ତୁ । ନୂଆ ଯମରାଜ ନିଯୁକ୍ତ କରି କାର୍ଯ୍ୟ ଚଳାଅ । ନ ହେଲେ ପ୍ରଳୟ ହେଉ, ପୁଣି ସୃଷ୍ଟି ଆଉଥରେ ଯଥାପୂର୍ବଂ ଗଢ଼ି ଉଠିବ ।" ଭଗବାନ କହିଲେ, "ଏମିତି ସାମାନ୍ୟ ସାମାନ୍ୟ କଥାରେ ଯଦି ପ୍ରଳୟ ହେବ, ତେବେ ତ ସୃଷ୍ଟିର ସତ୍ତା ରହିବ ନାହିଁ !"

ମହାଦେବ ଚିନ୍ତିତ ହେଲେ, କହିଲେ, "ତେବେ ଆପଣ ଯାଇ ସେଇ କମାରକୁ କହନ୍ତୁ, ସେ ଓହ୍ଲାଅ ବୋଲି କହିଲେ, ଯମରାଜ ଓହ୍ଲାଇବେ । ସ୍ବାବାଦ୍ ଆଉ କିଛି ହୋଇ ନପାରେ । ମୁଁ ଦେଇଥିବା ବରକୁ ପ୍ରତ୍ୟାହାର କରି ନପାରେ ।" ଭଗବାନ୍ ଅନନ୍ୟଗତି ହୋଇ ଫେରିଲେ, କମାର ବୁଢ଼ା ପାଖକୁ ।

କମାର ବୁଢ଼ା ସବୁ କଥା ଶୁଣି କହିଲା, "ମହାପ୍ରଭୁ ! ଆପଣ ତ ଦିନରାତି କରୁଛନ୍ତି । ଏକଥା କ'ଣ ଆପଣଙ୍କୁ ପସନ୍ଦ ହେଉଛି ? ଯମରାଜଙ୍କୁ ଓହ୍ଲାଅ ବୋଲି ମୁଁ କହନ୍ତି, କିନ୍ତୁ ମୋ'ଠାରେ ପରା ତାଙ୍କ କାମ ବାକି ଅଛି ! ସେ ତ ଓହ୍ଲାଇବା ମାତ୍ରେ ମୋର ତୋଟି ଧରିବେ 'ଆ କଣ୍ଠଶ୍ୱାସ, ମୋତେ ବାନ୍ଧ' ଅବସ୍ଥା ।"

ଭଗବାନ କହିଲେ, "ଆଚ୍ଛା, ଏପରି ଯଦି ବ୍ୟବସ୍ଥା ହୁଏ ଯେ, ତୁମକୁ ଯମରାଜ ଛୁଇଁ ପାରିବେ ନାହିଁ, ତୁମେ ଚିରଞ୍ଜୀବୀ ହୋଇ ରହିବ, ତେବେ ତୁମର ଆପତ୍ତି କ'ଣ ?"

କମାର କହିଲା, "ମହାପୁରୁ ! ମୋ'ପାଇଁ କ'ଣ ସଂସାରର ନିୟମ ବଦଳି ଯିବ ?"

ଭଗବାନ କହିଲେ, "ନିୟମ ବହୁବାର ବଦଳିଛି । ନିୟମ ରହିଲେ ତାହାର ବ୍ୟତିକ୍ରମ ରଖିବାକୁ ହେବ । ପରଶୁରାମ, ହନୁମାନ, ବିଭୀଷଣ ଏମାନଙ୍କୁ ତ ମୁଁ ଚିରଞ୍ଜୀବୀ କରିଛି । ବିଶ୍ୱର ଉପରେ ନିୟମର ବ୍ୟତିକ୍ରମ ଦରକାର ହେଲେ, କରିବାକୁ ହୁଏ, ଯେପରି ଆଇନକାନୁନମାନଙ୍କର ସଂଶୋଧନ ଏବେ ହେଉଛି । ସେଥିପାଇଁ ତୁମେ ଚିନ୍ତିତ ହେବାର ନାହିଁ । ଯମରାଜ ତୁମର କେଶାଗ୍ର ସ୍ପର୍ଶ କରି ପାରିବେ ନାହିଁ । ତୁମେ ଆସ ତାଙ୍କୁ ଓହ୍ଲାଇବାକୁ କହ ?"

ବୁଢ଼ା ସିମିତି ହାତ ଯୋଡ଼ି କରି ଠିଆ ହୋଇଥାଏ, ଓଁ ନାଇଁ କି ଚୁଁ ନାଇଁ । ଭଗବାନ ଅସନ୍ତୁଷ୍ଟ ହୋଇ ପଚାରିଲେ, "ଆଉ ବିଳମ୍ବ କାହିଁକି ?" ବୁଢ଼ା ବିନୀତଭାବରେ କହିଲା, "ଆଜ୍ଞା, ଆଉ କିଛି ନାଇଁ । ଆପଣଙ୍କ ହାବୁଡ଼ରେ ଯେତେବେଳେ ପଡ଼ିଲିଣି, ଆଉ ଉପାୟ ନାଇଁ, ଦେଖୁଛି । ହାତରେ ନ ମରି ଘାତରେ ତ ମରିବି ! ହଉ, ଚାଲନ୍ତୁ ।"

ଭଗବାନ କହିଲେ, "ନା, ନା, ମୁ ଯାହାକୁ ରକ୍ଷା କରିବି, ତାକୁ ପୁଣି ମାରିବ କିଏ ?"

ବୁଢ଼ା କହିଲା, "ଆଜ୍ଞା, ପିଜୁଳି ଗଛଟି ଯୋଗୁଁ ଚଳୁଥିଲି । ଯମରାଜ ତାକୁ କୁଦାଚକଟା କରି ଏମିତି କଲେଣି ସେ ଆଉ ପାଞ୍ଚ ବର୍ଷ ଯାଏଁ କସି ଧରିବ ନାହିଁ, ପ୍ରଦର୍ଶନୀ ଯୋଗୁଁ ଦି' ପଇସା ମିଳୁଥିଲା, ତା' ବାଟ ବି ବନ୍ଦ ହେଉଛି । ଯେତେ ଚିରଞ୍ଜୀବୀ କଲେ କ'ଣ ହେବ, ଅନ୍ନ ବିହୁନେ ପ୍ରାଣ ଯିବ ଇ ଯିବ ।"

ଭଗବାନ ଅନୁଗ୍ରହ କଲେ, "ଯେଉଁ ଜିନିଷ ପ୍ରତି ତୁମର ମନ ହେବ, ତାହା ଆସି ତା ମନକୁ ପହଞ୍ଚିବ ।" ଭଗବାନ ଏହା କହୁ କହୁ ବୁଢ଼ାର ମନ ହେଲା, ଚାଉଳ ବସ୍ତା ସବୁ ଗଡ଼ିଉଲା, ଟିଣେ ଭଲ ଘିଅ, ବସ୍ତାଏ ହରଡ଼ ଡାଲି, ମହଣେ ଆଳୁ ଆସି ଯାଆନ୍ତା କି ? ମନରେ ବିଚାରି ସରିଛି କି ନାଇଁ, ସେ ସବୁ ଆସି ପହଞ୍ଚିଗଲା, ଜିନିଷ ସବୁ ରହିବା ପାଇଁ ଗୋଟାଏ ଗଳ୍ପା ଘର ବି ହୋଇଗଲା ।

ବୁଢ଼ା ଏସବୁ ସବୁ ଦେଖି ଦଣ୍ଡେ ବିସ୍ମିତ ହୋଇ ଠିଆ ହୋଇଗଲା । ମୋଟେ ଦଣ୍ଡେ ମାତ୍ର । ତା'ପରେ ତା' ଦେହ ଥରିଲା । ଆଖିରୁ ଲୁହ ଗଡ଼ିଲା । ବୁଢ଼ା ବଡ଼ ବିକଳ ଦୃଷ୍ଟିରେ ଭଗବାନଙ୍କ ପାଦପଦ୍ମକୁ ଅନାଇ ରହିଲା ।

ଭଗବାନ୍ ପଚାରିଲେ, "ଆଉ କ'ଣ ? ଏଥର ଆସ, ପିଜୁଳି ଗଛ ମୂଳକୁ । ମୁଁ ଯିବି, ବହୁତ କାମ ମାଡ଼ି ହେଲାଣି ।"

ବୁଢ଼ା କହିଲା, "ଆଜ୍ଞା, ହଉ ଚାଲନ୍ତୁ । ଆପଣଙ୍କ କାମ ହୋଇଯାଉ, ମୁଁ ମରେ, ନହେଲେ ବଞ୍ଚେ । ମୋ ପାଇଁ ଆପଣ କାହିଁକି ହଇରାଣ ହେବେ ?"

ଭଗବାନ ଏ କଥାର ଆଦି ଅନ୍ତ ପାଉ ନଥାନ୍ତି । ପଚାରିଲେ, "କାଉଁ କ'ଣ ? ସବୁ ତ ପାଇଲ, ଆଉ ଖାଇବା ଚିନ୍ତା ତ ନାଇଁ, ବ୍ୟସ୍ତ କାହିଁକି ?

ବୁଢ଼ା କହିଲା, "ମହାପ୍ରଭୁ, ବ୍ୟସ୍ତ ହୁଅନ୍ତୁ ନାହିଁ, ଆପଣ କ'ଣ ବୁଝିପାରୁ ନାହାନ୍ତି ; ଘରେ କିଛି ନଥିଲା, ଗୋଟିଏ ରକମ ଭଲ ଥିଲା । ଏବେ ଏତେ-ଗୁଡ଼ାଏ ଗୁଡ଼ିଲା, ତାକୁ ଦେଖି ମୋର ହଂସା ଉଡ଼ିଲାଣି । ମୋର କ'ଣ ଆଉ ବଳ ବୟସ ଅଛି, ସ୍ୱାକୁ ଫୁଟେଇ କରି ଖାଇବି । ବୁଢ଼ୀ ଆସନ୍ତା କି ?"

ଭଗବାନ ସାଙ୍ଗେ ସାଙ୍ଗେ କହିଲେ, "ହଉ, ତମର ତାକତ୍ ଆସୁ । ଯୌବନରେ ତୁମେ ଯେପରି ଥିଲ, ସେପରି ହୋଇଯାଅ । ବୁଢ଼ୀ ମଧ୍ୟ ଆସୁ ।"

ବୁଢ଼ା ଦିବ୍ୟ ସୁନ୍ଦର ଯୁବକ ହୋଇଗଲା । ବୁଢ଼ୀ ବି ଆସି ଠିଆ ହେଲା, ସାତବର୍ଷ ପୂର୍ବେ ଯେପରି ଦିଶୁଥିଲା, ସେଇପରି—ପାଳୁଆ ପାଟି, ଝାଲୁଆ ଗାଲ, ପାଚିଲା ବାଳ, ଧୁଡ଼୍ ଧୁଡ଼୍ ଦେହ, ପୁଣି ଅବିକଳ ସେଇ ପୁରୁଣା ପ୍ରକୃତି ।

ଏ ଅପରୂପ, ସ୍ୱଦେହରେ ବୁଢ଼ୀ ନା ତା' ଭୂତ ଜାଣିବା ପାଇଁ, ବୁଢ଼ା ବୁଢ଼ୀ ଆଡ଼କୁ ଘୁଞ୍ଚି ଆସି ତା ଦେହରେ ଟିକିଏ ହାତ ବଜାଇ ଦେଇଛି କି ନାହିଁ, ଆଗ୍ନେୟଗିରି ପରି ବୁଢ଼ୀର ବିସ୍ଫୋରଣ ଆରମ୍ଭ ହୋଇଗଲା । ସେ କହିଲା, "କିରେ ବାଡ଼ିପଡ଼ା ! କେଡ଼େ ସୁନ୍ଦର ରୂପ କମେଇ ରସିକ ହେବାକୁ ମତେ ଡକେଇ ଆଣିଛୁ ! କେଡ଼େ ବେହିଆ ହେଇ ଗଲୁଣି ସ୍ୱା ଭିତରେ ସତେ ! ଭଲା ଲୋକ ଆଗରେ ପାଖକୁ ଘୁଞ୍ଚିଆସି ଦେହରେ ହାତ ଲଗେଇ ଦେଉଚୁ !"

ମାଇକିନିଆଙ୍କ ଦୌରାତ୍ମ୍ୟ ଭଗବାନଙ୍କର ଅଙ୍ଗେ ନଭେଇବା କଥା । ସେ କାଳ ବିଳମ୍ବ ନ କରି ଆପଣା ମନକୁ ବୁଢ଼ୀର ରୂପ ବଦଳାଇ ଦେଲେ, ଷାଠିଏ ବର୍ଷ ପୂର୍ବେ ପହିଲିପାଳି ଆସିବାବେଳେ ବୁଢ଼ୀ ଯିମିତି ଦିଶୁଥିଲା, ସିମିତି । ଖାଲି ଫରକ ଏତିକି—ଚିନ୍ଦା ଲୁଗାଟା, ପୁରୁଣାକାଳିଆ କବଟା ପରିବର୍ତ୍ତେ ହାଲ୍ ଫେସନ୍ 'ଲଜବତୀ' ଶାଢ଼ୀ, ବ୍ଲାଉଜ ସମେତ । ଅଳଙ୍କାର ବି ଯୁଗୋପଯୋଗୀ ।

ବୁଢ଼ୀ ଭଗବାନଙ୍କ ଆଡ଼କୁ ଚାହିଁ ଲାଜରେ ଆଗ ଲୁଗା ସଜାଡ଼ି ପକାଇଲା । କିନ୍ତୁ ବୁଢ଼ାକୁ ଚାହିଁଲା ମାତ୍ରେ ତା'ର ପ୍ରକୃତି ବାହାରିଲା । ସେ କହିଲା, "ତତେ ଟିକିଏ ଲାଜ ମାଡ଼ୁ ନାହିଁ, ବାଡ଼ିପଡା ହରିଆ ଗଲା, ଗୋବିନ୍ଦା ଗଲା, ଗୋପାଳିଆ ଗଲା, ତାଙ୍କ ପିଲାମାଇପେ ଗଲେ, ବାଡ଼ିପଡ଼ା'ର ତାଙ୍କ କଥା ମନେ ପଡ଼ୁ ନାହିଁ । ଆମେ ପୁଣି ଟୋକାଟୋକୀ ହୋଇ ସୁଖ କରିବା ନା ! ପୋଡ଼ିଯାଉ

ନାହିଁ ତୋ ମୁହଁ, ଅଲାଜୁକ ? ( ଭଗବାନଙ୍କ ପ୍ରତି ) ମିଛି ମିଛି ହେଇ ଚାହୁଁଛୁ କିମିତି ଦେଖିବଟି ସାଆନ୍ତ !"

ଭଗବାନ ଏହା ଶୁଣି ବୁଢ଼ା ଆଡ଼କୁ ନିଜେ ମିଛି ମିଛି କରି ଚାହିଁବାକୁ ବାଧ୍ୟ ହେଲେ । ବୁଢ଼ା ତ ସବୁ ହାତରେ ଅଜିଛି । ଘରର ଇଜ୍ଜତ ଦାଣ୍ଡରେ ପଡ଼ିଲା ବୋଲି ତଳକୁ ମୁହଁ କରିଥାଏ । ଭଗବାନ ଶେଷରେ ପଚାରିଲେ, 'କିଓ ବୁଢ଼ା, କ'ଣ ବିଚାର ?"

ବୁଢ଼ା ସାହସ ଧରି କହିଲା, "ମହାପ୍ରଭୁ ! ବୁଢ଼ୀକୁ ମୁଁ ଲୋଡ଼ିଛି ଯେତେ-ବେଳେ, ଚିରଞ୍ଜୀବୀ ହେବାକୁ ମାଗିଛି ଯେତେବେଳେ, କାଳକାଳକୁ ଏ ସତ୍ୟାନାଶୀଠାରୁ ମାଡ଼ ଗାଳି ଖାଇବାକୁ ଦେହ ମନ କାଠ କରିବାକୁ ହେବ ଇ ହେବ । ହଉ ଚାଲନ୍ତୁ । ତେବେ ମୁଁ ବି ବିଚାରୁଛି, ହରିଆ, ଗୋବିନ୍ଦା, ଗୋପାଳିଆଙ୍କ କଥା । ତାଙ୍କ ପିଲା କବିଲାଙ୍କୁ କାଟେଇ ଲଉ କରି କାଳ କାଟୁଥିଲା । ବୋହୂଟିମାନେ ଏ ବୁଢ଼ୀଠାରୁ ମତେ ରକ୍ଷା କରୁଥିଲେ । ଏତେ ତ ଦେଲେଣି, ସେଇମାନଙ୍କୁ ଦିଅନ୍ତୁ । ଆଉ ଏ ବୁଢ଼ୀ କଥା ଶୁଣିବି ନାହିଁ; ସାଙ୍ଗେ ସାଙ୍ଗେ ଆପଣଙ୍କ କାମଟି ତୁଲେଇ ଦେବି ।

ପୁଅ ବୋହୂ, ନାତି ନାତୁଣୀଙ୍କ ସଙ୍ଗେ କଥାବାର୍ତ୍ତା ହେବା ପୂର୍ବରୁ ବୁଢ଼ା ପିଜୁଳି ଗଛମୂଳକୁ ମୁହାଁଇଲା । "ବାଡ଼ିପଡ଼ା, ଭଲଲୋକ ଆଗେ ମୋ ନାଁରେ କ'ଣ କହିଲୁ" ବୋଲି କହି ବୁଢ଼ୀ ବୁଢ଼ା ପଛରେ ଗୋଡ଼ାଇ ଥାଏ ।





ତାଙ୍କ ରୂପ ଯୋଗୁଁ ଯେ କେବଳ ସେ ଲୋକପ୍ରିୟ ଥିଲେ ତା' ନୁହେ ; ଅବଶ୍ୟ ତାଙ୍କର ପଞ୍ଚହସ୍ତ ଆକୃତି, ଗୌରବର୍ଣ୍ଣ, ବଳିଷ୍ଠ ଗଢ଼ଣ, ସୁଦୃଢ଼ ମାଂସପେଶୀ-ଯୁକ୍ତ ବାହୁ, ପ୍ରଶସ୍ତ ବକ୍ଷ ଓ ଉନ୍ନତ ଲଲାଟ ଯୋଗୁଁ ସେ ହଜାରଙ୍କ ଭିତରେ ଜଣେ ବୋଲି ବାରି ହୋଇଯାଉଥିଲେ । ତାଙ୍କ ବହଳା ଗାଲମୋଛ ଓ କରଡା ନିଶ 'ଦୁ'ପଟା ସମସ୍ତଙ୍କ ଆଖି ତାଙ୍କର ଆଡ଼କୁ ଟାଣି ନେଉଥିଲା । କିନ୍ତୁ ଖାଲି ସେତିକି ତାଙ୍କର ସମ୍ବଳ ନ ଥିଲା । ତାଙ୍କ ବାପା ଥିଲେ ଜଣେ ଖ୍ୟାତନାମା ରାଜା । ଲୋକଙ୍କ ବିପଦ ଏଡ଼ିବା ପାଇଁ ସେ ବହୁବାର ଯୁଦ୍ଧ କ୍ଷେତ୍ରରେ ନିଜର ଜୀବନକୁ ବିପନ୍ନ କରିଥିଲେ । ଅନ୍ୟ ସମୟରେ ରାଜ୍ୟତମାମ ବୁଲି ବୁଲି ସେ ଦେଖୁଥିଲେ, ଲୋକଙ୍କର ସୁଖ ଦୁଃଖ । ଲୋକଙ୍କ ସୁଖରେ ସେ ନିଜେ ଯାଇ ମିଶି ଯାଉଥିଲେ ଓ କେହି ବିପଦରେ, ଅଭାବ ଅନାଟନ ବା ରୋଗ ବୈରାଗରେ ପଡ଼ିଲେ, ନିଜ ବାପ ଭାଇ ପରି ପ୍ରତିକାର କରିବାକୁ ଲାଗି ଯାଉଥିଲେ । ଏପରି ରାଜାଙ୍କର ପୁଅ ପ୍ରତି ଲୋକଙ୍କର ମମତା ରହିବାର ଭି

କଥା । ସବୁଠାରୁ ବଡ଼ କାରଣ, ସାରଙ୍ଗ-ଶାର୍ଦ୍ଦୂଳ ମହାମହିମ ଶ୍ରୀ ଶ୍ରୀ ରାଜା ଶ୍ରୀ ବିକ୍ରମକେଶରୀ ଶୂର ଥିଲେ, ବାଘ ଓ ସିଂହଙ୍କଠାରୁ ବଳକରି ନିର୍ଭୀକ ଓ ତେଜସ୍ୱାନ୍ । ସେ ଯେତେବେଳେ ଯାହା ନ୍ୟାଯ୍ୟ ବୋଲି ବିଚାରୁଥିଲେ, ତାହା ବିରୁଦ୍ଧରେ ଇନ୍ଦ୍ର ବାହାରିଲେ ବି ସେ ଡରିବାବାଲା ନ ଥିଲେ । ତାଙ୍କୁ କେହି କେହି ଜିଦ୍‌ଖୋର ବୋଲି ଭିତରେ ଭିତରେ କହିବାର ଶୁଣା ଯାଉଥିଲେ ବି, ସାମନାରେ ସମସ୍ତେ କହୁଥିଲେ, 'ମହାରାଜାଙ୍କର ଜୟ ହେଉ' । ସେ କୋଡ଼ିଏ ବର୍ଷରେ ରାଜଗାଦିରେ ବସିଲେ ; ଆଜି ତାଙ୍କୁ ଷାଠିଏରୁ ବେଶୀ ହୋଇଥାଏ । ଏ ଚାଳିଶ ବର୍ଷ ତମାମ ତାଙ୍କର ରାଜ୍ୟଭୋଗ ନିଷ୍କଣ୍ଟକ ଭାବେ ଚାଲିଥାଏ । ଥରେ ଅଧେ ପଡ଼ୋଶୀ ରାଜା ଜଣେ ଦି'ଜଣ ଲଢ଼େଇକୁ ବାହାରିଥିଲେ ; ରାଜ୍ୟ ଭିତରେ ଥରେ ଦି'ଥର ବିଦ୍ରୋହ ହୋଇଥିଲା । ପଡ଼ୋଶୀ ରାଜା ଯୁଦ୍ଧରେ ଯେଉଁ ପରାଭବ ପାଇଥିଲେ ତାହା ପାସୋରି ନ ଥାନ୍ତି ; ରାଜ୍ୟରେ ଯେଉଁମାନେ ବିଦ୍ରୋହୀ ହୋଇଥିଲେ ସେମାନଙ୍କ ଶ୍ରାଦ୍ଧ କରିବାକୁ, ସେମାନଙ୍କ ବଂଶରେ ନାବାଳକ ବି କେହି ନାହାନ୍ତି ।

ରାଜାଙ୍କୁ ଚାହିଁ ମନ୍ତ୍ରୀ ! ପୂର୍ବ ରାଜାଙ୍କ ପାଖରେ ସେ ଚାକିରି କରୁଥିଲେ । ପୁଅକୁ ସମ୍ଭାଳି ନେବାକୁ ପୂର୍ବ ରାଜା ମୃତ୍ୟୁ ଶଯ୍ୟାରେ ସ୍ୱାଙ୍କୁ ଆଦେଶ ଦେଇ ଯାଇଥିଲେ । ସେ ଆଦେଶ, ମନ୍ତ୍ରୀ ମହାଶୟ ମାନିଥାଆନ୍ତି ବା ନ ମାନିଥାଆନ୍ତେ, ସେ ଯେତେବେଳେ ଦେଖିଲେ ନୂଆ ରାଜାଙ୍କୁ ଉଁ ଚୁଁ କଲେ, ଚାକିରି ଖଣ୍ଡି ସମ୍ଭାଳି ହେବ ନାହିଁ, ସେ ନୂଆ ରାଜାଙ୍କର ସବୁ କଥାକୁ ହୁଁ ହୁଁ କରିବାକୁ ଆରମ୍ଭ କରିଦେଲେ । ଘରେ ପିଲାପିଲି ଗୁଡ଼ିଏ, ବଡ଼ ପୁଅଟି ତାଙ୍କ ଅନ୍ତେ ମନ୍ତ୍ରୀ ହେବାର ଆଶା ବି ଥାଏ । ଆଗ, ରାଜାଙ୍କ କଥାରେ ହଁ ହଁ କରୁ କରୁ, ମନ୍ତ୍ରୀଙ୍କ ବୁଦ୍ଧି ଏପରି ତାଲିମ ହୋଇଗଲା ଯେ ତାଙ୍କର ବିଚାର ଓ ରାଜାଙ୍କ ବିଚାର ଏକାବେଳକେ ସମାନ ହୋଇଗଲା । ରାଜା ଯାହା ଗୋଟାଏ କରି ଦିଅନ୍ତି ତାକୁ ସେ, ପାଠରେ ଗୁଡ଼ାଇ ତାରିଫ କରି ଦିଅନ୍ତି ।

ଏ ପାଠ କିନ୍ତୁ ରାଜଗୁରୁଙ୍କର ମନକୁ ପାଏ ନାହିଁ । ଆଗ ସେ ବିଚ୍ ରାଜସଭାରେ ମନ୍ତ୍ରୀଙ୍କୁ ଖୁଣୁଥିଲେ । ତାଙ୍କ କଥାଗୁଡ଼ାକ ଶାସ୍ତ୍ର-ସମ୍ମତ ନୁହେ ବୋଲି କହୁଥିଲେ । କ୍ରମେ ଯେତେବେଳେ ଜାଣିଲେ, ମନ୍ତ୍ରୀଙ୍କୁ ଖୁଣିଲେ, ରାଜାଙ୍କୁ କାଟୁଛି, ସେ ତୁନି ରହିଲେ । ତୁନି ରହିବାଟା ମଧ୍ୟ ରାଜାଙ୍କୁ କାଟିବାରୁ, ସେ

ବ ରାଜା ତଥା ମନ୍ତ୍ରୀଙ୍କ କଥାରେ ହଁ ହଁ ମାରିବାକୁ ଆରମ୍ଭ କଲେ । ରାଜଗୁରୁ-ପତ୍ନୀ ଘର ଭିତରେ ରାଜଗୁରୁଙ୍କୁ ବସେଇ ଉଠେଇ ଦିଅନ୍ତି ନାହିଁ । କହନ୍ତି, ଏତେ ପାଠ ପଢ଼ିଲ, ସନ୍ଧ୍ୟା ତର୍ପଣ କରୁଛ, ପୁରାଣ ପଢ଼ୁଛ, ଏ ଅଗୁଣ୍ଠାମଣା ରଜା କଥାରେ ମୁଣ୍ଡ ପୋତି ରହିଛ କେମିତି, କହିଲ ! ପେଟରେ ପାଠ ଅଛି, ଯୁ'ଠିକି ଯିବ ସିଠେଇ କ'ଣ ପୂଜ୍ୟେ ମିଳିବ ନାହିଁ ?"

ରାଜଗୁରୁ ଉତ୍ତର ଦିଅନ୍ତି, "ମାଇପି ଲୋକ, ତୁମର ବୁଦ୍ଧି କେତେ ? ରଜା ଦ୍ୱାରକୁ ନ ଗଲେ ଆମକୁ ପୋଷିବ କିଏ ? ସବୁ ରଜା ଗୋଟା । ମୁଁ ଚାରିଆଡ଼େ ଆଖି ବୁଲେଇ ଦେଖିଲିଣି । ଏ ରାଜ୍ୟଠାରୁ ଭଲ ଜାଗା ତ ଦେଖୁ ନାହିଁ । ଏ ରଜା ଲୋକଟି ତ ଖରାପ ନୁହେଁ, ଖାଲି ବୁଦ୍ଧି ଯିନା ଟିକିଏ ବାମ ।"

ରାଜଗୁରୁପତ୍ନୀ କହନ୍ତି, "ବୁଦ୍ଧିଟି ତ ପୋଡା, ଆଉ ଭଲ କ'ଣ ?"

ରାଜଗୁରୁ କହନ୍ତି, "ତମେ ବୁଝିବ କ'ଣ ? ଯାଅ, ଲୁଟା ବଦଳି ସନ୍ଧ୍ୟା କରିବାକୁ ପାଣି ଆଣ । ବୁଦ୍ଧି ବାମ ହେଲେ ତ ତା' ମନକୁ ସେ ଠିକଣା ହୋଇଯିବେ ; 'ଆତ୍ମୈବ ରିପୁରାତ୍ମନଃ' ; ଅନ୍ୟ ଲୋକର ଚେଷ୍ଟା କରିବା ଦରକାର ନାହିଁ । ଯାହାର ବୁଦ୍ଧି ମନ୍ଦ, ସେ ଆପେ ଆପେ ଯାଇ ଶୂଳରେ ବସି ପଡ଼ିବ ।"

ଏ କଥାରେ ରାଜଗୁରୁପତ୍ନୀଙ୍କର ମନ ମାନେ ନାହିଁ, କି ରାଜାଙ୍କ ଅଦୌରିରେ ପେଡ଼ି ହୋଇଯାଉଥିବା ଲୋକସାଧାରଣଙ୍କର ମନ ମାନେ ନାହିଁ । ସମସ୍ତେ ମନ ମାରି, ପାଟି ସିଲେଇ କରି ରହିଥାନ୍ତି । ପାଟି କେବଳ ଶୁଭୁଥାଏ ରାଜାଙ୍କର, ସେ ଶବ୍ଦର ପ୍ରତିଧ୍ୱନି ବାହାରୁଥାଏ ମନ୍ତ୍ରୀଙ୍କଠାରୁ ; ରାଜଗୁରୁ ମୁହଁ ତଳକୁ କରି ସବୁ କଥାକୁ 'ତଥାସ୍ତୁ' 'ତଥାସ୍ତୁ' କହୁଥାନ୍ତି । ମନ୍ଦ ମନ୍ଥର ଗତିରେ ରାଜ୍ୟଶାସନ ଚାଲିଥାଏ—ରାଜାଙ୍କ ମନ ବେଳକୁ ବେଳ ଅଧିକ ମୋଟା ହେଉଥାଏ ।

ଗୋଟିଏ ମାତ୍ର ତାଙ୍କର ମନରେ କଷ୍ଟ ଥିଲା । ଈଶ୍ୱରଙ୍କ ଅନୁଗ୍ରହରୁ ସେ ଦୁଃଖ, ଦୂର ହୋଇଯିବାର ଆଶା ଦିଶୁଥାଏ । ରାଜ୍ୟର ସବୁଯାକ ଜ୍ୟୋତିଷ ଏକସ୍ୱରରେ କହୁଥାନ୍ତି ଯେ, "ମହାରାଜାଙ୍କର ଏଥର ନିଶ୍ଚୟ ପୁଅ ହେବ ।" କବିରାଜମାନେ ତ ମୂଳରୁ କିଦ୍ କରି କହି ଆସୁଥିଲେ, ଏଥର ନିଶ୍ଚୟ ରାଣୀଙ୍କର

ଗର୍ଭବାସ ହେବ । ସେ କଥା ଫଳିଲା ପରେ, ସେମାନେ ବି ଜ୍ୟୋତିଷଙ୍କ ସଙ୍ଗେ ସ୍ୱର ମିଶାଇ ଦେଇଛନ୍ତି । ରାଣୀଙ୍କ ଗର୍ଭବାସ ଜଣା ପଡ଼ିବା ଦିନୁ ରାଜଗୁରୁଙ୍କ ନିର୍ଦ୍ଦେଶରେ ସ୍ୱସ୍ତ୍ୟୟନ କରୁଥିବା ବ୍ରାହ୍ମଣମାନେ ବାଦି ପକାଇଛନ୍ତି, ସର୍ବଶୁଭରେ ରାଜାଙ୍କର ଏଥର ଯଦି ପୁଅ ନ ହୁଏ, ତେବେ ସେମାନେ କର୍ମକର୍ମାଣି ଏକା-ବେଳକେ ଛାଡ଼ି ଦେଇ ବୈଷ୍ଣବ ଦୀକ୍ଷା ନେବେ । ଏମାନଙ୍କର କଥା ରାଜାଙ୍କ ମନର ପ୍ରତିକୂଳ ହୋଇଥିଲେ ତ ସ୍ୟାଙ୍କ କଥା ସରିଥାନ୍ତା ; ଅନୁକୂଳ ହେବାରୁ ରାଜା ଦାନ ଖଇରାତ୍ ବି ଖୁବ୍ କରୁଥାନ୍ତି । ରାଜାଙ୍କ ମନ ଉସତ ରହିବା ଯୋଗୁଁ ପ୍ରଜାମାନଙ୍କର ମଧ୍ୟ ଟିକିଏ ଶାନ୍ତି ଥାଏ ।

ରାଜାଙ୍କ ମନ-ଆନନ୍ଦ ଯୋଗୁଁ ରାଣୀ ବି ପ୍ରଶ୍ରୟ ପାଇଥାନ୍ତି ଖୁବ୍ । ସେ ତ ରାଜାଙ୍କର ପଞ୍ଚମ ପକ୍ଷ ସ୍ତ୍ରୀ—ରାଜାଙ୍କ ଓ ତାଙ୍କ ଭିତରେ ବୟସରେ ତଫାତ୍ ତେତିଶି ବର୍ଷ । ଏତିକିରେ ତ ରାଜା ତାଙ୍କୁ କରପତ୍ର ଯୋଡ଼ି ରହିବାର କଥା । ଅଧିକନ୍ତୁ ସେ ରାଜାଙ୍କ ଭାବୀ ଉତ୍ତରାଧିକାରୀଙ୍କ ଗର୍ଭଧାରିଣୀ । ସାତ ମାସ ଗଡ଼ି-ଗଲାଣି ଚିତଉଖିଆ ଘର ସରିଥାଏ । ରାଣୀଙ୍କର ଏତେବେଳେ ଯାହା ମନ, ସେ ସବୁ ପୂରଣ କରିବା ଦରକାର ବୋଲି ରାଜବୈଦ୍ୟ ମଧ୍ୟ କହିଥାନ୍ତି ।

ରାଣୀଙ୍କ ପିଲାଦିନୁଁ ଘୋଡ଼ାଚଢ଼ା ସଉକ । ତାଙ୍କ ବାପାଙ୍କର ସେ ଏକମାତ୍ର ସନ୍ତାନ ହୋଇଥିବାରୁ, ପିଲା ଦିନେ ପୁଅ ପରି ବଢ଼ିଥିଲେ । ଘୋଡ଼ା ଚଢ଼ିବା, ଶିକାର କରିବା, ଫରି ଖେଳିବା ସବୁଥିରେ ସେ ବ୍ୟୁତ୍ପନ୍ନା ହୋଇଥିଲେ । ଏଇ ସମୟରେ, ଦବି ରହିଥିବା ସେଇ ସଉକ ବାହାରିଲା । ମନ୍ତ୍ରୀ କହିଲେ, ତାଙ୍କ ପେଟ ଭିତରେ ଯେଉଁ ତେଜସ୍ୱାନ ସନ୍ତାନ ଅଛି, ସେଇ ରାଣୀଙ୍କର ଏଇ ପ୍ରବୃତ୍ତିକୁ ଉସ୍କାଇ ଦେଇଛି । ରାଣୀ ପ୍ରତିଦିନ ସକାଳୁ ଦୁଇଚାରି ମାଇଲ ଘୋଡ଼ା ଦଉଡ଼ାନ୍ତି । ରାଜବୈଦ୍ୟ ମତ ଦେଇଥାନ୍ତି, ସୁଖ-ପ୍ରସବ ହେବ ।

( ୨ )

ସେ ଦିନ ସକାଳୁ ବୁଢ଼ୀ ପୋଇଲୀଟା ରାଣୀଙ୍କୁ ଟିକିଏ ବଗାଡ଼ି ଦେଲା । ରାଣୀ ଘୋଡ଼ାଚଢ଼ା ପୋଷାକ ପିନ୍ଧି ବାହାରୁଛନ୍ତି, ସେ କହିଦେଲା, "ମା, ଗରୁଘର ମାଇପି ଏ ସମୟରେ ଘୋଡ଼ା ଚଢ଼ିବା କ'ଣ ଠିକ୍ ହଉଚି ?" ରାଣୀ ଚିଡ଼ିଗଲେ, କହିଲେ, "ମାଇପି ଜାତିଙ୍କର ଚୋ'ର ପରି ମାଇପେ ଶତ୍ରୁ ।

ମରଦ ଯାହା ପାରିବେ, ଆମେ ସେ ସବୁକୁ ପାରନ୍ତେ । ତମର ପର ବୁଢ଼ୀ ଗୁଡ଼ାକ ବାଟରେ କଣ୍ଟା ପରି ହେଉଛନ୍ତି—ରାଣୀ ଦୁର୍ଗାବତୀ, ଝାନ୍ସି ରାଣୀ ଆମରି ମାଇପି ଜାତି ଠିକ ? ଦେଖ୍, ମୋ ଘରେ ତାଙ୍କର ଯୋଉ ଚିତ୍ର ରହିଛି !" ଏତିକିରେ ବୁଢ଼ୀ ତୁନି ହୋଇଥିଲେ ଯାହା ବା·ହୋଇଥାନ୍ତା, ସେ ତ ବହୁକାଳରୁ ରଜାଘରେ ରହି ଯାଇ ମୁହଁ ପାଇଥାଏ । ସେ କହିଦେଲା, "ସେମାନେ କ'ଣ ଗରୁଘର ହେଇ ନଚ୍ଛେଇ କରୁଥିଲେ ?"

ରାଣୀ କିଛି କହିଲେ ନାହିଁ, ବରଂ ରାଗିଲେ, କାମରେ ଦେଖାଇ ଦେବେ, ଗରୁଘର ମାଇପେ କରିପାରନ୍ତି କଣ । ସବୁ ଦିନ ଯେଉଁ ଘୋଡ଼ାରେ ଯା'ନ୍ତି, ତା'କୁ ଫେରାଇ ଦେଇ, ସବୁଠାରୁ ଉଚା, ଦୁଷ୍ଟ ଘୋଡ଼ାଟାକୁ ବାହାର କରିବାକୁ କହିଲେ । ତା' ଉପରେ ଚଢ଼ି ସେ ଯେତେବେଳେ ପବନପରି ଦଉଡ଼ାଇ ଦେଲେ, ସେତେବେଳେ ପୁରୁଣା ସଇସଙ୍କର ବି ଆଖି ଖୋସି ହୋଇଗଲା । ସେମାନେ ରାଣୀଙ୍କର ପଛ ଧରୁ ଧରୁ ବେଦମ ହୋଇ ପଡ଼ିଲେ ।

ଏହାର ଘଣ୍ଟାକ ପରେ—'ସମଗ୍ର ରାଜଧାନୀରେ ବିଜୁଳିପରି ସମ୍ବାଦ ଚହଟିଗଲା, ରାଣୀ ଘୋଡ଼ାରୁ ପଡ଼ି ବେହୋସ୍ । ଗର୍ଭପାତ ହୋଇ ସାତମାସର ଶିଶୁପୁତ୍ରଟି ସାଙ୍ଗେ ସାଙ୍ଗେ ମରିଯାଇଛି । ସମସ୍ତେ ମନେ ମନେ କହିଲେ, "ଅତି ଉତ୍ପାତକୁ କ'ଣ ଦଇବ ସହନ୍ତା ?" ପ୍ରକାଶ୍ୟରେ ତୁନି ହୋଇ, ଅପେକ୍ଷା କଲେ—ଏହାପରେ କ'ଣ ହେବ ? ରାଣୀ ବଞ୍ଚିବେ କି ନାହିଁ ? ଯାହା ଯୋଗୁଁ ଏ ଅବସ୍ଥା ଘଟିଲା, ତା'ର ଦଶା କ'ଣ ହେବ ? ରାଣୀ ପଡ଼ିଛନ୍ତି, ରାଜ୍ୟର ଭାବୀ ରାଜା ମୃତ, ସହଜ କଥା ନୁହେଁ ! ସଙ୍ଗେ ସଙ୍ଗେ ଉଚ୍ଚ କ୍ଷମତାପନ୍ନ କମିଟି ବସିଲା, ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ । ତାଙ୍କର ରିପୋର୍ଟକୁ ରାଜା ଅପେକ୍ଷା କରି, ରାଣୀଙ୍କର ଚିକିତ୍ସାରେ ମନ ଦେଲେ । ଚିକିତ୍ସକମାନଙ୍କର ବିଦ୍ୟାକୁ ଧନ୍ୟ କରିବା, ତାଙ୍କର ଖସି ଯାଇଥିବା ଝଞ୍ଜା ସଳଖି ହୋଇଗଲା, ପେଟର ଯନ୍ତ୍ରଣାର ଉପଶମ ହେଲା ଓ ଏକୋଇଶି ଦିନ ଲାଗି ରହିଥିବା ଜର, ହସ୍ତାଏ ହେଲା ଛାଡ଼ି, ସେ ପଥିକର ରାଣୀହଂସପୁରରେ ସାମାନ୍ୟ ଚଲାବୁଲା କରିପାରୁଥାନ୍ତି ।

ଏତେବେଳକୁ ମୁଖ୍ୟମନ୍ତ୍ରୀଙ୍କ କମିଟି ରିପୋର୍ଟ ଦେଇ ସାରିଥାନ୍ତି ! ରାଜା ସେଥିରୁ ଜାଣିଲେ—ଗୋଟାଏ କୁମ୍ଭାର ରାସ୍ତା କଡ଼ରେ ଗୁଡ଼ାଏ କଞ୍ଚା ହାଣ୍ଡି

ଅଟିକା ଶୁଖାଇଥିଲା । ଘୋଡ଼ା ସେଇ ବାଟେ ଧାଇଁଛି, ଏଇ ସମୟରେ ରାସ୍ତାର ଆର କଡ଼ରେ ଥିବା ଗୋଟାଏ କୁକୁର ଭୁକ ଦେବାରୁ, ଘୋଡ଼ା ଡରିଯାଇ ହାଣ୍ଡି ଯେଉଁ ପାଖକୁ ଥିଲା ସେ ଆଡ଼କୁ ଧସେଇ ଗଲା । ଜୋରରେ ଗଲାବେଳେ ହାଣ୍ଡି ଝୁଣ୍ଟିବାରୁ ସେ ହାମୁଡ଼ି ପଡ଼ିଲା । ରାଣୀ ଗ୍ରୁଟିହୋଇ ପଡ଼ିଲେ ।

ମନ୍ତ୍ରୀ-କମିଟି ସୁପାରିସ୍ କରିଥାନ୍ତି—ସଦାଟାକୁ ଖୁରାଟାଏ । ଘୋଡ଼ା ଟାପୁ ବାଜି କୁମ୍ଭାରର ଗୋଟାଏ ସରା ଭାଙ୍ଗି ଯାଇଥାଏ । ତେଣୁ ଘୋଡ଼ାର ଦୋଷୀ ଟାପୁଟା ହଣାଯାଉ ।

—ପ୍ରାଣଟାକୁ ପ୍ରାଣଟାଏ । ଘୋଡ଼ା ଝୁଣ୍ଟିବା ସମ୍ଭାବନା ଥିବା ଜାଗାରେ କୁମ୍ଭାର ହାଣ୍ଡି ଶୁଖାଇଥିବାରୁ ରାଜକୁମାରଙ୍କ ପ୍ରାଣ ଗଲା, ତେଣୁ କୁମ୍ଭାରକୁ ଶୂଳି ଦିଆଯାଉ ।

—କୁକୁର ଭୁକିବାରୁ ଘୋଡ଼ା ହରୁଡିଲା ; ତେଣୁ, 'ମୂଳ ମାଇଲେ ଯିବ ସରି' ରୀତିରେ ରାଜ୍ୟର ସବୁଯାକ କୁକୁରଙ୍କୁ ମାରି ଦିଆଯାଉ । ଯଦି କୌଣସି ଲୋକ ସଉକରେ କୁକୁର ରଖିବ ତେବେ ତା ମୁହଁରେ ସବୁବେଳେ ତୁଣ୍ଡି ବାନ୍ଧିବାକୁ ହେବ । ଯଦି ନ ବାନ୍ଧେ ଓ ଯଦି କୁକୁର ଭୁକିବାର ଶୁଣାଯାଏ, ତେବେ, କୁକୁର ମରାଯିବ ଓ ମାଲିକ ଶୂଳିରେ ବସିବ ।

ରିପୋର୍ଟ ମିଳିବା ପରେ ବିନା ବିଚାରରେ ଘୋଡ଼ାର ଗୋଟିଏ ଖୁରା କାଟି ଦିଆଗଲା ଓ ପଶୁ ବିଭାଗ ଡିରେକ୍ଟରଙ୍କୁ ହୁକୁମ ହେଲା, ଘୋଡ଼ାର ଗୋଡ଼ ଭଲ କରି ଗୋଟାଏ କୃତ୍ରିମ ଟାପୁ ଖଞ୍ଜିଦେବେ । କୁମ୍ଭାରର ଅପରାଧ ବିଚାର ପାଇଁ ରୀତିମତ ସେସନ କୋର୍ଟ ବସିଲା । ରାଜା କ୍ଷତିପୂରଣ ଦାବୀ କରି ଗୋଟାଏ ଦେବାନୀ ମକଦ୍ଦମା ଦାଏର କଲେ ।

କୁମ୍ଭାର ପକ୍ଷରୁ ତ ପ୍ରତିବାଦ ନାହିଁ । ସାକ୍ଷୀଙ୍କୁ ଜେରା ବି ହେଲା ନାହିଁ । କୁମ୍ଭାର ସବୁ କଥା ସତ ସତ ମାନିଗଲା । ସେଟଲମେଣ୍ଟ ରେକର୍ଡରୁ ଦେଖାଗଲା ଯେ ସଡ଼କକୁ ଲଗି ଦି'ପାଖେ ଗୋଚର ପଡ଼ିଆ ।

କୁମ୍ଭାର ଯାହାଙ୍କୁ ଓକିଲ ଦେଇଥିଲା, ସେ ପ୍ରମାଣ କରିବାକୁ ବସିଲେ ଯେ, ଗୋଚରପଡ଼ିଆ ଗାଈ ଚରାଇବା ପାଇଁ ରହେ ; କୁମ୍ଭାର ହାଣ୍ଡି ଶୁଖାଇ ନ ଥିଲା ଯେ, ଗାଈ ଚରାଇଥିଲା । 'ଶୁଖାଇବା' ଓ 'ଚରାଇବା' ଏକାର୍ଥବୋଧକ

ଶବ ବୋଲି ପ୍ରମାଣ କରିବା କଷ୍ଟ ହେଲା ନାହିଁ । ଆଜିକାଲି ଦେଶରେ ଗୋଚରର ଯାହା ଅବସ୍ଥା, ସେଥିରେ ଗାଈ ପଡ଼ିଆରେ ଯେତେ ଚରନ୍ତି, ତହିଁରୁ ଅଧିକ ଖରା ଖାଇ ଶୁଅନ୍ତି । ଜୁରିଙ୍କର ନିଜ ନିଜର ଗାଈ ଥା'ନ୍ତି । ସେ ରାଜ୍ୟରେ ଗୁଣ୍ଡ୍ରଦୁଧର ପ୍ରଚଳନ ସେତେ ବେଶି ହୋଇ ନ ଥାଏ । ତେଣୁ ଚରାଇବା ଅର୍ଥ ଯେ ଶୁଆଇବା, ଏ ବିଷୟରେ ଜୁରିଙ୍କର ହୃଦବୋଧ ହେବାରେ ବାକି ରହିଲା ନାହିଁ । କିନ୍ତୁ 'ଗାଈ' ବୋଲକୁ ଅଡ଼ୁଆ ହେଲା । 'ଗାଈ' ଖାଲି ଗଉଡ଼-ଙ୍କର କାହିଁକି, ସମସ୍ତଙ୍କର ସଂପତ୍ତି, ସେହି ପରି କୁମ୍ଭାରର ହାଣ୍ଡି ଆଠିକା ସଂପତ୍ତି, ଏକଥା ସମସ୍ତେ ସ୍ୱୀକାର କଲେ । ଆମ ଗାଈଙ୍କର ଚମ ଯିମିତ ଧୂଡ଼୍ରୁ-ଧୂଡ଼୍ରୁ, କଞ୍ଚା ହାଣ୍ଡିର ସେହିପରି ଲତର ପତର । କିନ୍ତୁ ନାକ ଦଣ୍ଡିରେ ପ୍ରାଣ ଥିଲେ କ'ଣ ହେଲା, ଗାଈମାନେ ଅଦ୍ୟାପି ଚୂଲିବୁଲି ପାରୁଛନ୍ତି, ଗଉଡ଼ ହାତରେ ବଡ଼ ଠେଙ୍ଗା ଥିଲେ, ଧାଆଁନ୍ତି ମଧ୍ୟ । କିନ୍ତୁ ହାଣ୍ଡି, ବହୁକାଳ ହେଲା ଲୋକଙ୍କୁ ଜୀବନ ଦେଇ ଏକାବେଳକେ ନିର୍ଜୀବ ହୋଇଗଲାଣି । ଏଇ କାରଣରୁ ଓକିଲଙ୍କ ଯୁକ୍ତି ହାକିମ କି ଜୁରି କେହି ଗ୍ରହଣ କଲେ ନାହିଁ । ଏଇ ଗୋଟିକ ବ୍ୟତୀତ କୁମ୍ଭାରକୁ ରକ୍ଷା କରିବାକୁ ଆଉ ପଏଣ୍ଟ କିଛି ନ ଥିଲା । ଏତକ ଗଲାପରେ ସମସ୍ତେ ଜାଣିଲେ ଯେ କୁମ୍ଭାର ଶୂଳିକୁ ଯିବା ନିଃସନ୍ଦେହ ।

ସେଇଆ ହେଲା । ସେସନ୍ ଜଜ୍ ରାଏ ଦେଲେ, ଗୁହ୍ୟଦ୍ୱାରବାଟେ ଶୂଳ ଦେହରେ ପ୍ରବେଶକରି ମୁଖ-ଦ୍ୱାରବାଟେ ବାହାରି, ପ୍ରାଣ ଯିବା ଯାଏଁ, କୁମ୍ଭାର ଶୂଳରେ ବସିବ । ଶୂଳର ତାରିଖ ଠିକ୍ ହେଲା । ଶୂଳିଆପଡ଼ିଆରେ ଶୂଳ-ଖମ୍ବ ପୋତା ହୋଇ ଦେଖଣାହାରିମାନଙ୍କ ସକାଶ ଗୋଟାଏ ବଡ଼ ଷ୍ଟେଡ଼ିଅମ୍ ତିଆରି ହୋଇଗଲା । ତାରିଖ ଆଉ ମୋଟେ ଦିନ ଦିନ ଅଛି, ଶୂଳି ଦେଖିବାକୁ ଲୋକେ ସମସ୍ତେ ଉଦ୍‌ଗ୍ରୀବ, ଏଇ ସମୟରେ ମୁଖ୍ୟମନ୍ତ୍ରୀଙ୍କ ନିଜ ଇଜଲାସ୍‌ରୁ ହୁକୁମ ଆସିଲା, ଅଦାଲତର ରାଏ ବାହାରିବା ପର୍ଯ୍ୟନ୍ତ ଶୂଳି ବନ୍ଦ ରଖାଯିବ ।

ରାଜ-ସରକାରଙ୍କ ପକ୍ଷରୁ ଅଦାଲତରେ ହୋଇଥିବା କ୍ଷତିପୂରଣ ମକଦ୍ଦମାରେ ଉଭୟ ପକ୍ଷରୁ ଭାରି ଟଣାଓଟରା ଚାଲିଲା । କୁମ୍ଭାର ପକ୍ଷରୁ ଯୁକ୍ତି ହେଲା, କୁମ୍ଭାର ପ୍ରାଣ ଦେଇ ନିଜକୃତ ଅପରାଧର ପ୍ରାୟଶ୍ଚିତ୍ତ କରିବାକୁ ଥିବା-ଠାରେ, ଅନ୍ୟ କ୍ଷତିପୂରଣ ଫାବୁନାହିଁ । ସେତିକିରେ ଯଦି ବାଦୀ ସନ୍ତୁଷ୍ଟ ନୁହନ୍ତି,

ତେବେ କୁମ୍ଭାରର ସମସ୍ତ ସଂପତ୍ତି—ତିଆରି ହୋଇ ରହିଥିବା ହାଣ୍ଡି, କୁମ୍ଭାର-ଚକ, ସଂଗୃହୀତ ମାଟି ଓ ଜାଳକାଠ ସମେତ୍—ସବୁ ରାଜସରକାର ନିଅନ୍ତୁ । ମାନହାନି ମକଦ୍ଦମାରେ, ପାଞ୍ଚଟଙ୍କା ତିନିଟଙ୍କାରେ ମାନ ମିଳୁଥିବା ସ୍ଥଳେ, କୁମ୍ଭାରର 'ସର୍ବସ୍ୱ', ଏ କ୍ଷେତ୍ରରେ ଯଥେଷ୍ଟ ହେବା ଉଚିତ ।

ବାଦୀପକ୍ଷର ଓକିଲ ଏ କଥା ସବୁ ହସରେ ଉଡ଼ାଇଦେଲେ । ସେ ଖୁବ୍ ହାଡ଼ଗୋଡ ହଲାଇ, ସ୍ମୃତି, ଶାସ୍ତ୍ର ଦେଖାଇ କହିଲେ—"ରାଜସରକାରର ସମ୍ପତ୍ତିର ଅଭାବ ନାହିଁ । କିନ୍ତୁ ତାଙ୍କର ବୟସ ଓ ସାମର୍ଥ୍ୟର ଅଭାବ । ବହୁତ ଔଷଧପତ୍ର ଖାଇ, ପୂଜା ପର୍ବ କରି, ସେ ଶେଷରେ ତାଙ୍କର ଉତ୍ତରାଧିକାରୀ ସୃଷ୍ଟି କରିଥିଲେ ; ଆଉ ତାହାର ସମ୍ଭାବନା ଏକାବେଳକେ ନାହିଁ ବୋଲି ରାଜ୍ୟର ସବୁ ଡାକ୍ତର ସାକ୍ଷ୍ୟ ଦେଇ ସାରିଛନ୍ତି । ସମସ୍ତ ସମ୍ପତ୍ତି, ଏପରି କି ସମସ୍ତ ରାଜ୍ୟ ବିନିମୟରେ, ସେ ଗୃହାନ୍ତି ନିଜର ଉତ୍ତରାଧିକାରୀ । ତେଣୁ ଆମ ପକ୍ଷରୁ ସର୍ବନିମ୍ନ ଦାବୀ, ରାଣୀ-ମା'ଙ୍କର ଗର୍ଭ ଠିକ୍ ଯେଉଁ ଅବସ୍ଥାରେ ଥିଲା, ସେହି ଅବସ୍ଥାରେ ତାହାକୁ ପୁନଃସଂସ୍ଥାପିତ କରିବା ସକାଶେ କୁମ୍ଭାର ଆଇନତଃ ଦାୟୀ । ଜଣେ ଅନ୍ୟକୁ ମାରିଦେଲେ ନିଜେ ମୃତ୍ୟୁଦଣ୍ଡ ପାଇବ—ଏ ନୀତି ଧ୍ୱଂସମୂଳକ । ସଭ୍ୟତାର ବିକାଶରେ, ଆମର ଦୃଷ୍ଟିକୋଣ ଗଠନମୂଳକ ହେବା ଦରକାର । ତେଣୁ ଯେ ଗର୍ଭ ଖସାଇ ଦେବାରେ ଦାୟୀ ହୋଇଛି, ସେ ତାହା ପ୍ରତ୍ୟର୍ପଣ କରୁ ।" ରାଜ-ଓକିଲ ତାଙ୍କ ବାଗ୍ମିତାରେ ପ୍ରତିବାଦ ପାଇଁ ସନ୍ଧି ରଖି ନାହାନ୍ତି । ତା'ପରେ ପ୍ରଶ୍ନ ହେଲା "ଏହା ହେବ କିପରି ?" ରାଜଗୁରୁଙ୍କୁ ସମନ ହେଲା । ସେ ପୁରାଣ ଓ ସ୍ମୃତିରୁ ପ୍ରମାଣ ଦେଖାଇଲେ, "ଏପରି ସ୍ଥଳେ ଦେଶରେ ନିୟୋଗ ପ୍ରଥା ଚାଲୁଥିଲା । ରାଜଗୁରୁ ଓ ରାଜପୁରୋହିତମାନେ, ରାଜା କ୍ଳୀବ ବା ମୃତ ହେଲେ, ରାଣୀଙ୍କୁ ପୁତ୍ରବତୀ କରୁଥିଲେ । କିନ୍ତୁ ଦେଶ, କାଳ ଓ ପାତ୍ରରେ ବିଚାର ହୁଏ । ଆମ ଦେଶରେ ଏ ଚଳଣି ପୂର୍ବେ ଥିଲା, କିନ୍ତୁ ଏ କାଳରେ ତାହା ପରିତ୍ୟକ୍ତ ହୋଇଛି । କଳିଯୁଗରେ ପ୍ରତି କାର୍ଯ୍ୟ ପାଇଁ ନିଜେ କର୍ତ୍ତା ଦାୟୀ ('କଲୌ ତୁ କେବଲଂ କର୍ତ୍ତା ଫଳଭୁକ୍ ପାପାପୁଣ୍ୟୟୋଃ') । ପୁଣି ମୁଁ (ରାଜଗୁରୁ) ମଧ୍ୟ ଏ କାମକୁ ପାତ୍ର ନୁହେଁ । ମୋ'ର ପୁତ୍ର ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟାର୍ଥୀ, ତାହାର ବିବାହ ହୋଇନାହିଁ । ଭାର୍ଯ୍ୟା ନ ଥିବା ବ୍ରାହ୍ମଣ 'ନିଯୋଗ-ବିଧାନ' ପାଇଁ ଅଯୋଗ୍ୟ ।

ପୁଣି ବିଗୁଡ଼ି ଗଲା । ଜାତିପାତିର ଭେଦଭାବ ଦୂର କରାଯାଉଥିବା ସ୍ଥଳେ, ଖାଲି ବ୍ରାହ୍ମଣ-ପଣ୍ଡିତଙ୍କୁ 'ନିୟୋଗ'ରେ ଲଗାଇବା ନ୍ୟାଯ୍ୟ ନୁହେଁ ବୋଲି ହାକିମ ମନେ ମନେ ବିଚାରିଲେ, କିନ୍ତୁ ଭରସି କରି କିଛି ନ ଥାନ୍ତି । ନିଜେ ସେ ଶେଷ ନିଷ୍ପତ୍ତି କରି ନ ପାରି ଏଇ ପର୍ଯ୍ୟାୟ ଉପରେ ରାଜ-ଦରବାରକୁ ପରାମର୍ଶ ମାଗିଲେ ।

ରାଜାଙ୍କର ଏହା ବ୍ୟକ୍ତିଗତ କଥା ତେଣୁ ସେ ନିଷ୍ପତ୍ତି ଦେବା ଠିକ୍ ହେବ କି ନାହିଁ ବୋଲି କେତେକଙ୍କର ସନ୍ଦେହ ଥାଏ । କିନ୍ତୁ ମନ୍ତ୍ରୀବରଙ୍କର କୌଣସି ସନ୍ଦେହର ଅବକାଶ ନ ଥିଲା । ସେ ପରାମର୍ଶ ଦେଲେ "ଏଡ଼େ ବଡ଼ ରାଜ୍ୟର ରାଜା, ରାଜକାର୍ଯ୍ୟ କଲାବେଳେ ନିଜର ସ୍ୱାର୍ଥଚିନ୍ତା ଦ୍ୱାରା ପ୍ରଭାବିତ ହେଉଛନ୍ତି ବୋଲି ଯେ କହିବ ସେ ରାଜଦ୍ରୋହୀ । ଏଭଳି ଗୁରୁତର ବିଷୟରେ ଖାସ୍ ରାଜା ବାହାଦୁରଙ୍କ ବ୍ୟତୀତ ଆଉ କେହି ଶେଷ ସିଦ୍ଧାନ୍ତ କରିବାର ଅଧିକାରୀ ନୁହନ୍ତି ।"

ଏଇ ପରାମର୍ଶ ବଳରେ ରାଜା ନିଜର ନିଷ୍ପତ୍ତି ଶୁଣାଇଲେ । କୁମ୍ଭାର ଉପରେ ତାଙ୍କର ହେଉଥିବା ରାଗକୁ ସେ ସଂପୂର୍ଣ୍ଣ ଦବାଇ ପାରିଲେ ବୋଲି ତାଙ୍କ ନିଷ୍ପତ୍ତିରୁ ଜଣାପଡ଼ିଲା ନାହିଁ । ମକଦମା ଚାଲିଲା ବେଳୁ ସେ ତା' ଉପରେ ରକ୍ତଚକ୍ଷୁ ଦେଖାଉଥାନ୍ତି । ମନେ ମନେ କହୁଥାନ୍ତି, "କୁମ୍ଭାର ଟୋକାଟାର କେଡ଼େ ଦମାକ୍ ! ମୋର ଏତେ ଦିନର ଆଶା ଓ ଉଦ୍ୟମକୁ ଭଣ୍ଡୁର କରିଦେଲା । ପୁଅ ଜନ୍ମ କରାଇବା କେଡ଼େ କଷ୍ଟ, ଅଙ୍ଗେ ନିଭାନ୍ତା କି ଜାଣନ୍ତା, ମୋର ସେ କେଡ଼େ ଅନିଷ୍ଟ କରିଛି !" କୁମ୍ଭାରକୁ ଶିକ୍ଷାଦେବାର ସୁଯୋଗ ତା' ମନକୁ ଆସି ମିଳିଯିବାରୁ ସେ ହୁକୁମ ଦେଲେ—"ରାଣୀ ଯାଇ କୁମ୍ଭାର ଘରେ ରହିବେ । ତାଙ୍କର ଓ ତାଙ୍କର ଚାକର ଓ ଟେରା ସମସ୍ତଙ୍କର ଖର୍ଚ୍ଚ ରାଜ-ନଅରରୁ ଯିବ । ରାଣୀଙ୍କର ଠିକ୍ ଯେତିକି ମାସରେ ଗର୍ଭ ନଷ୍ଟ ହୋଇଥିଲା, ସେ ପୁଣି ସେତିକି ମାସ ଗର୍ଭ ହେବା ପରେ ନଅରକୁ ଫେରିବେ । ସେ ପର୍ଯ୍ୟନ୍ତ କୁମ୍ଭାରର ଚାଳରେ ବସିବା ମୁଲତବି ରହିଲା ।" ରାଜାଜ୍ଞା ! ଯା ଉପରେ ଆଉ ଅପିଲ ନାହିଁ ।

( ୩ )

ରାଣୀ ପ୍ରଥମେ କିଛି ଦିନ ଏ ଆଦେଶର ମୂକ ପ୍ରତିବାଦ କଲେ । ତାଙ୍କ ବୁଢ଼ୀ ପୋଇଲିଟିର ପରାମର୍ଶରେ କୁମ୍ଭାର ବିଚରା, ରଜାଘରୁ ଯାଉଥିବା ଘିଅ, ଦହି, ସର ଖାଇ ନିଜର ରୂପକୁ ବଦଳାଇଲା ! ଟୋକା ବୟସ, ତା' ଗୋରା ଚେହେରାଟା ନିଆଁ ପାଣି ଖରାର ଦାଉରେ ଯାହା ମଳିନ ହୋଇ ଯାଇଥିଲା ତାହା ପୁଣି ଉକୁଟିଲା । ଲୁଗାପଟା ଯାହାକୁ ଯେତେ । ଘୋଡ଼ାଚଢ଼ା, କୁସ୍ତି କସରତ କରିବାକୁ ତାକୁ ଫୁରସତ୍ ମିଳିଲା । ମାସ ଦୁଇଟାରେ ତାକୁ ଚିହ୍ନେ କିଏ ? କିନ୍ତୁ ରାଣୀ ଚିହ୍ନିଲେ । ଯାହାହେଉ, ଚାରିମାସ ଭିତରେ ରାଜ-ସରକାରଙ୍କର ଗୁପ୍ତ ପୁଲିସ, ଧୋବଣୀଠାରୁ ଖବର ପାଇଲେ ଯେ ରାଣୀ ମା'ଙ୍କର ମାସିକିଆ ଲୁଗା ପଡ଼ିବା ବନ୍ଦ ହୋଇଛି । ପୁଲିସ ଏ ଖବରର ରିପୋର୍ଟ ରାଜ-ସରକାରଙ୍କୁ ଜଣାଇଦେଲେ ଓ ତାହାର ନକଲ ଯଥାରୀତି, ଅଦାଲତ, ସେସନ୍‌କୋର୍ଟ ଓ ଶୂଳି ବିଭାଗକୁ ପଠାଇଦେଲେ । ଜଙ୍କ ଲାଗିଥିବା ଶୂଳିଖମ୍ବରେ ଚିକ୍‌କଣ ଘଷାଘଷି ଆରମ୍ଭ ହେଲା ଓ ଶୂଳିଆପଦା ସଫା ସୁତୁରା ରଖିବାକୁ ଆଦେଶ ହୋଇଗଲା ।

ଦେଖଣାହାରିଙ୍କ ଦିନ ବଡ଼ ବିଳମ୍ବରେ ଯାଉଥାଏ । କିନ୍ତୁ କୁମ୍ଭାର ଓ ରାଣୀଙ୍କ ଦିନ ଆଖି ପିଛୁଳାଏ ପରି ଚାଲିଯାଉଥାଏ । ସାତମାସ ପୂର୍ଣ୍ଣ ହୋଇଗଲା । ପୁଲିସ ଆସି କୁମ୍ଭାରକୁ ଧରିନେଲେ । ରାଣୀ ନିଅରକୁ ଫେରିବା ପାଇଁ ଜିନିଷପତ୍ର ବନ୍ଧାବନ୍ଧି ଆରମ୍ଭ ହେଲା । ରାଣୀ, ନିଅରରୁ ସାଙ୍ଗରେ ଆଣିଥିବା କନକ ଦୁର୍ଗାଙ୍କ ଆଗରେ ଅଖଣ୍ଡ-ଦୀପ ଜାଳି ଅଧିଆ ପଡ଼ିଥାନ୍ତି । ମଝିରେ ମଝିରେ ଡାକୁଥାନ୍ତି— "ମା ! ମୋର ଆଉ କେହି ନାହିଁ, ତମେ ଭରସା ।" କେତେବେଳେ କମିତି ସିନେମା ଗୀତରୁ ପଦେ ବୋଲୁଥାନ୍ତି—

"ବିଗିଡ଼ି ବନାନେ ବାଲେ, ବିଗିଡ଼ି ବନା ଦୋ
ନୟା ହମାରା ପାର୍ ଲଗା ଦୋ"

ବୁଢ଼ୀ ପୋଇଲି ତ ରାଷ୍ଟ୍ରଭାଷାରେ ଅତି ଅପ୍ରବୀଣ । ମନେ କରେ, ରାଣୀ ମା ବାୟାଣୀ ହୋଇଗଲେ ।

ସେ କଥାକୁ କିଏ ପଚାରୁଛି ? କୁମ୍ଭାରକୁ ନେଇ ସେସନ୍ କୋର୍ଟରେ ହାଜର କରାଗଲା । ଜଜ୍ ହୁକୁମ ଦେଲେ, "ତୁମର ଶୂଳିରେ ବସିବା ଯାହା

ମୂଳତତ୍ତ୍ୱ ରହିଥିଲା, ତାହା ଏଥର ତାମିଲ ହେବ । ଆର ହସ୍ତା ଆଙ୍କର ବାରେ, ଛୁଇ ଠିକ୍ ଗୋଡ଼ତଳେ ପଡ଼ିବା ବେଳେ, ତୁମେ ପୂର୍ବ ଅର୍ଡ଼ର ଅନୁସାରେ ଶୂଳରେ ବସିବ ।"

କୁମ୍ଭାର-ପକ୍ଷ ଓକିଲ ଆପତ୍ତି ଦରଖାସ୍ତ କଲେ, "ହଜୁର ! ଆସାମୀ ଜାତିରେ କୁମ୍ଭାର ! ପିଲାଦିନୁ ସେ କୁମ୍ଭାର ଚକରେ କାମ କରିବାରୁ ତାର ଗୁହ୍ୟ ଦ୍ୱାର ସବୁବେଳେ ଏପାଖ ସେ ପାଖ, ଏକ କଥାରେ ଅଥୟ ଥାଏ । ଏପରି ଲୋକ ଶୂଳରେ ବସିଲେ, ହଜୁରଙ୍କ ଆଦେଶ ଅନୁସାରେ, ଶୂଳ ଗୁହ୍ୟ ଦ୍ୱାରବାଟେ ଯାଇ ମୁଖ ଦ୍ୱାରବାଟେ ବାହାରିବା ଅସମ୍ଭବ । ତେଣୁ ଜଣେ ଗୁହ୍ୟ-ଗୁରୁ ଲୋକ ତା' ବଦଳରେ ଶୂଳ ଦେଲେ, ଆପଣଙ୍କ ଆଦେଶ କାଏମ୍ ହେବ ଓ ନ୍ୟାୟ ବିଚାରର ମର୍ଯ୍ୟାଦା ରହିବ ।"

ଏ ବିଷୟରେ ମଧ୍ୟ ଜଜ୍ ରାଜ-ସରକାରଙ୍କର ନିଷ୍ପତ୍ତି ଲୋଡ଼ିଲେ । ରଜା ହୁକୁମ କଲେ, "ସାମାନ୍ୟ ସାମାନ୍ୟ ବିଷୟରେ ଅମ୍ଭ ପାଖକୁ ନିଷ୍ପତ୍ତି ପାଇଁ ଧାଇଁ ଆସିବା ଆମ୍ଭେ ପସନ୍ଦ କରୁନାହୁଁ । ରାଜ-ସରକାରଙ୍କ କର୍ମଚାରୀମାନେ ନିଜ ମୁଣ୍ଡରୁ ଦାୟିତ୍ୱ ଖସାଇବା ଠିକ୍ ନୁହେ । ଆସାମୀ ପକ୍ଷରୁ ଯାହା ଆପତ୍ତି ହେଉଛି, ତାହା ଯଥାର୍ଥ । ରାଜ୍ୟରୁ ଜଣେ ଗୁହ୍ୟ-ଗୌରବ ଥିବା ଲୋକ ଶୀଘ୍ର ଖୋଜାଯାଉ ।"

ରାଜାବାହାଦୁରଙ୍କ ବିରକ୍ତିର ସୂଚନା ପାଇ ସେସନ୍ ଜଜ୍‌ଙ୍କଠାରୁ ଆରମ୍ଭ କରି ପୁଲିସ କନ୍‌ଷ୍ଟେବଲଙ୍କ ପର୍ଯ୍ୟନ୍ତ ସମସ୍ତେ, ଚଟାପଟ ଅର୍ଡ଼ର ତାମିଲ କରିବାରେ ଲାଗିଗଲେ । ଦିନ ଭିତରେ ସମଗ୍ର ରାଜ୍ୟ ତୋଳପାଡ଼ କରିଦେଇ ପୁଲିସ ଏମିତି ଜଣେ ଲୋକର ସନ୍ଧାନ ପାଇଲେ, ଯାହାଙ୍କର ଗୁହ୍ୟଦ୍ୱାର ଅଥୟ ଥିବା ବିଷୟରେ ସନ୍ଦେହର ପ୍ରଶ୍ନ ଉଠି ନପାରେ ।

ଘୋର ଜଙ୍ଗଲ ଭିତରେ ଗିରିଦରିରେ ଗୋଟିଏ ରମଣୀୟ ସ୍ଥାନ । ଜଣେ ଯୋଗୀ ସମାଧିରେ ବସିଥାନ୍ତି ; ତାଙ୍କର ପରିଚାରକ ଜଣେ ୨୫ ବର୍ଷର ଯୁବକ । ସେ ଆଶ୍ରମ ପରିଷ୍କାର କରିବାରେ ନିରତ । ପୁଲିସ ସବ୍-ଇନ୍‌ସପେକ୍ଟର ତାଙ୍କୁ ଡାକି ଯୋଗୀଙ୍କର ପରିଚୟ ପଚାରିଲେ । ବୁଝିଲେ, ସେ ଆଜକୁ ୧୯ ଦିନ ହେଲା ସମାଧିରେ ବସିଛନ୍ତି, ଆଉ ଦୁଇ ଦିନରେ ଉଠିବେ । ସବ୍-ଇନ୍‌ସପେକ୍ଟର ପ୍ରଥମେ ଭାବିଥିଲେ, ସେଇ ସମାଧି ଅବସ୍ଥାରେ ଯୋଗୀଙ୍କୁ ଶୂଳରେ ବସାଇ

ଜଜ୍‌ଙ୍କ ପାଖକୁ ନେଇଯିବେ । ଚେଲା ଡରାଇଦେଲେ ; କହିଲେ, ତାଙ୍କର ଆଖି ଆଗ ଯାହା ଉପରେ ପଡ଼ିଯିବ ସେ ଆଉ ଜୀବନର ଆଶା ପାଇବ ନାହିଁ । ସବ୍-ଇନ୍‌ସପେକ୍‌ଟରଙ୍କ ନିଜ ପିଲାକବିଲାଙ୍କ କଥା ମନେ ପଡ଼ିଯିବାରୁ ସେ ଅଧୀର ନ ହୋଇ ଅପେକ୍ଷା କଲେ । ଆଉ ଶୂଳି-ତାରିଖ ତିନି ଦିନ ଥାଏ ଗିରିପଟେ କଡ଼ା ପୁଲିସ ପହରା ରହିଲେ ।

ଠିକ୍ ଘଣ୍ଟାରେ ଆଲାର୍ମ ଗୃବ ଦେଲା ପରି, ୨୧ ଦିନ ଯିମିତି ପୂରିଛି, ଯୋଗୀଙ୍କର ଆଖି ଆସ୍ତେ ଆସ୍ତେ ମେଲା ହେଲା । ଚେଲା ପାଣି ଢାଳ ନେଇ ପାଖରେ ଥୋଇଲା ବେଳକୁ ସବ୍-ଇନ୍‌ସପେକ୍‌ଟର ଯାଇ ପୁଲିସ କାଇଦାରେ ସାଲ୍ୟୁଟ୍ କରି ନିଜର ଉଦନ୍ତ ଶୁଣାଇଲେ । ଯୋଗୀ ଅବାକ୍ ।

କିଛି ସମୟ ତୁନି ରହି ସେ କହିଲେ, "ଆଚ୍ଛା, ହଉ, ରାଜାଙ୍କର ଆଦେଶ ଯେତେବେଳେ ସେଥିରେ ନାହିଁ କରିବା ଅଧର୍ମ । କିନ୍ତୁ ଆପଣଙ୍କର ତ କାମ କାଲି ଦି'ପହରେ । ମୁଁ ୨୧ ଦିନ ହେଲା ବାହ୍ୟ କାମ କରିନାହିଁ, ଜଳ ଗ୍ରହଣ କରି ନାହିଁ, ଟିକିଏ ଲମ୍ବି ହୋଇନାହିଁ, ଆପଣ କାଲି ସକାଳୁ ଆସନ୍ତୁ । ସକାଳୁ ବାହାରିଲେ ବେଲ ପହରକୁ ଯାଇ ପହଞ୍ଚିବା ।"

ଜିପ୍ ଗାଡ଼ି ମହଜୁଦ୍ ରହିଛି ବୋଲି ମୁନ୍‌ସି ବାବୁଙ୍କଠାରୁ ଶୁଣି ସେ କହିଲେ, "ତେବେ ଏଠାରୁ ତ ବେଲ ପହରକୁ ଗଲେ ହେବ । ......"

ମୁନ୍‌ସିବାବୁଙ୍କ ସମୟାନୁବର୍ତ୍ତିତାକୁ ଧନ୍ୟ କହିବା, ବେଲ ପାଞ୍ଚ ଘଡ଼ିକୁ ଯୋଗୀ ଓ ତାଙ୍କ ଚେଲା ଯାଇ ଶୂଳିଆପଦାର ବଡ଼ ବରଗଛ ମୂଳେ ଆସନ ଜମାଇ ସାରିଲେଣି । ଶୂଳିଆପଦା ଗିରିପଟେ ଦେଖଣାହାରି ଭରପୂର । ଜଜ୍ ଆସିଗଲେଣି, ମନ୍ତ୍ରୀ ଆସିଗଲେଣି । ରାଜା ଆସିବାକୁ ଆଉ ଦଣ୍ଡେ ବାକି । ଜଣେ ବଡ଼ ପୁଲିସ-ହାକିମ ଥରକୁ ଥର ଆସି ଯୋଗୀଙ୍କୁ ଜଗିରହିଥିବା ପହରାବାଲାଙ୍କୁ କ'ଣ ଫୁସ୍‌ଫୁସ୍ କରି କହୁଥାନ୍ତି । ଏତିକିବେଳେ ଚେଲା ଯୋଗୀଙ୍କ କାନରେ କ'ଣ ଫୁସ୍‌ଫୁସ୍ କରି କହିଲେ । ଯୋଗୀ ବି ସେଇପରି ଅସ୍ପଷ୍ଟ ସ୍ୱରରେ କ'ଣ ଉତ୍ତର ଦେଲେ । ଦେଖଣାହାରି ବିଚାରୁଥାନ୍ତି, ବୁଢ଼ା ବ୍ରାହ୍ମଣ ବିଚରା ତା' ପୁଅକୁ ଘରଦ୍ୱାର କଥା କହୁଛି ।

ଏତିକିବେଳେ ମହୁରୀ, ବୀର କାହାଳୀ ବାଜିଲା । ରାଜା ବିଜେ କଲେ ବୋଲି ଲୋକଙ୍କ ଭିତରେ ଗୁଞ୍ଜନ ଖେଳିଗଲା ବେଳକୁ ଯୋଗୀ ଓ ତାଙ୍କ

ଚେଲାଙ୍କ ଆଡ଼କୁ ଗୁହିଁ, ଲୋକେ ଏକାବେଳକେ ନିର୍ବେଦ ହୋଇଗଲେ । ପହରିବାଲା ଯୋଗୀଙ୍କ ହାତ ଧରି ଶୂଳଖମ୍ବ ଆଡ଼କୁ ନେଉଚନ୍ତି, ଏଇ ସମୟରେ ଚେଲା ପହରିବାଲାଙ୍କୁ ବାଟ ଓଗାଳି ପାଟି କଲା, "ମତେ ଆଗ ଶୂଳି ଦିଅ, ତାଙ୍କୁ ଯେବେ ଦେବ, ପଛରେ ଦିଅ ।" ପହରିବାଲା ଚେଲାକୁ ଆଡ଼େଇଲା ବେଳକୁ ସେ ଆହୁରି ପାଟିକଲା, "ନାଁ, ମୁଁ କେଉଁଠି ଗୁଡ଼ିବ ନାହିଁ । ପିଲାଟି ଦିନୁ ମୁଁ ଆଜିକି କୋଡ଼ିଏ ବର୍ଷ ହେଲା, ସ୍ବାମୀଙ୍କର ସେବା କରିଆସୁଛି, କ'ଣ ଏଇଥିପାଇଁ ? ଏ ଜନ୍ମ ସେବା କରି କରି ଗଲା, ଆର ଜନ୍ମରେ ମୁଁ ଟିକିଏ ସୁଖ ନ ପାଇବି କାହିଁକି ମ ?"

ଯୋଗୀ କହିଲେ, "ଆରେ ବାପ୍ପା ! ଇମିତି ଲୋକହସା କର ନା ! ଯେତେହେଲେ ମୁଁ ତୋର ଗୁରୁ । ମୋ ସଙ୍ଗେ ବାଦ କରୁଛୁ କାହିଁକି ? ମୁଁ ଆଗ ଶୂଳି ଘିନେ, ତୁ' ଯଦି ଘିନିବୁ ପଛରେ ଘିନ—ଇ ।" ଚେଲା ନିଗ୍ରେଡ଼-ବନ୍ଦା । ଖାଲି କହୁଥାଏ, "କାହିଁକି ? ତମେ ପଛରେ ଘିନୁ ନାହଁ !! ଏ ଜନ୍ମ ଯାକ ତ ହାକମି କଲ ? ଆର ଜନ୍ମରେ ଏବେ ତମେ ଟିକିଏ ମୋଠାରୁ କମ୍ ହେଲେ କ'ଣ ମାରି ହୋଇଯାଉଛ ?" ରଜା, ମନ୍ତ୍ରୀ, ଜଜ୍, ପୁଲିସ ସାଇବ ସମସ୍ତେ ଆଚମ୍ବିତ । ଘଟଣା କ'ଣ ? ରଜାଙ୍କ ଇଙ୍ଗିତରେ ଯୋଗୀ ଗୁମୁକୁ ଡକରା ହୋଇ ଆସିଲେ । ରଜା ପଚାରିଲେ, "କିଓ ବାବାଜୀ, ଏ ହାଲତ୍ କ'ଣ ? କୌଣସିମତେ ଶୂଳିର ସମୟ ଗଡ଼ାଇ ଦେବାକୁ ଏ ନବରଙ୍ଗ ଆରମ୍ଭ କରିଛ ନା କ'ଣ ?"

ଯୋଗୀ କହିଲେ, "ହଜୁର୍ ! ସମୟ ଗଡ଼ିଯାଉଚି ବୋଲି ତ ମୁଁ ନିଜେ ବଡ଼ ଚିନ୍ତିତ । ଆପଣ ହୁକୁମ କରନ୍ତୁ, ସେ ଟୋକାଟାକୁ ପୁଲିସ ଧରି ନେଇ-ଯାନ୍ତୁ । ମୋତେ ଶୀଘ୍ର ଶୂଳିରେ ବସାଇ ଦିଅନ୍ତୁ । ମୋର ଏତିକିମାତ୍ର ପ୍ରାର୍ଥନା । ସମୟ ଗଡ଼ିଗଲେ ସବୁ ଭଣ୍ଡୁର ହୋଇଯିବ ।"

ରଜାଙ୍କ ବିସ୍ମୟ ଆହୁରି ବଢ଼ିଲା । ସେ କହିଲେ, "କିଏ ! କ'ଣ ଭଣ୍ଡୁର ହୋଇଯିବ । ପରିଷ୍କାର କରି କହୁନାହଁ ?"

ଯୋଗୀ କହିଲେ, "ମହିମା ! ସେ ଗୋଟିଏ ଗୁପ୍ତ କଥା । ଏଥିପାଇଁ ମୁଁ ବହୁବର୍ଷ ତପସ୍ୟା କରିଛି । ସିଦ୍ଧି ଆସିଲା ବେଳକୁ ଏ ବିଘ୍ନ ଉପସ୍ଥିତ ହେବାରୁ ମୋତେ ବଡ଼ ବାଧା ହେଉଛି । ଆପଣ ମୋତେ ଆଉ କିଛି ପଚାରନ୍ତୁ ନାହିଁ । ସେ ନିମକହାରାମ ଟୋକାଟାକୁ ଶୂଳଖମ୍ବଠାରୁ ଆଡ଼େଇ ଦେବାକୁ ହୁକୁମ କରନ୍ତୁ ।"

ରାଜାଙ୍କର ଜିଦ୍ ଲାଗିଲା, ଅସଲ କଥାଟା ଶୁଣିବେ । କାହାର ବା ଜିଦ୍ ନ ଲାଗିବ ? ରାଜଗୁରୁ ବାହାର ପଡ଼ି କହିଲେ, "ମହାରାଜ ! ଆପଣଙ୍କୁ କିଏ ନ ଜାଣେ ? ଆପଣ ଆମ ମୁଲକରେ ସବୁଠାରୁ ସିଦ୍ଧ-ପୁରୁଷ । ଆପଣ ରାଜାଙ୍କୁ ଅମାନ୍ୟ କରିବା କ'ଣ ଠିକ୍ ହେଉଛି ?"

ଯୋଗୀ ଦବିଗଲେ । ନିଜର ଗୁମର ଫିଟିଗଲା ପରି ମନ ଦୁଃଖରେ ରାଜାଙ୍କୁ ଜଣାଇଲେ, "ମଣିମା ! ମୁଁ ଏଥର ରାଜଯୋଗ ପାଇଁ ତପସ୍ୟା କରୁଥିଲି । ମୋତେ ଜଣାପଡ଼ିଛି, ଆଜି ଅଭିଜିତ୍ ନକ୍ଷତ୍ର ଆଉଥାଉ ଯେ ଆଗ ଶୂଳି ଧେନିବ ସେ ହେବ ଏ ଦେଶର ରାଜା, ଯେ ପଛେ ଧେନିବ ସେ ହେବ ତାଙ୍କ ମନ୍ତ୍ରୀ । ଏ ଟୋକାଟାକୁ ମୁଁ କାଲି ରାତି ତମାମ ବୁଝାଇଲି । ମୁଁ ତା'ର ଗୁରୁ— ମୁଁ ରାଜା ହେଲେ ସିନା ମାନିବ ! ତା' ବିଗୁରିକୁ ଦେଖନ୍ତୁ !"

ରାଜା ଏହା ଶୁଣି କ୍ଷଣେ ତୂନି ହେଲେ । ତା'ପରେ, ପାଖରୁ ଅନ୍ୟ ସମସ୍ତଙ୍କୁ ଆଡ଼େଇ ଦେଇ, ମନ୍ତ୍ରୀଙ୍କୁ କହିଲେ, "ମନ୍ତ୍ରୀ ! ଶୁଣିଲ କି ! ଆମ ରାଜ୍ୟରେ ରହି ଏ ବାଆଜିଟା କିମିତି ଆମରି ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛି । ସେ ହେବ ରାଜା, ଆଉ ଆମେ ଯାଇ ଗଛମୂଳେ ତପସ୍ୟା କରିବୁଁ ?"

ମନ୍ତ୍ରୀ କହିଲେ, "ଆଜ୍ଞା, କାଲି ତ ସିମିତି ହୋଇଚି । ବୁନିଆଦି ବିଗୁରି ନାହିଁ । ବାହ୍ମଣଟାର ମନ ଉଙ୍କେଇଲାଣି, ରଜା ହେବ ।"

ରାଜା କହିଲେ, "ଆଉ ଏଇ ଟୋକରାଟା ହବ ମନ୍ତ୍ରୀ ! ମୁଁ ସ୍ୱା କରାଇ ଦେବି ନାହିଁ । କଦାପି ନୁହେଁ । ଏ ଜନ୍ମରେ ଯେ ରାଜା, ଯେ ମନ୍ତ୍ରୀ, ଆର ଜନ୍ମରେ ବି ସେଇ, ସେଇଆ । ଆସ ଆମେ ଶୂଳି ଧେନିବା । ମୁଁ ଆଗ, ତମେ ଟିକିଏ ପଛେ ।"

ମନ୍ତ୍ରୀଙ୍କର ମୁହଁ ଟିକିଏ ବିବର୍ଣ୍ଣ ହୋଇଯିବାରୁ ରାଜା କହିଲେ, "ମନ୍ତ୍ରୀ ! ସଦ୍ୟ ଲାଭକୁ ତୁମର ଏତେ ଲୋଭ ! ଆଜି ଯଦି ତ୍ୟାଗ କରିଥିବା, ତେବେ ଭବିଷ୍ୟତରେ ଅମାପ ସୁଖ ମିଳିବ । ପଞ୍ଚବାର୍ଷିକ ଯୋଜନା ପ୍ରଚାରକଙ୍କୁ କ'ଣ ଶିଖାଇଛ, କ'ଣ ମନେ ନାହିଁ ? ଆଉ ବା କେତେ ଦିନ ? ମତେ ହେଲା ଷାଠିଏ ତୁମକୁ ପଚାଶ । ଆଉ ବର୍ଷ ପାଞ୍ଚ ସାତଟା ରଜା, ମନ୍ତ୍ରୀ ହେବା ବୋଲି ଆର ଜନ୍ମ ତମାମର ରାଜଭୋଗ ଓ ମନ୍ତ୍ରୀଭୋଗ ଏଇ ଚୁର ବୁଢ଼ା ବ୍ରାହ୍ମଣ ଓ ତା ଟୋକରାକୁ ଦେଇଦେବା ! ମୁଁ ତ ଆଗ ବସିବି, ଦେଖିବି କେତେ ମନ ଉଲ୍ଲାସରେ ବସିବି ।"

ମନ୍ତ୍ରୀଙ୍କଠାରୁ ଆଉ କିଛି ଶୁଣିବାକୁ ଅପେକ୍ଷା ନ କରି ରାଜା ଆଉ ଗୋଟାଏ ଶୂଳୀ ସାଙ୍ଗେ ସାଙ୍ଗେ ଖଞ୍ଜିବାକୁ ହୁକୁମ କଲେ। ଯେତେ ବେଗେ ଆସି ତାହା ବସିଗଲା. ଦେଖିଲେ ମନେ ହେବ, ସତେ ଯିମିତି ଏହା ଏମିତି ଦରକାର ହେବ ବୋଲି, ଆଗରୁ କେହି ଜାଣିଥିଲା।

ଅଭିଜିତ୍ ନକ୍ଷତ୍ର ପାର ହେବା ପୂର୍ବରୁ ରାଜା ଶୂଳରେ 'ବସିବାକୁ ବାହାରିଲେ। ରାଜଗୁରୁ ଆପତ୍ତି କଲେ, "ମହିମା, ଏ କ୍ଷେତ୍ରରେ 'ଗୁରୁ-ଗୌରବ' ହିଁ ପ୍ରଧାନ ବିଚାର୍ଯ୍ୟ।"

ନିଜ ଶିକାରରେ ଅପର ହାମୁଡ଼ି ପଡ଼ିଲେ ବାଘ ଯେମିତି ହୁଏ, ରାଜା ସେଇପରି ଗର୍ଜି-ଉଠିଲେ, "ରାଜଗୁରୁ ! ମୁଁ ଆଗରୁ ଜାଣେ, ତୁମେ ମୋର ଶତ୍ରୁ। ଅଚ୍ଛା ହେଉ ! ମୁଁ ଫେରିଲେ, ତୁମ କଥା ବୁଝିବି। ତୁମ ବିଚାରରେ ମୋ ଗୁରୁ ଅସ୍ତ୍ର ନୁହେଁ, ଆଉ ଏଇ ବାଆଜିଟାର ଅସ୍ତ୍ର, ନାହିଁ ? ତୁମମାନଙ୍କ ଭଳି ଅପଦାର୍ଥଙ୍କ ସଙ୍ଗରେ ମୁଁ ଏତେକାଳ ଅସ୍ତ୍ର ହୋଇ ବସେ, କ'ଣ ମାହାଳିଆ ?"

କେଜାଣି ଆଉ କ'ଣ ଅନ୍ତରାୟ ଆସି ପହଞ୍ଚିପାରେ, ଏଇ ଆଶଙ୍କାରେ ରାଜା ସେଇ ରାଜପୋଷାକରେ, ଶୂଳଖମ୍ବ ପାଖକୁ ଗଲେ ଓ ଘୋଡ଼ାରେ ଚଢ଼ିଲା ପରି ଉଚ୍ଚୁଳି କରି ଶୂଳରେ ବସିଲେ। ଶୂଳର ଅଗ ପାଟିବାଟେ ବାହାରି ଯାଇଲା ପର୍ଯ୍ୟନ୍ତ ତାଙ୍କ ମୁହଁକୁ ଭବିଷ୍ୟତର ସୁଖସ୍ୱପ୍ନ ଆଲୋକିତ କରୁଥାଏ।

ମନ୍ତ୍ରୀଙ୍କ ବେଳକୁ ଟିକିଏ ଅଡୁଆ ହେଲା। ରାଜାଙ୍କ ପାଟିବାଟେ ଶୂଳକାଠି ବାହାରିବା ପୂର୍ବରୁ ପୁଲିସ ସାହେବ ମନ୍ତ୍ରୀଙ୍କ ହାତ ଧରି ଭିଡ଼ିଲେ। ମନ୍ତ୍ରୀ ଆପତ୍ତି କଲେ, "ଜଣକୁ ତ ଶୂଳ ଦେବାର ଆଦେଶ ହୋଇଛି, ଦୁଇଜଣ କାହିଁକି ? ଜଜ୍ ଏ ବିଷୟରେ ରାୟ ଦିଅନ୍ତୁ।" ଜଜ୍ ଦେଖିଲେ, ଲୋକଙ୍କର ମାନସିକ ଅବସ୍ଥା ଯାହା. ସେଥିରେ ମନ୍ତ୍ରୀଙ୍କୁ ରଖି ରଖି ନିଜେ ଶୂଳରେ ବସିବା ଯାଏଁ ହୁଏତ କଥା ଯିବ। ସେ କହିଲେ, "ମୁଁ ଏ ବିଷୟରେ ନିଷ୍ପତ୍ତି ଦେଇ ନ ପାରେ। ଆପଣଙ୍କର ଯଦି ଆପତ୍ତି ଥାଏ, ଆପଣ ରାଜାବାହାଦୁରଙ୍କ ପାଖକୁ ଯାଇ ନିବେଦନ କରନ୍ତୁ।"

---



ଦେବରାଜ ଇନ୍ଦ୍ର ବୃହସ୍ପତିଙ୍କ ଆଶ୍ରମ ଭିତରକୁ ପଶିଗଲା ବେଳକୁ ଦେଖିଲେ ଅସୁର-ଗୁରୁ ଶୁକ୍ରାଚାର୍ଯ୍ୟ ସେଠାରୁ ବାହାରି ଆସୁଛନ୍ତି । ଏହି ଶୁକ୍ରାଚାର୍ଯ୍ୟଙ୍କ ମନ୍ତ୍ରଣାରେ ବୁଦ୍ଧିଆ ହୋଇ ଓ ତାଙ୍କ ବୈଜ୍ଞାନିକ ଆବିଷ୍କାର ଫଳରେ ବଳୁଆ ହୋଇ, ଅସୁରମାନେ ଦେବତାମାନଙ୍କୁ ଘୋର ଯୁଦ୍ଧରେ ହଟାଇ ଦେଇଥାନ୍ତି । ଇନ୍ଦ୍ରଙ୍କ ବଜ୍ର ଅସୁରମାନଙ୍କ ମାରଣାସ୍ତ୍ର ଆଗରେ କାଉଁରିଆ କାଠିପରି ହୋଇଥାଏ । ଏ ବିପଦବେଳେ ପରାମର୍ଶ କରିବାକୁ ସେ ଯେଉଁଠିକୁ ଆସିଛନ୍ତି, ସେଇଠାରୁ ଶୁକ୍ରାଚାର୍ଯ୍ୟ ବାହାରିବାର ଦେଖି ଇନ୍ଦ୍ରଙ୍କର ମନ ଯାହା ହୋଇଥିବ କହିବା ବାହୁଲ୍ୟ ମାତ୍ର ।

ବିଶେଷ ଚିନ୍ତିତ ହୋଇ ସେ ଘର ଭିତରକୁ ଗଲେ ଓ ଗମ୍ଭୀରଭାବରେ ଦେବଗୁରୁଙ୍କ ପାଖକୁ ଯାଇ ସେ ଦେଖାଇଦେବା ଖରଡ଼ି ଆସନରେ ବସିଲେ । ଦେବଗୁରୁ କୁଶଳ ପ୍ରଶ୍ନ ଆରମ୍ଭ କରି କହିଲେ, "ଦେବରାଜ ! ଆଜି ଆପଣ ଏଡ଼େ ବିଷଣ୍ଣ କାହିଁକି ? ଆପଣ ଇନ୍ଦ୍ର ! ସମସ୍ତ ଐଶ୍ୱର୍ଯ୍ୟ ଆପଣଙ୍କଠାରେ । ଆପଣଙ୍କ ମୁହଁ ବିରସ ହେଲେ ସୃଷ୍ଟି ରହିବ ?"

ଇନ୍ଦ୍ର ଆହୁରି ଗମ୍ଭୀର ହୋଇ କହିଲେ, "ଗୁରୁଦେବ ! ମୋର ମନର କଥା କ'ଣ ଆପଣ ଜାଣିପାରୁ ନାହାନ୍ତି ? ଆଜି ପର୍ଯ୍ୟନ୍ତ ମୁଁ ଅସୁରମାନଙ୍କୁ ପରୁଆ କରୁ ନଥିଲି । କିନ୍ତୁ ଏଥର ଯେଉଁ ଯୁଦ୍ଧ ହେଲା, ତାହା ମୋତେ ନିରାଶ କରିଦେଇଛି । ପୂର୍ବ ଯୁଦ୍ଧବେଳେ ଆପଣଙ୍କର ମନେ ଥିବ । ସେତେ-ବେଳେ ଶୁକ୍ରାଚାର୍ଯ୍ୟ ଏପରି ଗୋଟାଏ ବାଣ ଆବିଷ୍କାର କରିଥିଲେ, ତାହା ସାଧାରଣ ତୀର ପରି ଆସି ଦେହରେ ବାଜିବା ସଙ୍ଗେ ସଙ୍ଗେ ଭୀଷଣ ଶବ୍ଦ କରି ଫାଟିଯାଉଥିଲା । ଏବେ ଆହୁରି ଏକ ଅସ୍ତ୍ର ବାହାରିଛି । ଏଇଠାରୁ ଫୋପାଡ଼ିଲେ ଅର୍ଦ୍ଧବୃତ୍ତାକାରରେ ଯାଇ ଲକ୍ଷ୍ୟ ସ୍ଥାନରେ ପହଞ୍ଚୁଛି । ଶତ୍ରୁକୁ ଦେଖିବାକୁ ନାହିଁ, ପ୍ରତିରକ୍ଷା କରିବାକୁ ଫୁରସତ୍ ନାହିଁ ! ମୁଁ ବିଚାରୁଛି, ଆମର କିମିତି କରିବା । ତାଙ୍କର ପରି ମାରଣାସ୍ତ୍ର ( Ballistic missiles ) ଆମେ ତିଆରି ନ କଲେ ଆଉ ରକ୍ଷା ନାହିଁ ।"

ବୃହସ୍ପତି ନିର୍ବିକାରଭାବେ କହିଲେ, "ସେ ବିଦ୍ୟା ତ ମୋତେ ଜଣା ନାହିଁ । ଶୁକ୍ରାଚାର୍ଯ୍ୟଙ୍କୁ ପଚାର ।"

ଇନ୍ଦ୍ର କହିଲେ, "ଏ ବିଦ୍ୟା କ'ଣ ଏକୁଟିଆ ଶୁକ୍ରାଚାର୍ଯ୍ୟ ଜାଣନ୍ତି ? ତାଙ୍କର ତ କେତେ ଶିଷ୍ୟ ଥିବେ !"

ବୃହସ୍ପତି କହିଲେ, "ନିଶ୍ଚୟ ଥିବେ ; ନ ଥିବେ କାହିଁକି ? ଅସୁରଙ୍କର ତ ବିଶେଷ ପ୍ରତିପତ୍ତି ଅଛି, ବିଭବ ଅଛି, ତପସ୍ୟା ଅଛି ; ଶୁକ୍ରାଚାର୍ଯ୍ୟ ସେମାନଙ୍କର ଗୁରୁ । ତାଙ୍କ ପ୍ରତି ଆକୃଷ୍ଟ ହୋଇ ତ ଅନେକ ଶିଷ୍ୟ ଆସୁଥିବେ । ଆପଣ ଅନୁସନ୍ଧାନ କରନ୍ତୁ । ଦେଖନ୍ତୁ, ସେଇମାନଙ୍କ ଅନୁଗ୍ରହରେ ଆପଣ ତାଙ୍କଠାରୁ ବଡ଼ ହୋଇ ରହି ପାରିବେ କି ନାହିଁ ?"

ଇନ୍ଦ୍ର ବିସ୍ମିତ ହୋଇ କହିଲେ, "ଦେବଗୁରୁ ! ଆପଣ କଣ ଦେହରୁ ଛଡ଼ାଇ କରି କଥା କହୁଚନ୍ତି ! ଦେବତାମାନଙ୍କର ଶ୍ରେୟ କ'ଣ ଆପଣ କାମନା କରୁନାହାନ୍ତି ? ଆପଣ କ'ଣ ଦେବଗୁରୁ ନୁହନ୍ତି ?"

ବୃହସ୍ପତିଙ୍କର ଚକ୍ଷୁରୁ ଗୋଟିଏ କିପରି ଜ୍ୟୋତି ବାହାରିଲା । ଇନ୍ଦ୍ର ମନେ କଲେ, ଦେବଗୁରୁ ବୋଧହୁଏ ରାଗିଗଲେ । ଏଇପରି ଥରେ ବୃହସ୍ପତି ଇନ୍ଦ୍ରସଭା ଛାଡ଼ି ଚାଲିଯାଇଥିଲେ ଯେ ତାଙ୍କୁ ବାରଦ୍ୱାର ଶୁଣିପିଣ୍ଡା ହେବାକୁ ପଡ଼ିଥିଲା । ବୃହସ୍ପତିଙ୍କ ଶକ୍ତି ଓ ଆନ୍ତରିକତା ବିଷୟରେ ତାଙ୍କର ଯେଉଁ ସଂଶୟ

ହୋଇଥିଲା, ତାହା ଅନେକ ପରିମାଣରେ ଦୂର ହେଲା । ସେ ବୃହସ୍ପତିଙ୍କ ଆଖିର କ୍ରୋଧରେ ଦେଖିଲେ ନିଜର ବିପଦ । କେଜାଣି ଯଦି ସେ ପୁଣି ଗ୍ଭଲିଯା'ନ୍ତି ! ସଂଭ୍ରମରେ ନିଜର ଆଖିକୁ ତଳକୁ କରି ଗୁରୁଦେବଙ୍କ ଚେତାବନୀ ଶୁଣିଲେ ।

"ଦେବରାଜ ! ଇସ୍‌ପାର୍ ସ୍ବା ଉସ୍‌ପାର୍"

ହିନ୍ଦି ଭାରତରେ ରାଷ୍ଟ୍ରଭାଷା ହେବାର ଖବର ପାଇ, କେଜାଣି ତାହା ସ୍ବର୍ଗକୁ ମଧ୍ୟ ଆକ୍ରମଣ କରିପାରେ, ଏଇ ଆଶଙ୍କାରେ ଦେବଗୁରୁ ହିନ୍ଦି ଅଭ୍ୟାସ କରୁଥାନ୍ତି । ବେଶି ଉତ୍ତେଜିତ ଅବସ୍ଥାରେ ତାହା ଫାଟି ଛିନ୍‌ଛିନ ହୋଇ କଥା ଭିତରେ ପଶିଯାଏ ।

"ଶୁକ୍ରାଚାର୍ଯ୍ୟଙ୍କର ଗୋଟିଏ ଦୀକ୍ଷା । ଆମର ଆଉ ଗୋଟିଏ ଦୀକ୍ଷା । ସେ ଗ୍ଭହୁଛନ୍ତି, ସବୁ ଆପେ କରି ପକାଇବେ ; ଭଗବାନଙ୍କପାଇଁ ଆଉ କିଛି ବାକି ରହିବ ନାହିଁ ; ଭଗବାନ ନିଜର ସମସ୍ତ କ୍ଷମତା ସ୍ବାଙ୍କୁ ଦେଇ ଯାଇଛନ୍ତି । ଆମର ବିଗ୍ଭର ଅନ୍ୟ ରକମ । ନିଜ ପାରୁପର୍ଯ୍ୟନ୍ତ କରୁଥିବା ; ନପାରିଲା ବେଳକୁ ଭଗବାନଙ୍କୁ ଡକେଇବା ; ହୁଏତ ସେ କିଛି କ୍ଷମତା ହାତରେ ପାଞ୍ଚି କରି ରଖିଥାଇ ପାରିଥାନ୍ତି ।"

ଦେବରାଜ ଟିକିଏ ଧୈର୍ଯ୍ୟ ହରାଇ କହିଲେ, "ତା'ତ ହେଲା । କିନ୍ତୁ ଆମେ ଆମ ପାରୁପର୍ଯ୍ୟନ୍ତ ଚେଷ୍ଟା କଲେ ବୋଲି ଧରିନେବା କିମିତି ?"

ବୃହସ୍ପତିଙ୍କ ମୁହଁର ତେଜ ଗାଢ଼ତର ନାଲିରଙ୍ଗ ଧରିଲା । ସେ କହିଲେ, "ପାରୁପର୍ଯ୍ୟନ୍ତ କରିବା ବୋଲି କ'ଣ ସଂସାରରେ ଧ୍ବଂସବୀଜ ବୁଣିଦେବା ? ଲୋକଙ୍କୁ ବିଡାବାଘ ପରି କ୍ରୂର ଓ ଗଧିଆଙ୍କ ପରି ଲୋଭିଲା କରିଦେବା ?"

ସ୍ବା ଭିତରେ ନାରଦ ଆସି ପହଞ୍ଚିଲେ । ସେ ଯୋଗାଇ ଦେଲେ, "ଖାଲି ବୃକୋଦର ନୁହେଁ, ବୃକର ମନ ମଧ୍ୟ ।"

ବୃହସ୍ପତି ସେ ଆଡ଼କୁ ଦୃଷ୍ଟି ନ ଦେଇ କହିଲେ, "ଯେଉଁ ଉପାୟ ଅବଲମ୍ବନ କଲେ ଲୋକଙ୍କର ସ୍ଥାୟୀ କ୍ଷତି ହୋଇଯିବ ବା ସେହିପରି ଆଶଙ୍କା ରହିବ, ସେ ସବୁ ଆମ କାର୍ଯ୍ୟକ୍ଷେତ୍ରର ବାହାରେ । ଏହା ତ ଦେବରାଜ ଜାଣନ୍ତି ।"

ଇନ୍ଦ୍ର ଯେଉଁତକ ଜାଣି ନଥିଲେ, ତାହା ନୂଆ କରି ଜାଣିଲେ । ପଗ୍ଭରିଲେ, "ତେବେ ବର୍ତ୍ତମାନ ଅବସ୍ଥାରେ କ'ଣ କରାଯିବ କହନ୍ତୁ ଦେବ-ଗୁରୁ ! ଦେବତାମାନଙ୍କର ଅବସାଦ ଆସିଗଲାଣି ।"

ବୃହସ୍ପତିଙ୍କ ମୁହଁରେ ସନ୍ତୋଷର ରେଖା ଦେଖାଗଲା । ସେ କହିଲେ, "ଦେବରାଜ ! ଆପଣଙ୍କୁ ଆଜି ଆଉଥରେ ଚେତାଇ ଦେବା ଦରକାର ପଡ଼ୁଛି । ଆପଣଙ୍କର ମୋ'ଠାରେ ବିଶ୍ୱାସ କେତେକଙ୍କୁ ଅସହ୍ୟ ହେଉଛି । ସେମାନେ ମୋ କଥାର କଦର୍ଥ କରିବେ । ମନରେ 'କିନ୍ତୁ' ହେଲା ମାତ୍ରେ ଆପଣ ମୋତେ ଶୁଣାଇ ଦେଉଥିବେ ଟି ।"

ଇନ୍ଦ୍ରଙ୍କର ସମ୍ମତିସୂଚକ ଭ୍ରୂଲତାପାତ ଦେଖି ଦେବଗୁରୁ ପୁଣି କହିଲେ, "ଆଜି ସେଇ ଉଦ୍ଦେଶ୍ୟରେ ଶୁକ୍ରାଚାର୍ଯ୍ୟଙ୍କୁ ଡକାଇଥିଲି । ମୁଁ ମାଗିଛି ଯେ, ଅସୁରମାନେ ଯେଉଁ ସର୍ତ୍ତ ଦାବି କରିବେ, ଦେବତାମାନେ ତାହା ପୂରଣ କରିବେ ।"

ଇନ୍ଦ୍ରଙ୍କ ମନ ଚଞ୍ଚଳ ହୋଇଗଲା । ସେ ଅର୍ଦ୍ଧଅସ୍ପଷ୍ଟ ସ୍ୱରରେ କହିଲେ, "ଦେବଗୁରୁ !" ବୃହସ୍ପତି କହିଲେ, "ଦେବରାଜ ! ମନକୁ ଖୁବ୍ ଟାଣ କରିବାକୁ ହେବ । ସର୍ତ୍ତ ନିର୍ଦ୍ଧିଷ୍ଟ କରିବାକୁ ଅସୁରମାନଙ୍କୁ ଦେଇ ସାରିଛି ।"

ଇନ୍ଦ୍ର କହିଲେ, "ସେ ସର୍ତ୍ତ କ'ଣ ହୋଇପାରେ ତାହା ଶୁକ୍ରାଚାର୍ଯ୍ୟଙ୍କ ଠାରୁ ତ ବାରିଥିବେ ? ମୋର ପୂର୍ଣ୍ଣ ବିଶ୍ୱାସ, ଆପଣ ଆମର ଜୁ କଲ ପ୍ରତିଶ୍ରୁତି ଦେଇଥିବେ ।" ବୃହସ୍ପତି ଅସନ୍ତୁଷ୍ଟ ହୋଇ କହିଲେ, "ମୋର ସନ୍ଦେହ ହେଉଛି, ଆପଣ ଭାରତର ବେତାର ବାର୍ତ୍ତାକୁ କାନେଇଛନ୍ତି । ମୋ ପ୍ରତି ଆପଣଙ୍କର ଅବିଶ୍ୱାସ ଏକାବେଳକେ ଛାଡ଼ି ପାରୁନାହାନ୍ତି ।"

ଇନ୍ଦ୍ର ଚୁପ୍ ହେଲେ । ବୃହସ୍ପତି କହିଲେ, "ମୋର ମନ ବଡ଼ିବାକୁ ଯାଇ ସେ ସର୍ତ୍ତଟା କହି ପକାଇଛନ୍ତି । ଅସୁରରାଜାଙ୍କର ଇଚ୍ଛା, ସେ ଆମକୁ ଭୋଜିକୁ ନିମନ୍ତ୍ରଣ କରିବେ । ଆମେ ନିମନ୍ତ୍ରଣ ରକ୍ଷା କଲେ, ତାଙ୍କର ବୈରଭାବ ରହିବ ନାହିଁ ।"

ଅଗ୍ନି ଲୁହୁବୁହୁ ହୋଇ ଏତକବେଳେ ପଶୁ ପଶୁ କହିଲେ, "ସେଥିରେ ଆପତ୍ତି କ'ଣ ? ନିମନ୍ତ୍ରଣ ରକ୍ଷା କରିବା ତ ଆମର ଧର୍ମ !"

ଅନ୍ୟ ସମୟରେ ଇନ୍ଦ୍ର ହସି ଦେଇଥାନ୍ତେ । ଏତେବେଳେ ଟିକିଏ ରୂଢ଼ ସ୍ୱରରେ କହିଲେ, "ଆପଣ ନିମନ୍ତ୍ରଣ ରକ୍ଷା କରିବାକୁ ସିନା ସବୁବେଳେ ତତ୍ପର । ସବୁ ଖାଇ ପାର କରିପାରିବେ । ତେଣୁ ଆପଣଙ୍କର ବାଛ ବିଚାର ନାହିଁ, ମାନମହତ ନାହିଁ । ଅସୁରମାନେ ଅମେଧ୍ୟ ଖାଆନ୍ତି । ଆପଣ ଖାଇବେ

ବୋଲି କ'ଣ ଧନ୍ୱନ୍ତରୀ ଖାଇଦେବେ ? ଗୁରୁଦେବଙ୍କ୍ ପଗ୍ଚରଣ ତ ଦେଖି, ସେ ନଜେ ପାର କରି ପାରିବେ କି ନାହିଁ ?"

ନାରଦ ହସି ହସି କହିଲେ, "ହଁ ସେ ବ ବ୍ରାହ୍ମଣ ! ତାଙ୍କର ଅଟକବ ନାହିଁ !"

ବୃହସ୍ପତି ନାରଦଙ୍କ ଆଡ଼କୁ ଭ୍ରୂକିମ ବରକ୍ତିରେ ଗ୍ରହି କହିଲେ, "ନାରଦ, ତୁମେ ଆଉ ରହସ୍ୟ ଆରମ୍ଭ କରନାହିଁ ।"

ନାରଦ ସତେ ଦୁଗୁଣେଇ ହେଲା ପରି ଜଳା ଭର୍ତ୍ସିକଲେ, "ଆପଣେ, ପବନଙ୍କୁ ସ୍ଥିର ରହିବାକୁ କହିବା ଯାହା, ମୋତେ ରହସ୍ୟ ଛାଡ଼ିବାକୁ କହିବା ସେଇଆ । 'ନମ୍ଭ କ ମଧୁର ହୋଇବ' ବୋଲି ପଗ୍ କବସୂର୍ଯ୍ୟ ଗାଇଛନ୍ତି ।"

ବୃହସ୍ପତିଙ୍କ ବରକ୍ତି ଟିକଏ ବାସ୍ତବ ହେଲା । ଧୈର୍ଯ୍ୟଚ୍ୟୁତିର ଲକ୍ଷଣ ଦେଖାଇ ସେ କହିଲେ, "ହଉ, ଅନ୍ତତଃ ତାହା ବର୍ତ୍ତମାନ ବନ୍ଦକର । ଏଇ-ଠାରେ ଓଙ୍କାର ମଙ୍ଗ ଭଗବାନଙ୍କ ହାତକୁ ବଢ଼ାଇ ଦଆଯାଉ । ଅସୁରଙ୍କୁ ବର୍ତ୍ତମାନ ଶାନ୍ତ କରିବା ଦରକାର । ନ ହେଲେ ଥଇଥାନ ମିଳିବ ନାହିଁ । ସେ ଯାହା କହୁଛନ୍ତି ସେଥିରେ ହଁ କରାଯାଉ । ଏଇଆ ବଗ୍ଚରି ମୁଁ ହଁ କରି ଦେଇଛି ; ଅଗ୍ନିଙ୍କ ପରି ମୋର କ୍ଷମତା ବୋଲି ନୁହେଁ । ଯଦି ଆମେ ତାଙ୍କ ସଙ୍ଗେ ବସି ଖାଇ ନ ପାରିବା ବୋଲି ଭଗବାନ ବଗ୍ଚରିବେ, ତେବେ ବଳେ ସେ ଉଦ୍ଧାର ପାଇବାର ବାଟ ବାହାର କରିବେ ।"

ଇନ୍ଦ୍ର ମେଲାଣି ନେଲେ । ଗତ୍ୟନ୍ତର ନ ଦେଖି ସେ ମନକୁ ଟାଣ କରିବାକୁ ଲାଗିଲେ ଯେ ନତାନ୍ତ ତୋଟିଧରି ପଡ଼ିଲେ, ଅସୁରଙ୍କ ସଂଖ୍ୟା ସଭା କାର୍ଯ୍ୟଟା ଆଗ ଚଳାଇ ଦେଇ, ସୁବଧା ଦେଖି କାଯ୍ୟାଶୁଦ୍ଧି କରାଇ ନେବେ ।

ଅସୁରଙ୍କ ସଙ୍ଗେ ଦେବତା ଏକା ପଂକ୍ତିରେ ଖାଇ ବସିବେ, ଏକଥା ଅସୁରଙ୍କ ଭିତରେ ଯେତେ ବେଗେ ବ୍ୟାପିଗଲା, ଦେବତାଙ୍କ ଭିତରେ ମଧ୍ୟ ସେତିକ ବେଗେ ବ୍ୟାପିଗଲା । ଗ୍ଚରିଆଡ଼େ ସମସ୍ତେ ଏଇ କଥା ଫୁସ୍‌ଫାସ୍ ହେଉଥାନ୍ତି । ଅସୁରେ ମସୁଧା କରୁଥାନ୍ତି,'ଏତିକବେଳେ ପାଲି ପଡ଼ିଛି । ଦେବତା ଯେଉଁ ଜିନଷକୁ ସବୁଠାରୁ ବେଶୀ ଅସୁକାନ୍ତି, ଆମର ସେଇ ଜିନଷର ବଢ଼ିଆ ତରକାରି କରେଇବା ।' କୁକୁଡ଼ା, ଖାସି, କୁଟରା, ହରିଣ ସଙ୍ଗକୁ କଅଁଳିଆ ଘୁଷୁରି ଓ କଅଁଳା ବାଛୁରିଙ୍କ ତାଲିକା ହେଉଥାଏ । ଏଣେ ଦେବତାଙ୍କର

ଭାଲେଣି ପଡୁଥାଏ, ଯେତେ ଭଲ ରନ୍ଧା ହେଲେ କ'ଣ ଆମିଷ ନିରାମିଷ ହୋଇଯିବ ! କିଏ କହୁଥାଏ, ବାସନା ବାଜିଲେ ବାନ୍ତି କରିପକାଇବି ; କିଏ କହୁଥାଏ, ଜାଣିଜାଣି ଅମେଧ୍ୟ ଖାଇଲେ କୃଚ୍ଛ୍ର ଚାନ୍ଦ୍ରାୟଣ ବ୍ରତ ବି କାୟାଶୁଦ୍ଧି କରାଇ ପାରିବ ନାହିଁ । ଧନ୍ୱନ୍ତରୀ କହିଲେ, "ବୃହସ୍ପତି ଯଦି ଖାଇ ତପସ୍ୟାରେ ଶୁଦ୍ଧ ହୋଇ ପାରିବେ, ମୁଁ ତା' ସାଙ୍ଗକୁ ହଜମି ବଟିକାର ପ୍ରୟୋଗ କରିଦେବି । କେହି କେହି ଭରସି କରି ଏ ସବୁ ବୃହସ୍ପତିଙ୍କର କର୍ଣ୍ଣଗୋଚର କରାନ୍ତେ— ବୃହସ୍ପତି ଉତ୍ତେଜିତ ହୋଇ କହି ପକାଇଲେ, "ଦେଖୋ ହରି କରେ କ୍ୟା ?"—

ସେଇ ଦିନୁ ସମସ୍ତେ ଏଇ ଦୁଆ ଧରିଲେ । ଏହାକୁ ମାନବାକୁ ରକ୍ଷଣଶୀଳମାନେ ଭଗବାନଙ୍କୁ ପରମତତ୍ତ୍ୱ ରୂପରେ, କ୍ଷୀର ସମୁଦ୍ରରେ, ପରମ ପିତା ରୂପେ, ଗୋପୀଜନ ବା ଅଷ୍ଟ ପଞ୍ଚମହିଷୀଙ୍କ ସହି ଖେଳରେ, ବୋଧିଦ୍ରୁମମୂଳେ ଦେଖିବାକୁ ଚେଷ୍ଟା କଲେ । ଯେଉଁମାନଙ୍କଠାରେ ନୂଆଯୁଗର ହାଉଆ ବାଜିଛି, ସେମାନେ ଶଙ୍କିତ ହେଲେ । ଭଗବାନଙ୍କ ଖେଳ ବା ସମାଧି ଭାଙ୍ଗୁ, ଭାଙ୍ଗୁ ତ ସଙ୍ଖୁଡ଼ି ସବୁ ସରିଥିବ, ତା'ପରେ କ'ଣ ? କେହି କେହି କେତେଟା ପେନ୍‌ସିଲିନ୍ ବା ଷ୍ଟେରୋମାଇସିନ ଇଞ୍ଜେକ୍‌ସନ ନେବାର କଳ୍ପନା କରୁଥାନ୍ତି । ହରିଣ ମାଂସ ଅପେକ୍ଷା ବାଛୁରି ମାଉଁସରେ କ'ଣ ଅଧିକ ଅପକାରୀ ସତ୍ତ୍ୱ ଅଛି ପରୀକ୍ଷା କରିବାକୁ ଗୋଟିଏ ବାଛୁରି ମାରିବା ପାପ ହେବ ନାହିଁ ବୋଲି ଜଣେ ମତ ଦେଲେ । ବଡ଼ ପଣ୍ଡିତମାନେ କହିଲେ, 'ସବୁଥିରେ ପଞ୍ଚଭୂତ, ସେ ସବୁ ପୁଣି ଅଣୁ ଓ ପରମାଣୁର ବିଭିନ୍ନ ସଂଯୋଗ ମାତ୍ର ।'

ଏହିପରି ହେଉ ହେଉ ଭୋଜିର ଦିନଟା ଆସି ପହଞ୍ଚିଲା । ଏଣେ ଶୁକ୍ରାଚାର୍ଯ୍ୟ ଓ ତେଣେ ବୃହସ୍ପତିଙ୍କ ବ୍ୟତୀତ ଆଉ ସମସ୍ତେ ଅନୁଦିନ ରାତି ଅନିଦ୍ରା ଯୋଗୁଁ ଅସୁସ୍ଥ ହୋଇ ପଡ଼ିଥିଲେ । ଇନ୍ଦ୍ର ବୃହସ୍ପତିଙ୍କ ଉପରେ ଅଗତ୍ୟା ବିଶ୍ୱାସ କରି କଡ଼େ କଡ଼େ ଶୋଉଥାନ୍ତି । ଶେଷଆଡ଼କୁ ଶୀତଳ ସ୍ୱପ୍ନରେ ବଡ଼ ଜିତାପଟଟାଏ ହେଲା ବୋଲି ଅସୁର ରାଜା, ନିଘୋଡ଼ ନିଦ ଶୋଉଥାନ୍ତି ।

ଶେଷରେ ଭୋଜି ଦିନ ଆସିଲା—ଭୋଜି ବେଳ ବି ଆସିଲା । "ଗଡ଼ୁ ପିଢ଼ା ଧରି ଆସିବା ହେଉ, ଆପଣେ" ବୋଲି ଅସୁରେ ଡାକ ଦେଇଗଲେ । ବୃହସ୍ପତି ଧଡ଼୍‌କିନା ବାହାରି ପଡ଼ିଲେ । ତାଙ୍କ ନିର୍ଦ୍ଦେଶରେ ଇନ୍ଦ୍ର ବିଳମ୍ବ କରୁଥିବା

ଦେବତାମାନଙ୍କୁ ଡକାଡକି କରି କୁହାଇଲେ—ଯେପରି ଅମୁକ ବା ସମୁକ ଆସିଲେ ନାହିଁ ବୋଲି ଅସୁର ପକ୍ଷରୁ ଶୁଣିବାକୁ ନ ହୁଏ ।

ପତ୍ରପାଣି ହୋଇଗଲା । ଦେବତାମାନେ ଏକପାଖିଆ ହୋଇ ବସିଥାନ୍ତି । ଅସୁର ପରିଷୂଣିମାନେ ସେମାନଙ୍କ ପତ୍ରରେ ଅଣକ ଅଣକ କରି ମାଛ ମାଂସର ଝୋଳ, ଝାଲ୍, ବେସର, ରସା, କାଳିଆ ଅଜାଡ଼ୁଥାନ୍ତି । ଅଧିକାଂଶ ଅସୁକେଇ ହେଉଥାନ୍ତି । ଯୋକେ ତ ବାନ୍ତି ବନ୍ଦ କରିବାକୁ ନିରାଟ ଚେଷ୍ଟା କରୁଥାନ୍ତି । ବରୁଣ ଖାଅନ୍ତି। ମାଛର ଆଇଁଷିଣିଆ ଗନ୍ଧରେ ଅଭ୍ୟସ୍ତ ହେଲେ ମଧ୍ୟ, ରନ୍ଧା ମାଛର ମହକରେ ସେତେ ଯେମିତି ବାନ୍ତି ରୋକି ପାରିବେ ନାହିଁ ବୋଲି ଜଣା-ଯାଉଥାଏ । ବୃହସ୍ପତି ତୂନି ହୋଇ ବସିଥାନ୍ତି । ପୂର୍ଣ୍ଣ ନିର୍ବିକାର । ସେତେ ଯେପରି ପାଟି ସହିତ ନାକକୁ ବି ସେ ବନ୍ଦ କରି ଦେଇଛନ୍ତି । ଗୌତମଙ୍କ ଅଭିଶାପଗ୍ରସ୍ତ ଇନ୍ଦ୍ରଙ୍କୁ ଗନ୍ଧଟା ସେପରି ବାଧୁ ନଥାଏ । କିନ୍ତୁ ଯୁଗଯୁଗର ମାନ ମର୍ଯ୍ୟାଦା 'ଏଇ ଗଲା' ବୋଲି ତ୍ରସ୍ତ ହୋଇ ସେ କଡ଼େଇ କଡ଼େଇ ବୃହସ୍ପତିଙ୍କୁ ଗୁହିଁଥାନ୍ତି ।

ଦେବ ଓ ଅସୁର ସମସ୍ତଙ୍କଠି ଲାଗିଗଲା । ଏ ଖବର ଅସୁରରାଜାଙ୍କର, ଗୋଚର ହେଲାରୁ ସେ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ । ଶୁକ୍ରାଚାର୍ଯ୍ୟ ଡାକିଲେ "ମହାଜନମାନେ ! ଏଥର ଚଳନ୍ତୁ ଗୁଡ଼ିବାକୁ ଅବଧାନ ହେଉ ।"

ସର୍ବୋଦୟବାଲା ଆପତ୍ତି କଲେ, "ଆପଣେ ! ଆମେ ଚଳନ୍ତୁ ଗୁଡ଼ନ୍ତୁ ! ଏହା ଉଦର ପୂରଣ ନୁହେଁ, ଯଜ୍ଞ କର୍ମ ବୋଲି ଆମେ କହିବୁ ।" ବୈଷ୍ଣବ କହିଲେ, "ଆମେ ପ୍ରଭୁଙ୍କୁ ସ୍ମରଣ କରି ଖାଇବୁ ।" ଏଇପରି ବିଭିନ୍ନ ସଂପ୍ରଦାୟର କୋଳାହଳ ହେଲା । ତାହା ଟିକିଏ ଥମିବାରୁ ବୃହସ୍ପତି କହିଲେ, "ଚଳନ୍ତୁକୁ ଯେ ଯେଉଁ ପ୍ରକାରରେ ମାନୁଛି, ତା'କୁ ସେ ଚଳନ୍ତୁ ; ସେଥିରେ କାହାରି କିଛି ଆପତ୍ତି ହୋଇ ନପାରେ । ଏ ସଂଖୁଡ଼ି ସଭାରେ ଏକାଠି ହେଲା ପରେ, ଆଉ ଶ୍ରେଷ୍ଠ ଶ୍ରେଷ୍ଠ କଥାରେ ବାଳ ଛିଣ୍ଡାଇବା ବା ଚିରିବା ଉଚିତ ହେବ ନାହିଁ । ଆଜି ଆମ ଉଭୟ ପକ୍ଷର ଗୋଟିଏ ଅପୂର୍ବ ଦିନ । ଆଜିର ଏଇ ମୈତ୍ରୀ ସ୍ଥାୟୀ ହେଉ । ଏହାକୁ ଦୃଢ଼ତର କରିବା ପାଇଁ ମୁଁ ଗୋଟିଏ ବ୍ୟବସ୍ଥା କରିଛି । ମୋର ଆଶା, ସମସ୍ତେ ଏଥିରେ ଏକମତ ହେବେ ।"

ସମସ୍ତେ ଉତ୍ସୁକ ହୋଇ ଗୁହିଁଲେ । ବୃହସ୍ପତି ଏପରି କ'ଣ ବିଶେଷ ବ୍ୟବସ୍ଥା କରିଛନ୍ତି, କେହି ଠଉରେଇ ପାରିଲେ ନାହିଁ । ଟିକିଏ ତୂନି ରହି

ବୃହସ୍ପତି ତାଙ୍କ ବ୍ୟବସ୍ଥାଟି ଦେଖାଇ କହିଲେ, "ଦେଖନ୍ତୁ ! ମୁଁ ମୋ ପାଖରେ ଗୋଟାଏ ପାରୁଶ ପକାଇଅଛି । ଏହା ଅସୁର ପକ୍ଷର ମୁରବୀଙ୍କ ପାଇଁ । ସେ ଆସନ୍ତୁ, ମୋ ସଙ୍ଗେ ବସନ୍ତୁ । ଆମ୍ଭମାନଙ୍କ ମୈତ୍ରୀ ସ୍ଥାୟୀ ହେଉ ।"

ଦେବତାମାନେ ଶୁକ୍ରାଚାର୍ଯ୍ୟଙ୍କ ଆଡ଼କୁ ଚାହିଁଲେ । ସେମାନଙ୍କ ଚାହିଁବା ଲକ୍ଷ୍ୟ କରି ଅସୁରଙ୍କ ଭିତରୁ ଜଣେ କହିକହି କହି ପକାଇଲେ. "ଆପଣ ଦେବତାମାନଙ୍କର ମୁରବୀ କିପରି ହେଲେ ସେ କଥା ଆମେ ଜାଣୁନାହିଁ । ଆପଣ ଗୁରୁ ହୋଇ ପାରନ୍ତି, ପରାମର୍ଶଦାତା ହୋଇପାରନ୍ତି, କିମ୍ବା ବା ପଣ୍ଡିତ ହୋଇ ପାରନ୍ତି । କିନ୍ତୁ ଆପଣ ମୁରବୀ ହୋଇ ନ ପାରନ୍ତି । ଆପଣ ରାଜା ନୁହନ୍ତି । ଆମର ରାଜା ମୁରବୀ । ଶୁକ୍ରାଚାର୍ଯ୍ୟ ଆମ ରାଜାଙ୍କଠାରୁ ଦରମା ପାନ୍ତି । ସେ ଚିଫ୍ ସେକ୍ରେଟାରୀ ବା ଆଡ଼ଭାଇଜର ମାତ୍ର ।"

ବୃହସ୍ପତି କହିଲେ, "ମୁଁ ମୁରବୀ ବୋଲି ବଡ଼େଇ କରୁନାହିଁ । ଇନ୍ଦ୍ର ମୋତେ ଗୁରୁ ବୋଲି ମାନିବାରୁ ମୁଁ ମୁରବି—ଏଇ ପ୍ରଥା ( Convention ) ଆମ ଭିତରେ ଚଳିଗଲାଣି ।"

ଅସୁରରାଜା ଇନ୍ଦ୍ରଙ୍କ ଆଡ଼କୁ ଚାହିଁ ପଚାରିଲେ, "କି, ଦେବରାଜ ! ସେଥିରେ କ'ଣ ଆପଣଙ୍କର ସାଇ ?"

ଇନ୍ଦ୍ର ସମ୍ମତି ଜଣାଇ ତୁନି ନ ହୋଇ ଆପଣେଇତି ଦେଖାଇ କହିଲେ, "ଆପଣମାନେ ମଧ୍ୟ ସେଇ ପ୍ରଥା ଗ୍ରହଣ କରନ୍ତୁ । ରାଜା ବଳରେ ବଡ଼ । କିନ୍ତୁ ବୁଦ୍ଧିରେ ଯେ ବଡ଼ ସେ ପ୍ରକୃତ ବଡ଼ । ସେ ଦ୍ରଷ୍ଟା, ତେଣୁ ପଥପ୍ରଦର୍ଶକ—ମୁରବୀ ।"

ଲାଗିଲା ହୋ ହା । କିଏ କହିଲା, "ଚଢ଼ା ଦରମା ଦେଲେ ତୁମ୍ଭଠୁଁ ବଡ଼ ତୁମ୍ଭଠୁଁ ବଡ଼ ବୁଦ୍ଧିଆ ଆସି ପହଞ୍ଚିବେ । ଆଚ୍ଛା ତାଙ୍କ ହାତରେ କୁଟା ଖଣ୍ଡିକ ଦ୍ୱି ଖଣ୍ଡ ହୋଇପାରିବ ନା ?" ଆଉ ଜଣେ କହିଲା, "ରଜା କ'ଣ ବଡ଼ ଲଢ଼ୁଆ ହେବାରୁ ରଜା ହୋଇଛନ୍ତି ଯେ ମୁରବୀ ବୋଲାଇବେ ? ବଳରେ ବଡ଼ ମୁରବୀ ହେଲେ ତ ସେନାପତି ମୁରବୀ ହେବେ ।" ସେଇ ଅସୁରଙ୍କ ଭିତରୁ ଯେଉଁମାନେ ତରକାରୀର ବାସନାରେ ମୁଗ୍ଧ ହୋଇ ଯାଇଥିଲେ, ସେମାନେ ପାଟି କରୁଥାନ୍ତି, "ଆରେ ମୁରବୀରେ କ'ଣ ଅଛି ମ ? ଯେ ମୁରବୀ ସେ ମୁରବୀ ! ମୁରବୀ କଥା ପଛରେ ପକାଇବା । ଜିନିଷଗୁଡ଼ାକ ନଷ୍ଟ ହୋଇଯାଉଛି, ହାତ ଚଳନ୍ତୁ ।"

ପତ୍ରକୁ ପତ୍ର ପାଟିତୁଣ୍ଡ କରୁ କରୁ ହାତ ଚଳାଇ୍ଲା । ପତ୍ରରେ ନୁହେଁ, ଅସୁରମାନଙ୍କର ପରସ୍ପର ଉପରେ । ସେମାନଙ୍କ ନିଜ ପତ୍ରଗୁଡ଼ିକ ଗୋଡ଼ରେ ଦଳିହୋଇ ଧୂଳିରେ ମିଶିଗଲା । ଦେବତାମାନଙ୍କ ପତ୍ର ଉପରେ ଆଙ୍ଗୁଳେ ଲେଖାଏଁ ଧୂଳି । ପ୍ରଥମ ଦୁହାଙ୍ଗ ପରେ କ୍ଷଣକ ପାଇଁ ଶାନ୍ତ ଆସିବାରେ ଶୁକ୍ରାଚାର୍ଯ୍ୟ ବୃହସ୍ପତିଙ୍କୁ କହିଲେ, "ଆପଣେ ! ଏ ସାମାନ୍ୟ କଥାରେ ଏଡ଼େ ବଡ଼ ନିମିତ୍ତ ନଷ୍ଟ ନହେଉ । ଆପଣମାନେ ଅତିଥି, ଅସୁର-ପକ୍ଷ ନିମନ୍ତ୍ରଣକାରୀ, ଯଜମାନ । ଏମାନେ ପଛକୁ ରହିଯା'ନ୍ତୁ । ତାଙ୍କ ଭିତରୁ ଅନେକ ଝାଳନାଳ ହୋଇ ଗଲେଣି । ପଛେ ଧୁଆଧୋଇ ହୋଇ ବସିବେ ।"

ଇନ୍ଦ୍ର ଆତଙ୍କିତ ହେଲେ । ବୃହସ୍ପତି ତାଙ୍କ ଆଡ଼କୁ ଚାହିଁ ଧୀରେ ଧୀରେ କହିଲେ, "ନିରାଶ ହୁଅ ନାହିଁ; ଚକ୍ରପାଣି ଭରସା ।" କହିଲେ ସିନା, ତାଙ୍କ ମନରେ ଟିକିଏ ଭୟ ଉଙ୍କି ମାଇଲା । ସେ ଶୁକ୍ରାଚାର୍ଯ୍ୟଙ୍କ ଝିଅ ତାରାଙ୍କୁ ବାହା ହେବା ଦିନୁ, ଶାଶୁ ଶଶୁରଙ୍କର ଜିଦ୍ ଲାଗିଛି, ତାଙ୍କୁ ତୋଡ଼ାଣିପିଆକୁ ଡାକିବା ପାଇଁ । ଆଜି ଅସୁରରାଜାଙ୍କ ଦୁଆରେ ସେ ମୁହଁ ଧୋଇଗଲେ, ଆଉ ତାଙ୍କୁ କୌଣସି ଆଳ ମିଳିବ ନାହିଁ ! ଶୁକ୍ରାଚାର୍ଯ୍ୟଙ୍କ କଥା କପର କାଟିବେ ସେ ତତ୍‌କ୍ଷଣେ ଭାବିପାରୁ ନଥାନ୍ତି । ଆଗେ ଅତିଥିର ସତ୍କାର ! ଅକାଟ୍ୟ ଯୁକ୍ତି !

ଏତିକିବେଳେ ପବନ ଆରମ୍ଭ କଲେ, "ମହାଜନମାନେ, ମୁଁ ତ ଘରଆଡ଼ର ଅଭିଜ୍ଞତା ଅର୍ଜିଛି । ମର୍ତ୍ତ୍ୟରେ ଆଜିକାଲି ଯେଉଁ ସଭ୍ୟତା ଘୋଟିଛି, ସେଥିରେ ଯଜମାନ ଆଗ ଖାଇଲେ, ତାପରେ ଅତିଥି ଖାଉଛନ୍ତି । ଯଜମାନ ପ୍ରତି ସନ୍ଦେହ ଯୋଗୁଁ ଏ ପ୍ରଥା ଆରମ୍ଭ ହୋଇଥିଲେହେଁ, ଏହା ଆଜି ସଭ୍ୟଜନାନୁମୋଦିତ । ତେଣୁ ବୃହସ୍ପତିଙ୍କ ପ୍ରସ୍ତାବ ଯୁଗଧର୍ମରୂପେ ଗ୍ରହଣ କରାଯାଇ ପାରେ ।"

ପୁଣି ଅସୁରଙ୍କ ପକ୍ଷରୁ ପାଟି ହେଲା । "ତେବେ କ'ଣ ଆମେ ଆଜି ଆପଣମାନଙ୍କୁ ବିଷ ଖାଇବାକୁ ଡାକିଛୁ ? ଦେବତାମାନେ ଆମ ପ୍ରତି ସବୁବେଳେ ଅଯଥା ସନ୍ଦେହ କରୁଛନ୍ତି । ଏପରି କ୍ଷେତ୍ରରେ ତାଙ୍କର ଖାଇବାକୁ ଆସିବା ଛଳନା ମାତ୍ର !" ଏକଥା ଉପରେ ସେଇମାନଙ୍କ ଭିତରେ ଦୁଇ ଦଳ ହୋଇଗଲେ । ପୁଣି ଲାଗିଲା ଧସ୍ତାଧସ୍ତି ।

ତା'ର ଭିତରେ ବଡ଼ ପାଟିକରି ବୃହସ୍ପତି କହିଲେ, "ଆପଣମାନେ ତୂଷ୍ଣୀ ହୁଅନ୍ତୁ । ଆପଣମାନଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ଆମେ ହେଇ ଚାଲୁ ଗ୍ରହଣ୍ଟୁ ।

ଆପଣମାନଙ୍କଠାରେ ଅଣୁମାତ୍ର ସନ୍ଦେହ ଥିଲେ, ଆମେ ଆଗେ ଆସିଥାନ୍ତୁ ଭଲା ? ଯାହା ହେବାର ହେଲାଣି, ଆପଣମାନେ ଅସ୍ତ୍ର ଧରନ୍ତୁ ।"

ଏହା କହି ବୃହସ୍ପତି 'ବ୍ରହ୍ମଣେ ନମଃ' ବୋଲି ପାଣି ପକାଇଲା ବେଳକୁ ଦେବତାମାନେ ଥଙ୍ଗେଇ ଥଙ୍ଗେଇ ହୋଇ ପାଣି ଧଇଲେ । ଯେଉଁମାନେ ମୂଳରୁ ବୃହସ୍ପତିଙ୍କୁ ଅବିଶ୍ୱାସ କରୁଥିଲେ ସେମାନେ ଦାନ୍ତ ନିସିଡ଼ି କହିଲେ, "ଦେଖୋ, ହରି କରେ କ୍ୟା ।" ଏଥର ଆଉ ବୃହସ୍ପତିଙ୍କୁ ନ ଶୁଭୁ ବୋଲି ସାବଧାନତା ନଥାଏ ।

ଏତିକିବେଳେ ଅସୁରଙ୍କ ଭିତରୁ ବୁଢ଼ାବୁଢ଼ା ହୋଇ ଦୁଇ ଗୁରି ଜଣ ବୃହସ୍ପତିଙ୍କ ପାଖକୁ ଉଠିଆସି କହିଲେ, "ଦେବଗୁରୁ, ଥାଉ ! ଥାଉ ! ସାମଗ୍ରୀର ବର୍ତ୍ତମାନ ଅବସ୍ଥା ଯାହା, ସେଥିରେ ଆପଣ ଯଦି ଆଜି ଖାଇକରି ଯିବେ ତେବେ କାଲକାଲକୁ ଆମର ନିନ୍ଦା ରହିଯିବ । ଜୁଦା ଚକଟା ହୋଇଥିବା ଜିନିଷ କିଏ କାହାକୁ ଦିଏ ? ଆମେ ଜିଦ୍ କରିବୁ ବୋଲି କ'ଣ ସ୍ୱାସ୍ଥ୍ୟରକ୍ଷାର ମୂଳନୀତିକୁ ଗୋଡ଼ରେ ଫୋପାଡ଼ି ଦେବୁ ?"

ବଳାବଳରେ ବୃହସ୍ପତି ଚଳୁ ଅଧା କରି ଉଠିଲେ । ଦେବତାମାନେ ଫେରିଲା ବେଳେ ଅସୁରରାଜା ହାତଯୋଡ଼ି କହିଲେ, "କ୍ଷମା କରିବେ । ଆପଣମାନଙ୍କର ବେକାଏ ଦହସତ୍ ହେଲା । ଇତି ମଧ୍ୟରେ ଆମର ମୁରବୀ କଥାଟା ନିଷ୍ପତ୍ତି କରି ଆପଣମାନଙ୍କୁ ଆମେ ପୁଣି ନିମନ୍ତ୍ରଣ କରିବୁ ।" ବୃହସ୍ପତି କହିଲେ, "ଆମେ ସେଥିପାଇଁ ତିଆରି ଅଛୁ ।"

ଅସୁରମହଲଠାରୁ ବେଶ୍ ଖଣ୍ଡେ ଦୂରରେ ବୃହସ୍ପତି ଠିଆହେଲେ । ପଛରେ ରହିଥିବା ସମସ୍ତେ ଆସି ମିଶିଲାରୁ ଅଛା କରୁଥିବା ଦେବତାମାନଙ୍କୁ ମୁଖ ବିକୃତ କରି ଗୁହିଁ ଦେବଗୁରୁ କହିଲେ, "କରେ ଦେଖିଲ ? ଆରେ ! ଦେଖୋ, ହରି କରା କ୍ୟା ?"

ହିନ୍ଦିଟା ଶୁଦ୍ଧ ହେଲା କି ନାହିଁ, ସେ ବିଷୟରେ ଯୁବକ ଦେବତାମାନେ ଟିପ୍ପଣୀ ଆରମ୍ଭ କରୁଥାନ୍ତି । ଇନ୍ଦ୍ର କହିଲେ, "ଗୁରୁଦେବ ! ଆଜି ଆପଣଙ୍କ ଯୋଗୁଁ ଆମେ ବଡ଼ ବିପତ୍ତିରୁ ଉଦ୍ଧାର ପାଇଲୁ ! ଗୁରୁର୍ବ୍ରହ୍ମା, ଗୁରୁର୍ବିଷ୍ଣୁଃ ..."

ବୃହସ୍ପତି ବାଧା ଦେଇ କହିଲେ, "ତୁମେ ତାହା କହିପାର । କିନ୍ତୁ ମୁଁ ଜାଣେ ଏହା ଭଗବାନଙ୍କର ଲୀଳା । ଅସୁର ବୃଦ୍ଧଙ୍କ ହୃଦୟରେ ସେ ବିଜେ ନ ହୋଇ ଥିଲେ, ମୁଁ ତ ଅଧା ଚଳୁ କରିସାରିଥିଲି !"

---



# ଝଡ଼ମୁନା

ବୃଦ୍ଧ କାଠଯୋଡ଼ର ପାଣିଧାର ପାର ହୋଇ, ପୁଣି ଟିକିଏ ପଛକୁ ଚାହିଁ ଠିଆ ହେଲେ । ଗାଧୋଇ ପଡ଼ିଥିଲେ ହୋଇଥାନ୍ତା ! ଦେହରୁ ହୁଲା ଉଠୁଥିଲା ; ଆଣ୍ଠୁ ପର୍ଯ୍ୟନ୍ତ ଗୋଡ଼ ପାଣିରେ ରହିଯିବାରୁ ପାଦର ଗରମ ମୁଣ୍ଡକୁ ଚହଟି ଯାଇଥାଏ । ମନ ବି ଭାରି ଖରାପ ! ଯେଉଁ ଆଶାରେ ଯାଇଥିଲେ, ତାହା ଆଜି ଫଳିଲା ନାହିଁ । ଲୋକଟା ଜବାବ କରିଥିଲା । ସେ ସବୁବେଳେ ତା ଜବାବ ରଖେ । ଆଜି କ'ଣ ଗୋଟାଏ କିଛି ଅଡୁଆ ପଡ଼ିଥିବ । କୌଣସି ଗୁରୁତର କାମରେ ହୁଏତ କୁଆଡ଼େ ଚାଲିଯାଇଥିବ । ବୃଦ୍ଧ ଦ୍ୱିପହର ଖରାରେ ନଈବାଲି ତାତିକୁ ଖାତିର ନ କରି ଯାଇଥିଲେ 'ଭା'ରି କଟକ । ସିଧା ସିଧା ତା'ରି ଦୁଆରେ ଯାଇ ଡାକିଲେ । ଯୋର୍ ଶବଦ କିଛି ନାହିଁ । ସାହିବାଲା ଟୋକା ଜଣେ କହିଲା, ଲୋକଟି ମାମୁଁ ଘର ଯାଇଛି । ବୃଦ୍ଧ ନିରାଶ ହୋଇ ଘରକୁ ଫେରୁଥାନ୍ତି । ନଈ ବାଲିର ତାତି ଛାଡ଼ିଯାଇଥାଏ । କିନ୍ତୁ ଦ୍ୱିପ୍ରହର କଷ୍ଟ ସାଙ୍ଗକୁ ମନ ଭିତରର ତାତି ମିଶି ତାଙ୍କ ଦେହରୁ ହୁଲା ବାହାରୁଥାଏ । ସେଥିପାଇଁ ହେତୁରୁ ସେ ପଛକୁ ଫେରି ନଈଧାରକୁ ଚାହିଁଥାନ୍ତି, ଟିକିଏ ଗାଧୋଇବା ବିଚାରରେ ।

ସେ ଦେହରୁ ଲୁଗାପଟା କାଢ଼ୁଛନ୍ତି, କଟକ ଆଡ଼ୁ ଜଣେ ବାବୁ ପାଣିରେ ପଶିଲେ । ଫୁଲ୍ ପ୍ୟାଣ୍ଟ ପିନ୍ଧା ; ମହାକଷ୍ଟରେ ତାକୁ ପେଣ୍ଡାଯାଏ ଟେକିଥାନ୍ତି ; କିନ୍ତୁ ଯେଉଁ ଜାଗାରେ ପାର ହେଉଥାନ୍ତି, ସେଠାରେ ଜଙ୍ଘେ ପାଣି । ବୁଢ଼ା ଡାକ ଦେଲେ, 'ଆଉ ଉପରକୁ ମାଡ଼ ଚାଲ—ଆଉ ଡାହାଣକୁ ମାଡ଼ି ଚାଲ । ଯଦି ସିଧା ଆସିବ ପ୍ୟାଣ୍ଟ କାଢ଼ିକରି ଧର ।' ବାବୁ ପ୍ୟାଣ୍ଟ କାଢ଼ିଲେ ନାହିଁ । ସତେ ଯିମିତି ଅନିଚ୍ଛା ସତ୍ତ୍ୱେ ଟିକିଏ ଡାହାଣକୁ ମାଡ଼ି ପ୍ୟାଣ୍ଟର ଚାରିଖଣ୍ଡେ ଖଣ୍ଡେ ଓଦା କରି ନଈ ପାରିହେଲେ । ବୁଢ଼ାଙ୍କ ପାଖେ ଆସି ପହଞ୍ଚି ହାତକୁ ସଲାମ କଲାପରି ଟେକି, ତୁଣ୍ଡରେ କହିଲେ, 'ନମସ୍କାର, ମଉସା !'

ବୁଢ଼ା ଟିକିଏ ଗୁମ୍ମାରି ରହିଲେ । ରାଗ ବେଳରେ ରାଗ ସମ୍ଭାଳି ହୋଇ ପାରିଲା ନାହିଁ । କଥା ବାହାରି ପଡ଼ିଲା, "ହୁଁ ! ମଉସା ! ହଃ, କାଲି ତ ସ୍ତ୍ରୀ ଶୁଣଉଛୁ ; ତା' ସାଙ୍ଗକୁ ପୁଣି ନମସ୍କାର ! ହଉ ! ହଉ ! ନମସ୍କାର, ନମସ୍କାର, ଆପଣ କିଏ ସେ ?" ସାଙ୍ଗେ ସାଙ୍ଗେ ବୁଢ଼ାଙ୍କର ମନ ବଦଳିଗଲା । ସେ କହିଲେ, "ବାବୁ କିଛି ବିଚାରିବ ନାହିଁ । ଆମେ ତ ହେଲୁ ପୁରୁଣାକାଳିଆ ଲୋକ ; ଆମର ମନ, ଆମକୁ ଗୋସେଇଁ ବୋଲି ଲୋକେ ଟିକିଏ ମାନ୍ୟ କରନ୍ତେ ! ଏ ଯୁଗରେ ସିଏ ମିଳୁଛି କୁଆଡ଼ୁ ? ପୁଣି ଏ ନମସ୍କାର କଥାଟା ଆମରି ଭିତରେ ଚଳୁଥିଲା । ଇଲାଗେ ତ ସମସ୍ତେ ଚଳେଇ ଦେଲେଣି । ମୁଁ ଇମିତି ଚଢ଼େ ନାହିଁ ଯେ, ଆଜି ମନଟା ଟିକିଏ ବିଗିଡ଼ି ଯାଇଛି । ହଉ, ଆପଣ କୁଆଡ଼େ ଯିବା ହଉଛନ୍ତି ?"

ବାବୁ କହିଲେ, "ମଉସା ! ତୁମେ ମୋତେ ଚିହ୍ନି ପାରୁନାହଁ କି ? ମୁଁ ପରି ଗୋପାଳ !" ବୁଢ଼ାଙ୍କର ମନେ ପଡ଼ିଗଲା । "ଏଁ ଗୋପାଳ, ଆରେ ! ପାର-ପୁଅ ଗୋପାଳ । ମୁଁ ତୋ ଭାଇନାକୁ ଦେଖିଥିଲି । ସେ ରାମ ହେଲେ, ତୁ ତ କୃଷ୍ଣପରି ହୋଇଛୁ । କେଡ଼େ ଭୁଲ୍ କଲି ମ ? ତୋ କଳା ରୂପଟାକୁ ଦେଖି ଇତର ଜାତି ବୋଲି ବିଚାରି, ତୁ ମୋତେ ମଉସା ଡାକିଲୁ, ନମସ୍କାର ହେଲୁ ବୋଲି ଖିଣୁଛି । ହଉ, ହଉ, କୁଆଡ଼େ ଯାଉଛୁ ବାପ ! ହଉ, ମୋ ସାଙ୍ଗରେ ଆ । ଆଜି ରାତିକ ତୋ ବଡ଼ ମାଉସୀ ପାଖେ ରହ, କାଲିକି ଯୁଆଡ଼େ ଯିବୁ । ପାର ପୁଅ ! ତୁ ଏଡ଼ୁ ଟିଏ ହେଲୁଣୁ ! ବାବୁଭାୟା ହେଲାପରି ଦିଶୁଛୁ ?"

ବୁଢ଼ାଙ୍କର ମନ ବହୁତ ପଛକୁ ଫେରିଗଲା, ସେ ବାହା ହେବାକୁ ଯାଇଥାନ୍ତି । ବେଦୀ କାମ ସାରି ତାଙ୍କ ଘରଂ ପାହାଚ ଉଠିଲା ବେଳକୁ ଏଇ ପାର, ତାଙ୍କ ଦେହକୁ ମୁଠେ ହଳଦୀଗୁଣ୍ଡା ଫୋପାଡ଼ି ଦେଇଥିଲା । ସେତେବେଳକୁ ତାକୁ ପାଞ୍ଚ ସାତ ବର୍ଷ ବୟସ ହେବ ପରା ! ସେଇ ପାରର ସାନ ପୁଅ, ପଚଶ ବର୍ଷର ଭେଣ୍ଡା ହେଲାଣି । ଲୁଗା ପଟାରୁ ଜଣାଯାଉଚ୍ଛି କ'ଣ ଗୋଟାଏ ବଡ଼ ଚାକିରୀବାକିରୀ କଲାଣି !

ବାହାଘର ଦିନ କଥା ମନେ ପଡ଼ିଯିବାରୁ, ସେ ଦିନ ସନ୍ଧ୍ୟାବେଳ କଥା ମନେ ପଡ଼ିଲା । ଶଳାଗୁଡ଼ାକ, ସେ ଦିନ ଗୁଡ଼ାଏ ଦେଶୀ ପଦ୍ଧି ବାଟି ବେଲପଣା ବୋଲି ତାଙ୍କୁ ପିଆଇ ଦେଇଥିଲେ । ସେ ଯେତେ ନାହିଁ କରୁଥାନ୍ତି, ସେମାନେ ସେତକ ବଳେଇ ବଳେଇ ପିଆଉଥାନ୍ତି, ଖାଲି ଗୋଲମରିଚ ପଡ଼ିଚ୍ଛି ବୋଲି କହି । ରାତି ଦି ପହରକୁ ହୁଲସ୍ଥୂଲ କାଣ୍ଡ । ଶଶୁର ନିଜେ ଆସି ପାଖରେ ବସି ଗୁଡ଼ାଏ କସ୍ତୁରୀମଣ୍ଡ ପିଆଇଲେ । ବହୁ ବିଳମ୍ବରେ ତାଙ୍କର ବାଉଳା ଚାଉଳା ବନ୍ଦ ହେଲା ।

ସେ ଦିନ ଆଉ ଏ ଦିନ ! ବୁଢ଼ା ନିଃଶ୍ୱାସଟାଏ ମାରି ପାଣି ଭିତରେ ପଶି ମୁଣ୍ଡ ବୁଡ଼ାଇ ଗାଧୋଇଲେ । ଗାଧୋଇ ସାରି ଗାଁମୁହାଁ ଚାଲୁ ଚାଲୁ ପୁତୁରା ସାଙ୍ଗେ ଦୁଃଖସୁଖ ହେଲେ । ଶୁଣିଲେ—ପାର କହିଚ୍ଛି, ମାଉସୀକୁ ଲୁଚାଇ କରି କ'ଣ ଗୋଟାଏ ଜିନିଷ ଦେବାକୁ । ବୁଢ଼ା ହସି ହସି ପଚାରିଲେ—ଆରେ କ'ଣ ଗୋଟାଏ ଇମିତ ଲୁଚାଚୋରି କଥା, ମୋତେ କହୁନୁ ? ଗୋପାଳ ବାବୁ କହିଲେ, "ବୋଉ କହିଛି, ସେ କଥା ତୁମକୁ କହିଦେଲେ, ତୁମେ ବେକରେ ଡେଙ୍ଗୁରାଟାଏ ପକାଇ ପିଟି ପିଟି ଗାଁସାକ ବୁଲିବ । ଆଉ ସବୁତକ ତୁମକୁ ଦେଖାଇ ଦେଲେ ତୁମେ ଏକାଥରେ ସବୁତକ ଦିଆନିଆ କରି ଉଜାଡ଼ି ଦେବ ।" ବୁଢ଼ା କହିଲେ,"ତୋ' ବୋଉ ତ ତାହାହେଲେ ଆମକୁ ଖୁବ୍ ମଣିଷରେ ଲେଖା କରୁଚ୍ଛି ! ହଃ, ଦେଖାଅଚ୍ଛି ନା ଚାହାଁଅଚ୍ଛି । ତୋ ଭାଇନା ବଡ଼ଘରକୁ ଯାହା ତୁମ ଘରକୁ ଯାଇଥିଲି ସେତକ । ତୋ ନନା କଟକରୁ ଗୁଡ଼ାଏ ଖିରମୋହନ ନେଇଥାଏ । ମୋତେ ଦେଲେ ପରଷିବାକୁ । ଦେଉଦେଉ ସବୁତକ ସରିଗଲା । ପରଷୁଣି ପାଇଲେ କେଞ୍ଚେ । ମାଇପେ ସେହି ଖିରମୋହନ ସିନା ହାପୁରି-ଥିବେ । ତୋ ବୋଉ ସେହି କଥା ମନେ ରଖିଚ୍ଛି । ସେ କଥା ଗଲାଣି । ଆଉ

ଦାଡାପଣ ନାହିଁ, କି ଅପରକୁ ଖୁଆଇବାରେ ଆନନ୍ଦ ନାହିଁ । ପନ୍ଦର ଦିନ ତଳେ କଟକ ଆସିଥିଲି ଯେ ଦେଢ଼ ଟଙ୍କା ଦେଇ କାଗଜ ପୁଡ଼ାରେ ଟିକିଏ ଦେଶୀ ପତ୍ରି ଆଣିଥିଲି । ସେହିତକ ତୋ ମାଉସୀ ଲୁଚେଇ ଲୁଚେଇ ଦଶ ବାର ଦିନ ଚଳେଇଲା । ସରକାର ତ ଏକାଥରକେ ଦେଶୀ ପତ୍ରି ନାଁ ଧରିଲେ ନିଆଁ ହୋଇ ଯାଉଛନ୍ତି । ଯାହାଯାକ ସବୁ ବୁଢ଼ାଙ୍କର ସେଇଥିରେ ମନ । ତିନି ଦିନ ତଳେ ଦି'ଜଣ ଆସି ପହଞ୍ଚିଲେ, କହିଲେ, 'ଭାଇନା, ଆଜି ଟିକିଏ ନ ହେଲେ ହେବନି ।' ତୋ ମାଉସୀ ସଙ୍ଗେ କଳିକଜିଆ କରି ଘଡ଼ା ଖାଲି କରିଦେଲି । ଫାଲେ କୋଳଥକୁ ସହସ୍ରେ ଘୋଡ଼ାଟାପୁ, କାହାକୁ କିଛି ଜଣାପଡ଼ିଲା ନାହିଁ । ଆଜି ସକାଳୁ ତିନିଜଣ କି ଚାରିଜଣ କହୁଛନ୍ତି, 'ରାମ ଭାଇନା, ଏଥର ଯାଉଛ, ଟିକିଏ ବେଶୀ କରି ଆଣିବ ।' ଆସାମୀର ଦର୍ଶନ ବି ମିଳିଲା ନାହିଁ । ବୁଢ଼ାଗୁଡ଼ାକ କ'ଣ ସହଜରେ ବିଶ୍ୱାସ କରିବେ ? ସମସ୍ତେ କହିବେ, 'ରାମ ଭାଇନା ଆଣିଛି । ଭାଉଜ ଲୁଚେଇଛି ।' କି କାଳ ହେଲା ? ଏଡ଼ିକି ·ଅବୁଝାମଣା ରଜା ଜୁଟିଛନ୍ତି ଯେ, ବୁଢ଼ାଗୁଡ଼ାଙ୍କୁ ବି ଟିକିଏ ଶାନ୍ତିରେ ମରିବାକୁ ଦେବେ ନାହିଁ ?"

ବୁଢ଼ା ସରକାରଙ୍କୁ ଆଶୀର୍ବାଦ କରି କରି ତୁନି ହୋଇ ଆଗକୁ ଚାଲିଲେ । ଗୋପାଳବାବୁ ବି ପଛେ ପଛେ ଚାଲୁଥାନ୍ତି । ତୁନି ହୋଇ ମଝିରେ ମଝିରେ ଦୁଇ ପ୍ୟାଣ୍ଟ ପକେଟ ଉପରେ ଟିକିଏ ହାତ ମାରିଦେଉଥାନ୍ତି । ଖସ୍‌ଖସ୍ ଶବ୍ଦ ଶୁଣିଲେ ଟିକିଏ ଆଶ୍ୱସ୍ତ ହେଉଥାନ୍ତି—ଜିନିଷ ନିରାପଦରେ ଅଛି !

ଶବ୍ଦଟା ଥରେ ବୁଢ଼ାଙ୍କ କାନରେ ପଡ଼ିଗଲା, "କିରେ, କ'ଣ ବିସ୍କୁଟଗୁଡ଼େ ଆଣିଛୁ କିରେ ? ତୋ ବୋଉ କ'ଣ ଦେଖିପାରି କରି ମୋ ପାଇଁ ବିସ୍କୁଟ ପଠେଇଛି ? ଦାନ୍ତ ଗୋଟିଏ ନାହାନ୍ତି ଆଉ । କଟକରେ ଜଣେ କହୁଥିଲା ଦାନ୍ତ ଲଗେଇବାକୁ । ତୋ ବୋଉକୁ କହିବୁ, ଏ ବିସ୍କୁଟ ଇମିତି ଥାଉ, ଦାନ୍ତ ଲଗେଇବାକୁ ଶହେ ପଣେ ଟଙ୍କା ଦେଉ, ଖାଇବି । ତା'ର ତ ପିଲେ ପାରି-ଗଲେଣି, ହାତରେ ପାଣ୍ଠି କରିଥିବ । ହଁ, ତୁ କ'ଣ କରୁଛୁ ପୁଅ, କହିବୁଟି ?"

ଗୋପାଳବାବୁ ଶଙ୍କି ଶଙ୍କି କହିଲେ, "ମଉସା, ମୁଁ ଅବକାରୀ ଇଲାକାରେ କାମ କରୁଛି ।"

ମଉସା ଗୋପାଳ ବାବୁଙ୍କ ଆଡ଼କୁ ଟିକିଏ ଚାହିଁ ତାଙ୍କ ଅଭ୍ୟସ୍ତ ଦୋଳାପରି ସ୍ୱରରେ କହିଲେ, "ତୁ ଶଙ୍କୁଛୁ କାହିଁକି ? ତୁମର କ'ଣ ଦୋଷ ? ଯୁ ଅବୁଝା-ମଣା ଇମିତି ଆଇନ କରିଛନ୍ତି, ସେ ଆମ ମେଳରେ ବସନ୍ତେ କି, ଶୁଣନ୍ତେ । ତାଙ୍କର ତ ଟୋକାଙ୍କଠି ମନ । ଗୋଟାଏ ସେଥିରୁ ଆସିଥିଲା, ପାଠାଗାର ଉଦ୍‌ଘାଟନ କରିବାକୁ । କହିଦେଇ କରି ଗଲା, ''ଏ ବୁଢ଼ାଙ୍କୁ ମାନନାହିଁ' । କିଏ ଆମକୁ ମାନୁଛି ଯେ ? ମତେ ଖାଲି ତାଜୁବ୍ ଲାଗୁଥାଏ, ନିଜେ ତ ବୁଢ଼ା, ବୁଢ଼ାଙ୍କୁ ମାନନାହିଁ ବୋଲି କହୁଛି କିମିତି ? କ'ଣ ଆପଣାକୁ ନ ମାନିବାକୁ ବୁଝାଉଛି ?" ଗୋପାଳବାବୁ ପଚାରିଦେଲେ, "ମଉସା, ତୁମେ କ'ଣ ସେ ସଭାକୁ ଯାଇଥିଲ ?" ବୁଢ଼ା କହିଲେ, "ହଁ ଯାଇଥିଲି, ଥରକୁ ତିନି ଥର ଡାକିଲେ, ନ ଯାନ୍ତି କିମିତି ? ଲଗେଇଦେଲେ ବୋଲି ବେଦ ସୂକ୍ତଟିଏ ପଢ଼ିଲି । ବେଦ ପଢ଼ାଉଥିଲେ କାହିଁକି କେଜାଣି ? ମୁଁ ତ ଯାହା ପଢ଼ିଲି, ତା'ର ଓଲଟା କାମ ସବୁ ହେଲା ।" ଗୋପାଳ କହିଲେ, 'ତୁମେ କିଛି କହିଲ ନାହିଁ ?' ବୁଢ଼ା କହିଲେ, "ରାମ, ରାମ, ଦର୍ଦ୍ଦୁରା ଯତ୍ର ବକ୍ତାରଃ ତତ୍ର ମୌନଂ ହି ଶୋଭନମ୍ । ଯେ ଆସିଥିଲା, ତା କଥା କହିବ ବୋଲି ଆସିଥିଲା ନା ଆମ କଥା ଶୁଣିବ ବୋଲି ଆସିଥିଲା ? ଯାହାହେଉ, ସେ ମହାତ୍ମା ସୁରୁଖୁରୁରେ ରାଜଧାନୀକୁ ଫେରିଗଲା । ସେ ଖୁସ୍, ଆମ ପିଲେ ବି ଖୁସ୍ । କ'ଣ ଟଙ୍କା ପଚାଶଟି ଦେଇ-ଗଲା, ବହି କିଣିବାକୁ । ମୁଁ ପଛରେ ପିଲାଙ୍କୁ କହିଲି, ସଂସ୍କୃତ ମହାଭାରତ, ରାମାୟଣ, ଭାଗବତ ଅଣାଅ, ରଖିଥାଅ, କେତେବେଳେ ମନ ଟିକିଏ ଫେରିଲେ ଚାହିଁବ । ମନ୍ତ୍ରୀ ତ କହିଯାଇଛନ୍ତି ବୁଢ଼ାଙ୍କ କଥା ନ ଶୁଣିବାକୁ, ତାଙ୍କ କଥା ନ ଶୁଣି କ'ଣ ଆମ କଥା କରନ୍ତେ ? ଆପଣା ଆପଣା ଭିତରୁ ପୁରୁଣା ବହି ଦଶ ପନ୍ଦରଟା ମଗାମଗି କରିଦେଲେ, ମିଛରେ ଗୋଟିଏ ରସିଦ କାଟିଦେଲେ । ମନ୍ତ୍ରୀଙ୍କ ପଚାଶ ଟଙ୍କାଟି ଯିମିତି ମିଳିଲା, ସେଥିରେ ଯୋଡ଼ାଏ ଛେଳି କାଟି ଭୋଜି କଲେ । ସେଠିକରେ ହେଲା ନାହିଁ ଯେ, ପୁଣି ମୋତେ ଡାକୁଛନ୍ତି ଖାଇବା ପାଇଁ ? ଆଉ ସହି ହେଉ ନାହିଁ, ଜାଣିଲୁ, ଏ ପିଲାଙ୍କ ରବାଦ୍ । ଦେଶୀ ଟିକିଏ ମିଳୁଥିଲେ ଏଗୁଡ଼ାକ ଆଉ ସେତେ ବାଧୁ ନ ଥାନ୍ତା, ଟିକିଏ ଆତ୍ମଚିନ୍ତା କରିବାକୁ ମନ ହେଉଥାନ୍ତା । ଘରଆଡ଼ର ଏ ଗଣ୍ଡଗୋଳରୁ ଟିକିଏ ନିବର୍ତ୍ତି ରହି, ଆପଣା ମନ ଆନନ୍ଦରେ ମଣିଷ ରହନ୍ତା । ତା'ର ବି ବାଟ ବନ୍ଦ ।

ସେଥିରେ ପୁଣି କେତେ ଗ୍ରେଫ୍ତାର୍ । ନ ମିଳିଲା ଭଲ ହେଲା । ସେଥିରୁ ଟିକିଏ ଅଣ୍ଟାରେ ଥିଲେ ମଣିଷ ଗ୍ରେର ପରି ଆସୁଥାନ୍ତା । ଆଉ କ'ଣ କଥା ବାହାରୁଥାନ୍ତା । ଛାଡ଼ ସେ କଥ । ହଉ ବାପା ! ତୋର ଇଆଡ଼େ ଆଜି କମିତି ମନେ ପଡ଼ିଗଲା ?"

ଗୋପାଳ ବାବୁ ସେତେବେଳକୁ ନଜେ ଗ୍ରେର ପରି, ଯଥାସମ୍ଭବ ଅଳ୍ପକେ ଜଣାଇଦେଲେ, ଗୋଟାଏ ଲୋକ ବହୁତ ଦନ ହେଲା ଦେଶୀ ଗଞ୍ଜେଇ କାରବାର କରୁଥାଏ । ସେ ବହୁତ ଦନ ହେଲା ତା ପିଚ୍ଛା ଲାଗି ଲାଗି ଏବେ ପନ୍ଦର ଦନ ତଳେ ତା' ଘର ଖାନତାଲସ କରି ଦୁଇ ସେର ଦେଶୀ କଲ୍କି, ପାଞ୍ଚ ସେର ପତ୍ରି ଜବତ୍ କଲେ, ମକଦ୍ଦମା ହୋଇ ଆଜି ତାକୁ ତନ ମାସ ଜେଲ୍ ହେଲା । ହାକମ୍ ତାଙ୍କ କାମରେ ଖୁବ୍ ଖୁସି ହୋଇ ରାୟରେ ଲେଖିଛି । କାଲ୍ ଛୁଟି ଅଛି, ବୋଉ ମାଉସୀ ପାଖକୁ ଆସିବାକୁ କହିଥିଲା, ଆଜି ସୁବଧା ମିଳିବାରୁ ଆସିଛନ୍ତି ।

ବୁଢ଼ା କହିଲେ, "ଆରେ ସୁବଧା, ଅସୁବଧା କ'ଣ ? କାଠଯୋଡ଼ିଟା ପାର ହେଲେ ତନ କୋଶରେ ଆମ ଘର । ତୁମେ ତ ଏଇ କଟକରେ ଅଛ । ଯେଉଁ ଦନ ବାହାରିବ ସେ'ଦନ ଆସିପାରିବ । ହଁ, ହଇରେ ଗୋପାଳ, ଯୋଉ ବଡ଼ବଡ଼ମାନେ ପାଞ୍ଚ ଭରି ଦଶ ଭରି ଲେଖାଏଁ ଗଞ୍ଜେଇ ରଖି କାରବାର କରୁଛନ୍ତି, ସେମାନଙ୍କ ପଛରେ ତମେ କାହିଁକି ଲାଗିଛ ? ମୁଁ ତ ଦେଖୁଛି, କଟକରେ ପୁଞ୍ଜେ ବିଲାତି ମଦ ଦୋକାନ ଖୋଲି ଗଲାଣି । ଦନ ଦୁଇପହରେ ଭଲଲୋକ ପିଲାଗୁଡ଼ାକ ଦୋକାନରେ ବସି ମଦ ବିକୁଛନ୍ତି । ତାଙ୍କୁ ଧରୁନାହଁ ? ଚଙ୍ଗୁଡ଼ି ଚପୁଛ କାହିଁକି ?" ଗୋପାଳ ବାବୁ କୈଫିୟତ୍ ଦେଲେ, "ବିଲାତି ମଦ ଯେ ପରମିଟ୍ ନେବ, ତାକୁ ଆଗ ମିଳୁଥିଲା । ଏବେ ବନା ପରମିଟ୍‌ରେ ମିଳିଲାଣି । ସରକାରଙ୍କ ଇଚ୍ଛା, ଯାହାଙ୍କର ପଇସା ଅଛି, ସେମାନେ ଇଚ୍ଛା କଲେ ବେଶୀ ଦାମ୍‌ରେ ବିଲାତି ମଦ କଣି ଖା'ନ୍ତୁ । ତାଙ୍କ ପଇସା ଦାଣ୍ଡକୁ ଆସିବ ; ସରକାରଙ୍କ ଯୋଜନାରେ ଲାଗିବ ।"

ବୃଦ୍ଧ କିଛି ସମୟ ତୂନି ହୋଇ ବାଟ ଚାଲି ଚାଲି ତା'ପରେ କହିଲେ, "ଆରେ ବାପା, ତୁମମାନଙ୍କ ବୁଦ୍ଧିକୁ ତ ଲଙ୍ଗଳ ଦଉଡ଼ି ପାଇବ ନାହିଁ ! ଶସ୍ତା ଜନଷ ବନ୍ଦ କରି, ମହଙ୍ଗା ଜନଷ ଯାଚଲେ, ଯେଉଁମାନଙ୍କର ସେ ଜନଷ ନ

ହେଲେ ନ ଚଳେ, ସେମାନେ କରିବେ କ'ଣ ? ଗୃହଲ ଡାଲିରୁ ପଇସା କାଟି ମଦ କିଣିବାକୁ ଯିବେ କି ନାହିଁ ? ତୁମ ଧୋବଲଙ୍କୁ ଡରୁଛନ୍ତି ବୋଲି, ଶ୍ରେଷ୍ଠ ଲୋକେ ତୁମ ବିଲାତି ମଦ ଦୋକାନକୁ ଯାଇ ନାହାନ୍ତି । ଭଲ ହୋଇଛି । ଡର ଛାଡ଼ିଗଲେ, ମାଇପ ଦେହରେ ଖଡ଼ୁ, କଣ୍ଠି ରହିବ ନାହିଁ ! ଆଚ୍ଛା, ବାପା ! ଏ ବିଲାତି ମଦ ଆସୁଛି କେଉଁଠୁ ?"

ଏହା ବିଦେଶରୁ ଋଣ-ସୂତ୍ରରେ ଆସୁଛି ବୋଲି ଶୁଣି ବୃଦ୍ଧ କହିଲେ, "ଏ ଋଣ ତ ପୁଣି ଦିନେ ଶୁଝାହେବ ? ଟଙ୍କା ଦେଇ ନ ପାରିଲେ, ଦେଶକୁ ବିକିବ, ନ ହେଲେ ଖଣିଗୁଡ଼ାକ ପଟ୍ଟା ଦେବ । କି ଅଭାଗ୍ୟ ଘୋଟିଛି ଜାଣିଲି ! କରଜ ଆଣି ଯେ ଲୋକଙ୍କୁ ମଦ ଖୁଆଉଛନ୍ତି, ଉଆସ ତୋଳୁଛନ୍ତି, ସେମାନଙ୍କ ମୁଣ୍ଡରେ କ'ଣ ଅଛି କେଜାଣି ?"

ଏତେବେଳକୁ ମଉସା ପୁତୁରା ଦୁହେଁ ନଈ ପାର ହୋଇ ବ୍ରାହ୍ମଣୀ ଗାଁ ଛପି ଗଲେଣି । ଆଉ ଘର, ବାଟ କୋଶେ ମାତ୍ର । ଘରପାଖ ହେବାରୁ ବୃଦ୍ଧାଙ୍କର ବୋଧହୁଏ ମନେ ପଡ଼ିଗଲା 'ବିଜୟାମୃତ-ସାର' ଲାଳସୀ ସଙ୍ଗୀମାନଙ୍କ କଥା । ଟୋପେ ସେ ନିଜେ ପା'ନ୍ତେ ବୋଇଲେ ପଥଶ୍ରାନ୍ତ ଦୂର ହୁଅନ୍ତା, ଖରାରେ ଯିବା ଆସିବା ଫଳରେ ପେଟରେ ଯେଉଁ ତେଜାମଗରମ ହୋଇଛି ତାହାର ବି ଶାନ୍ତ ହୁଅନ୍ତା । ମୂର୍ଖଗୁଡ଼ାକ ! ଦେଶୀ ପତ୍ରି ବନ୍ଦ କରି ବିଲାତି ମଦ ଯାଚୁଛନ୍ତି ! ବୃଦ୍ଧଙ୍କର ମନେ ପଡ଼ିଗଲା, ସ୍ମୃତିର ନିଷେଧ । ମଦ ଖାଇବା ଓ ଗୁରୁପତ୍ନୀ ହରଣ କରିବା ଏକ ପର୍ଯ୍ୟାୟର ପାପ । ହେବାର କଥା । ଅଗମ୍ୟା-ଗମନରେ ଚିତ୍ତଶାନ୍ତ ଦୂର ହୁଏ, ମଦ୍ୟ ପାନ କଲେ ଚିତ୍ତବୃତ୍ତି ଉଦ୍‌ବେଳିତ ହୋଇ ହିତାହିତ ଜ୍ଞାନ ଦୂର ହୋଇଯାଏ । କିନ୍ତୁ ଦେଶୀ ପତ୍ରି ! ଚିତ୍ତ ଶାନ୍ତ କରେ, ମନକୁ ପ୍ରସନ୍ନ କରେ, ପେଟର ସବୁ ପ୍ରକାର ଗୋଳମାଳ ଭାଙ୍ଗେ । ତାଙ୍କର ମନେ ପଡ଼ିଗଲା ପିଲା ଦିନର କଥା—ତାଙ୍କ ନନା ପ୍ରତି ଦିନ ସନ୍ଧ୍ୟା ବେଳେ ଟିକିଏ ମରିଚପାଣି କରନ୍ତି, ସିଠାଟିକ ତାଙ୍କୁ ଦେଇ କହନ୍ତି, 'ଯାକୁ ଖାଇଲେ ଜୀର୍ଣ୍ଣଶକ୍ତି ବଢ଼ିବ' । ନନା ମରିଚପାଣି ଟିକିଏ ଖାଇଲେ, ପୁରାଣ ଅର୍ଥ କେଡ଼େ ସୁନ୍ଦର ବିଶ୍ଳେଷଣ କରନ୍ତି ! ତାଙ୍କ ନିଜ ଅଭିଜ୍ଞତାରେ ସେ ଜାଣିଛନ୍ତି, ଯେଉଁ ଦିନ ମରିଚପାଣି ଟିକିଏ ପଡ଼ିଥାଏ, ସେଦିନ ନିତ୍ୟକର୍ମରେ ମନଟା ଖୁବ୍

ବସେ । ଏ ପଦାର୍ଥର ମହତ୍ତ୍ୱ ଆଜିକାଲିର ସରକାର ବୁଝି ନ ପାରିବାରୁ ସେ ମନେ ମନେ ତାଙ୍କର ସପ୍ତପୁରୁଷଙ୍କୁ ଉଦ୍ଧାର କଲେ ।

ପୁଣି ମନ ଯାଇ ପଡ଼ିଥିଲା, ଖଟ୍‌ବିନ୍ ସାହିର ସେହି ଲୋକଟି ଉପରେ, ଯେ ଆଜିକୁ ପ୍ରାୟ ବର୍ଷେ ହେଲା ତାଙ୍କୁ ନିୟମିତଭାବେ ମାସକୁ ଦୁଇ ଭରି ଲେଖାଏଁ ଅସଲ ଦେଶୀ ପତ୍ରି ଯୋଗାଉଥିଲା । ସେଥିକରେ ତାଙ୍କର ଓ ତାଙ୍କ ସାଇର ଚାରି ପାଞ୍ଚ ଜଣ ବୃଦ୍ଧଙ୍କର ଦିନଟିମାନ କେଡ଼େ ଆନନ୍ଦରେ ନ କଟିଛି ? ଦି'ପହରୁ ଦିହଟା ଟିକିଏ ମୋଡ଼ିଭାଙ୍ଗି ହୁଏ ! ସନ୍ଧ୍ୟାହେଲେ ମରିଚପାଣି ଟିକିଏ ମିଳିବ ଏଇ ଆଶାରେ ଦେହର ଅସ୍ୱସ୍ତି ସହି ହୋଇଯାଏ । ମରିଚପାଣି ମୁନ୍ଦିକ ମିଳିଗଲେ ସମସ୍ତେ ଦାତାର ମଙ୍ଗଳ କାମନା କରନ୍ତି । ଆଜି ତା' ସଙ୍ଗେ ଟିକିଏ ଦେଖା ହୋଇଯାଇଥିଲେ ମନର ସବୁ ଚିନ୍ତା ଦୂର ହୋଇଥାନ୍ତା ! କୁଆଡ଼େ ଗଲା ଆଜି ସିଏ ? ଦେଖା ହୋଇଯାଇଥିଲେ, ଦୁଇ ଭରିଟି ଦେଶୀ ମାଲ ହାତକୁ ଆସିଥାନ୍ତା, ମାସକର ଗୁଜରାଣ ମେଣ୍ଟିଥାନ୍ତା । ···ଗୋପାଳ ଯେଉଁ ଲୋକଟାକୁ ଆଜି ଜିହଲ ଦିଆଇଲା, ସେ୍ୱ ସେ ନୁହେଁ ତ ? ଯାହାଠାରେ ପ୍ରତ୍ୟହ ଗାୟତ୍ରୀ ଜପୁଥିବା ବ୍ରାହ୍ମଣଙ୍କର ଏତେ ସନ୍ତୋଷ, ତା'କୁ ତ ଦଣ୍ଡ ହେବାର ନୁହେଁ ! ସନ୍ତର୍ପଣରେ ବ୍ରାହ୍ମଣ ଗୋପାଳ ବାବୁଙ୍କୁ ଲୋକଟି ବିଷୟରେ ପ୍ରଶ୍ନ କରିବାକୁ ଆରମ୍ଭ କଲେ ।

କି ଦୁର୍ଭାଗ୍ୟ ! ସେଇ ସଦାନନ୍ଦ ସିଂହକୁ ଗୋପାଳ ଜିହଲରେ ପୂରାଇ ଆସିଛି । ବିଚରାର ରୋଗିଣୀ ମାଇପଟିଏ, ଯୋଡ଼ିଏ ସାନପିଲା । ସେ ଯେତେଥର ତା' ଦୁଆରକୁ ଯା'ନ୍ତି, ସଦାନନ୍ଦ ସେତେଥର ସେ ପିଲା ଦିଓଟିକୁ ଆଣି ତାଙ୍କ ଗୋଡ଼ ତଳେ ମୁଣ୍ଡିଆ ମରାଏ । ତାଙ୍କ ସନ୍ତୋଷ ଓ ଆଶୀର୍ବାଦର କ'ଣ ଏତେବେ ଏଇଆ ଫଳ ! ବିଚରା ଦଶବର୍ଷ ହେଲା ଘାଣ୍ଟି ହୋଇ ହୋଇ ଶେଷକୁ ଜିହଲ ଗଲା ! ତା'ର ଆଗ ଖଣ୍ଡିଏ ଘୋଡ଼ାଗାଡ଼ି ଥିଲା । ସାଇକଲ ରିକ୍‌ସା ଆସିବାରୁ ଆଉ ଘୋଡ଼ାଗାଡ଼ି ଚଳିଲା ନାହିଁ । ଘୋଡ଼ାଗାଡ଼ିଟି ବିକି ଖଣ୍ଡିଏ ସାଇକଲ ରିକ୍‌ସା କରିବ ବୋଲି ଯେତେ ବିଚାରିଲା, କିଛି ଫଳ ହେଲା ନାହିଁ । ଖାଇବାକୁ ନ ପାଇ ଘୋଡ଼ା ଦି'ଟା ମଲେ । ଗାଡ଼ିଖଣ୍ଡ ପଚିଶ ଟଙ୍କାକୁ ବିକାହେଇ ଗୁଜୁରାଣ କଣା ହେଲା । ଦେଶୀ ପତ୍ରି କାରବାରରେ ଚଳୁଥିଲା ଯେ ସେତିକେ ଗଲା ।

ଯାହାହେଉ, ପତ୍ରିତକ ସରକାର କିଣିନେଇ ଯେଉଁ ଦଶ ପଚିଶ ଦେଇଥିବେ, ସେଇଥିରେ ପିଲାମାଇପ ଚଳୁ ଚଳୁ ସଦାନନ୍ଦ ପୁଣି ଫେରି ଆସିବ । ମରଦ ପୁଅ, ପୁଣି କ'ଣ ଫନ୍ଦିଫିକର କରି ଚଳିବ ।

ଗୋପାଳବାବୁ ଏ ସୁଖସ୍ୱପ୍ନ ଭାଙ୍ଗିଦେଲେ । ବୃଦ୍ଧ ତାଙ୍କଠାରୁ ଶୁଣିଲେ, ଏଭଳି ଆସାମୀଙ୍କଠାରୁ ଯେଉଁ ମାଲ ବରାମଦ୍ ହୁଏ, ତାକୁ ସରକାର ପୋଡ଼ାଇ ଦିଅନ୍ତି । କି ମୂର୍ଖତା ! ଗଞ୍ଜେଇ ଧୂଆଁଟା ଅନିଷ୍ଟକାରୀ ! ତାହା ପାଖଆଖ ଲୋକଙ୍କର ନାକରେ ବାଜି କେତେ ଅନିଷ୍ଟ ହେଉ ନଥିବ । ପୁଣି ଏତେଗୁଡ଼ାଏ ସମ୍ପତ୍ତିର ଧ୍ୱଂସ ! ବୃଦ୍ଧଙ୍କ ମନସ୍ତାପ ଦୂର କରିବାକୁ ଗୋପାଳବାବୁ କହିଲେ "ମଉସା ! ସରକାର ଜାଣିବାକୁ ସିନା ସେ ସବୁ ପୋଡ଼ାହୁଏ । ଆମ ଡିପାର୍ଟମେଣ୍ଟ ଲୋକ ପୁଞ୍ଜାଏ ନଆଁକୁ ପକାଇ ସେ ସବୁ ରଖି ନିଅନ୍ତି । ଘରକୁ ନେଇ ନିଜେ ଖା'ନ୍ତି, କାହାକୁ କିମିତି ଦିଆନିଆ କରନ୍ତି ।"

ବୁଢ଼ାଙ୍କର କ୍ରୋଧ ସୀମା ଲଙ୍ଘନ କଲା, କହିଲେ, "ଓହୋ ! ତମକୁ ଧର୍ମ ସହୁଛି କିମିତି ରେ !" ହଠାତ୍ କିନ୍ତୁ ପ୍ରକୃତିସ୍ଥ ହୋଇ ସେ କହିଲେ, "ଆରେ ପୁଅ ! ମୋର ଆଉ ଜ୍ଞାନ ରହୁନାହିଁ । ମୁଁ ତତେ ଅଭିଶାପ ଦେଉଛି କାହିଁକି ? ଏମିତି ମହାପାପ ତୁ ତ କେଭେଁ କରୁନଥିବୁ । ପାରପୁଅ, ଦରିଦ୍ରଙ୍କୁ ଜେଲଖାନାରେ ପୂରାଇ ତାଙ୍କ ସମ୍ପତ୍ତି ଲୁଟି କରିବା ଅସମ୍ଭବ । ରଜା ଗୁଣରେ ତ ଧର୍ମ । ରଜା ସିମିତି କରଉଛି । ତୁ କ'ଣ କରିବୁ ? ଆଚ୍ଛା, ତୋ' ସାଥିବାଲାମାନେ ସେ ଜିନିସ ନେଇ ତ ଲୁଚେଇ କରି ଖାଉଥିବେ ? ଅପରକୁ ଯେଉଁ ଦୋଷ ପାଇଁ ଧରୁଛ, ସେ ଦୋଷ ନିଜେ କରୁଚ କିମିତିରେ ? ତୁ କେଭେଁ ଇମିତି କରିବୁ ନାହିଁଟି ? ଆହା ! ବିଚରା ସଦାନନ୍ଦର ପିଲାଗୁଡ଼ିକ ! ସେ ଓପାସରେ ପଡ଼ିଥିବେ, ତାଙ୍କ ବାପା ଜହଲ ଖଟୁଥିବ । ସେ ଯେଉଁ ପତ୍ରି ପାଇଁ ଜହଲ ଗଲା, ତାକୁ ଖାଉଥିବେ ଯେ ତାକୁ ଜହଲ ଠୁକିଲେ ! ଗୋବିନ୍ଦ, ଗୋବିନ୍ଦ !"

ବୁଢ଼ା ଆଉ କିଛି ନ କହି, ଗୁମ୍‌ମାରି ବାଟ ଚାଲିଲେ । ସନ୍ଧକୁ ସନ୍ଧ ଦୁଆରେ ଉଠିଲାବେଳକୁ ଦାମ ଦାସେ, ଗୋପାଳ ସତପଥୀ, ରଘୁଛିଆଣ୍ଡିଙ୍କ ସଙ୍ଗେ ଆଉ ଦି'ଚାରିଜଣ ତାଙ୍କ ଆସିବାକୁ ଚାହିଁକରି ବସିଛନ୍ତି । ଗୋଡ଼ ଧୋଇବା ପୂର୍ବରୁ ରାମ ମିଶ୍ରଙ୍କୁ କଟକର ହାଲ ହକିକତ ସବୁ ବଖାଣିବାକୁ ପଡ଼ିଲା । ସଦାନନ୍ଦ ସିଂହ ଓ ତା'ର ଅରକ୍ଷିତ ପିଲା ଦୁଇଟିଙ୍କ ଦୁରବସ୍ଥାରେ ସମସ୍ତେ

ସମବେଦନା ପ୍ରକାଶ କରୁଛନ୍ତି, ଏଇ ସମୟରେ ଗୋପାଳ ବାବୁ ଘରୁ ପାଣି ଢାଳେ ଆଣିଦେଲେ, ମଉସା ଗୋଡ଼ ଧୋଇବେ ବୋଲି । ରାମ ମିଶ୍ରେ ତାଙ୍କୁ ଚାହାଁଇ କହିଲେ, "ଆହେ ! ସ୍ତା ସାଙ୍ଗରେ ବାଟରେ ଦେଖାହେବାରୁ ସବୁ ଜାଣିଲି ସିନା ! ସ୍ୱେ ଗୋପାଳ, ମୋ ଶାଳୀ ପାରର ସାନପୁଅ । ସ୍ତାଶ ହାତରେ ସଦାନନ୍ଦ ମାମୁଁ ଘରକୁ ଗଲେ, ଆମ ଭେଳା ବୁଡ଼ିଲା । ସ୍ତାର ଦୋଷ କ'ଣ ? ଗୃକର ତ କରିଛୁ ।"

ଗୋପାଳ ବାବୁ ଲେଖାଯୋଖା ମଉସାମାନଙ୍କୁ ନମସ୍କାର ହୋଇ କଥା-ବାର୍ତ୍ତା ହେଉଛନ୍ତି, ଘର ଭିତରୁ ଶିକୁଳି ଖଡ଼ଖଡ଼ ହେଲା । ସେଇ ଗୋଟାକ ରାମ ମିଶ୍ରଙ୍କ ସନ୍ତାନବିହୀନ ଘରେ ଡାକରା ଘଣ୍ଟି । ସେ ଯାଇ ଦଣ୍ଡକେ ଫେରି ଆସି ଖୁସିରେ ଗଦ୍‌ଗଦ୍ ହୋଇ କହିଲେ, "ଆରେ ! ସ୍ତା ମାଉସୀ କହୁଛି ଘରେ ଟିକିଏ କ'ଣ ଅଛି । ତମେ ସବୁ ବସ ।"

ଅଧ ଘଣ୍ଟାକ ଭିତରେ ମରିଚ ପାଣିର ଆସର ବସିଗଲା । ରଘୁ ତିଆଡ଼ି ଗ୍ଲାସରୁ ଢୋକେ କଣ୍ଠସ୍ଥ କରି ରାଏ ଦେଲେ, "ଆରେ ! ଭାଉଜ ସ୍ତାକୁ କୁଆଡ଼ୁ ଆଣିଲା ମ ! ସ୍ୱେ ତ ଗଡ଼ଜାତି ମାଲ୍ ।" ରଘୁ ତିଆଡ଼ିଙ୍କ ଚାହାଁରାପଣ ସେ ଗାଁର ଆଡ଼ଦୀର୍ଘ ପାଞ୍ଚ କୋଶରେ ସମସ୍ତଙ୍କୁ ଜଣା ।

ତେଣେ ଘରେ ଗୋପାଳବାବୁ କହୁଥାନ୍ତି, "ମାଉସୀ ! ମୁଁ ସ୍ତାକୁ ଆଣିଥିଲି ବୋଲି ମଉସା ଯିମିତ କେଉଁ ନ ଜାଣିବେ । ନଇପାଣି କେଜାଣି ବାଜିଯିବ ବୋଲି ମୁଁ ପ୍ୟାଣ୍ଟ୍ ପକେଟରେ ସ୍ତାକୁ ଟେକି ଧଇଲା ବେଳେ ମଉସାଙ୍କ ନଜରେ ପଡ଼ିଯାଇଥିଲା । ସେ ବିୟୁଟ ବୋଲି ଆଗରୁ କହିଦେଲେ । ନହେଲେ ମୋଠାରୁ ସତ କଥା ବାହାରିପଡ଼ିଥାନ୍ତା ।" ମାଉସୀ ଉତ୍ତର ଦେଲେ, "ନାଇଁ ମ ! ସେ ଯିମିତି ଅବଗୁଣିଆ ଲୋକ, ସରକାରୀ ଜିନିଷ ତୁ ଚୋରେଇ ଆଣିଚୁ ବୋଲି ଜାଣିଲେ ସେ ତୋ' ପାଖକୁ କଟକଯାଏଁ ଚହଟି ଯିବେ । ଏଣେ ସବୁଦିନ ଏଥିରୁ ଟିକିଏ ନ ହେଲେ ରାତିରେ ନିଦ ହେବ ନାହିଁ । ବାପା ! ତୋ ଯୋଗୁ ଏଇଲେ ତିନମାସ ସବୁ ସୁରୁଖୁରୁରେ ଚଳିବ ।" ମାଉସୀ ଦୁଇଟିଯାକ ବଡ଼ କାଗଜ ପୁଡ଼ା ଗୋଟିଏ ଘଡ଼ିରେ ଲୁଚାଇ ଦେଇଥିଲେ ।

---



ଅକାରଣପୁର ରାଜ୍ୟରେ ଜଣେ ରାଜା ଥାନ୍ତି, ତାଙ୍କ ନାମ ଅବ୍ୟବସ୍ଥିତ ସିଂହ । ଶହେ କୋଡ଼ିଏ କୋଶ ମୁଲକ । ଝାଣୁଆ ରାଜା ବୋଲି ଚାରିଆଡ଼େ ନାମ ଡାକ । ତାଙ୍କ ମୁହଁ ଉପରକୁ କେହି ଯିବାକୁ ଇଚ୍ଛା କରନ୍ତି ନାହିଁ । ତାଙ୍କ ରାଗ ବେଳେ ଯେ ହାବୁଡ଼ି ଯିବ, ସେ ଆଉ ଥରେ ଘୋଷରା ହୋଇ ନଗଲେ ଆଉ ତାଙ୍କ ପାଖ ମାଡ଼ିବ ନାହିଁ । ତାଙ୍କ ଖୁସିବେଳେ ଯେ ଯିବ ସେ ପୁଣି ଯିବାକୁ ଚାହିଁବ—କିନ୍ତୁ ଖୁସୀ, ରାଗ, ଲୋଭ, ଶୋଚନା, ହିଂସା, ନୈରାଶ୍ୟ, ଏତେ ଶୀଘ୍ର ଶୀଘ୍ର ମନକୁ ଅଧିକାର କରନ୍ତି ଯେ, ସେ ଆଜି ଖୁସୀ ଅଛନ୍ତି ବୋଲି କାଲି ଯଦି ଆଶା କରି ଆସିବ, ତେବେ ବିପରୀତ ଫଳ ହେବାର ସମ୍ଭାବନା ଅଧିକ । ତେଣୁ ସମସ୍ତେ ତାଙ୍କୁ ଆଡ଼େଇ ହୋଇ ଚଳିବାକୁ ଶ୍ରେୟ ମନେ କରନ୍ତି । ସେ ମଧ୍ୟ ଅନ୍ୟ କାହାକୁ ସେପରି ବେଶି ଲୋଡ଼ନ୍ତି ନାହିଁ କି ଅନ୍ୟମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଇଚ୍ଛା କରନ୍ତି ନାହିଁ । ତାଙ୍କ ନିଜ ମନ ସଙ୍ଗେ ଲଢ଼େଇ କରୁକରୁ ତାଙ୍କର ବେଳ ଯାଏ । ଯଦି ବା ନିଜ ମନକୁ ସମ୍ଭାଳି ରଖିଲେ, ରାଣୀଙ୍କୁ କେଭେଁ ସମ୍ଭାଳି ହୁଏ ନାହିଁ । ଈଶ୍ୱରଙ୍କ ବରାଦ, ଯେମିତି

ସ୍ୱାମୀକୁ ସେଇପରି ସ୍ତ୍ରୀ ଯୋଗାଇ ଦିଅନ୍ତି । ରାଣୀ ବି ପ୍ରାୟ ଅବ୍ୟବସ୍ଥିତା । ଉଭୟଙ୍କର ଏକ ସମୟରେ ଏକ ମନୋବୃତ୍ତି ହେଲେ ଅବା ଯେନକେନ ପ୍ରକାରେଣ ଚଳିଯାନ୍ତି । କିନ୍ତୁ ବିଧି ବିଡ଼ମ୍ବନାରେ, ରାଜାଙ୍କ ଖୁସି ବେଳକୁ ରାଣୀଙ୍କର ରାଗ ବେଳ, ରାଜାଙ୍କ ରାଗ ବେଳକୁ ରାଣୀଙ୍କର ଅନୁଶୋଚନା ଆତ୍ମ-ପରୀକ୍ଷା ବେଳ—ରାଜାଙ୍କର ହିଂସା ବେଳକୁ ରାଣୀଙ୍କର ନୈରାଶ୍ୟ ବେଳ ଲାଗିଥାଏ—ତେଣୁ ରାଜା ରାଣୀ ବି ଯଥାସମ୍ଭବ ପରସ୍ପରଠାରୁ ଅଲଗା ହୋଇ ରହିବାକୁ ପସନ୍ଦ କରନ୍ତି ।

ଶାସନ କାର୍ଯ୍ୟରେ ମନ୍ତ୍ରୀମାନେ କେବେ ଆସି ପରାମର୍ଶ କରିବାକୁ ସାହସ କରନ୍ତି ନାହିଁ । ସବୁ ଲେଖି କରି ପଠାଇଦିଅନ୍ତି—ତାହା ରାଜାଙ୍କ ପାଖରେ ଯେଉଁ ବେଳରେ ଯାଇ ପହଞ୍ଚେ ସେଇ ବେଳକୁ ଗୃହୀତ ଅର୍ଡ଼ର ହୁଏ । ଅର୍ଡ଼ରକୁ ମଧ୍ୟ କେହି ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ, କାରଣ ଅର୍ଡ଼ର ଆସି ମନ୍ତ୍ରୀଙ୍କ ପାଖେ ପହଞ୍ଚିଲା ବେଳକୁ ହୁଏତ ରାଜାଙ୍କ ମନ ବଦଳି ସାରିଥିବ । ସମସ୍ତେ ଯେମିତି ଉପାୟରେ ଥାନ୍ତି ।

ମନ୍ତ୍ରୀଙ୍କ ଭିତରେ ବି ଭାରି ରାଗରୋସ ହୁଏ । କିନ୍ତୁ ସବୁଠାରୁ ବେଶୀ ଥାଏ ମନ୍ତ୍ରୀଷଣ୍ଢ ଓ ଦେଶୋତ୍ତୋଳେଣ ମନ୍ତ୍ରୀଙ୍କ ଭିତରେ । ମନ୍ତ୍ରୀଷଣ୍ଢଙ୍କୁ ଆଗ ପ୍ରଧାନ ମନ୍ତ୍ରୀ ବୋଲି କୁହାଯାଉଥିଲା । କିନ୍ତୁ ସେ ସମସ୍ତଙ୍କୁ ଜାଗ୍ରତରେ ଆଡ଼-ପତେଇ ରହିବା ହେତୁ ତାଙ୍କୁ ଷଣ୍ଢ ବୋଲି କୁହାଗଲା । ଷଣ୍ଢ ନ କହି ପୁଂଗବ ବୋଲି କହିବାକୁ ସେ ଭାରି ଜିଦ୍ ଧରିଲେ, କିନ୍ତୁ ଏ ପ୍ରସ୍ତାବ ରାଜାଙ୍କ ପାଖରେ ଖୁସି ବେଳେ ଯାଇ ପହଞ୍ଚିଲା ; ସାଧାରଣ ଲୋକେ ପୁଂଗବ ଶବ୍ଦ ବୁଝିପାରିବେ ନାହିଁ ବୋଲି ସେ 'ଷଣ୍ଢ' କହିବାକୁ ପସନ୍ଦ କଲେ । ସେହି ଦିନଠାରୁ ସେ ହେଲେ ମନ୍ତ୍ରୀଷଣ୍ଢ । ଉନ୍ନୟନ ମନ୍ତ୍ରୀଙ୍କୁ ସେହି କାରଣରୁ ଦେଶୋତ୍ତୋଳେଣ ମନ୍ତ୍ରୀ ଅର୍ଥାତ୍ ଦେଶକୁ ଉପରକୁ ଠେଲିବା ବିଭାଗ ମନ୍ତ୍ରୀ ବୋଲି କୁହାଗଲା । ମନ୍ତ୍ରୀଷଣ୍ଢ ଓ ଉତ୍ତୋଳେଣ ମନ୍ତ୍ରୀଙ୍କ ଭିତରେ ଭାରି ପ୍ରତିଦ୍ୱନ୍ଦ୍ୱିତା ଥାଏ ।

ସ୍ୱାଧୀନତା ଦିବସ ଦିନ ଗୋଟିଏ ଖୁବ୍ ବଡ଼ ସଭା ହୋଇଥାଏ । ନାଚ ଗୀତ ଦେଖିବା ଲୋଭରେ ସେ ଦିନ ବହୁତ ଲୋକ ଉପସ୍ଥିତ ଥିଲେ । ସେଥିରେ ଡେରି ହେଲା, ରାଜା ଖୁବ୍ ଲମ୍ବା ବକ୍ତୃତା ଦେଲେ—ଲୋକେ ଅଧୀର ହୋଇ ପାଟି ତୁଣ୍ଡ କଲେ । ରାଜା ରାଗିକରି ବକ୍ତୃତା ବନ୍ଦ କରି ଘରକୁ ବାହାରିଗଲେ ।

ରାଜା ଉଆସରେ ପହଞ୍ଚି ଟେଲିଫୋନରେ ଡକାଇଲେ ମନ୍ତ୍ରୀପରିଷଦଙ୍କୁ । କାହିଁକି ଗୋଳମାଳ ହେଲା ବୋଲି କୈଫିୟତ ମଗା ହେବାରେ, ମନ୍ତ୍ରୀପରିଷଦ ଉତ୍ତର ଦେଲେ, "ମହାରାଜ ! ମୁଁ ଆପଣଙ୍କୁ ଏ କଥା ବହୁବାର ଲେଖିକରି ଦେଇଛି । ମୋର ସହକର୍ମୀ ଦେଶର ଉତ୍ତୋଳନ ପରିବର୍ତ୍ତେ ଲୋକଙ୍କୁ ଉତ୍ତେଜିତ କରିବାରେ ସାହାଯ୍ୟ କରୁଛନ୍ତି । ସ୍ୱାଧୀନତା ଫଳରେ ଲୋକଙ୍କ ଭିତରେ ଯେଉଁ ଉତ୍ସାହ ଜାତ ହୋଇଛି ତାକୁ କାର୍ଯ୍ୟରେ ଲଗାଇବା ପରିବର୍ତ୍ତେ ସେମାନଙ୍କ ଭିତରେ ଖାଲି ଗୁଡ଼ାଏ ଆଶା ଜାଗ୍ରତ କରାଉଛନ୍ତି, ସେ ଆଶା ପୂରଣ ନ ହେବା ହେତୁ ଲୋକେ ଉତ୍ତେଜିତ ହେଉଛନ୍ତି ।"

ରାଜା ହୁକୁମ ଦେଲେ, "ଉତ୍ତୋଳନ ମନ୍ତ୍ରୀଙ୍କୁ ଡକାଅ ।" ସେ ଆସିଲାରୁ ରାଜା ଖୁବ ରାଗିଯାଇ କହିଲେ, "କିଓ, ତୁମେ କ'ଣ କରୁଛ ? ମୁଁ ଠିକଣା କରିଛି ଆଉ ତୁମେ ରହିବା ଦରକାର ନାହିଁ । ତୁମେ ଜଣେ ଅତି ପେଞ୍ଚୁଆ ଲୋକ । ତୁମକୁ କୁହାଗଲା, ଦେଶକୁ ଉପରକୁ ଠେଲ । ତୁମେ ଲୋକଙ୍କ ଭିତରେ ଆମ ପ୍ରତି ଅଶ୍ରଦ୍ଧା ଜାତ କରାଉଛ ?"

ଉତ୍ତୋଳନ ମନ୍ତ୍ରୀ ତୁନି ହୋଇ ରହିଲେ । ରାଜା ଗର୍ଜନ କଲେ, "କୈଫିୟତ୍ ଦିଅ, ତୁମର କ'ଣ କହିବାକୁ ଅଛି, କହ ।" ଉତ୍ତୋଳନ ମନ୍ତ୍ରୀ ଶଙ୍କିଶଙ୍କି ଉତ୍ତର ଦେଲେ, "ମହାରାଜ ମୋତେ ·ଚବିଶ ଘଣ୍ଟା ସମୟ ଦିଅନ୍ତୁ । ମୁଁ ମୋର କୈଫିୟତ୍ ଲେଖିକରି ଦେବି ।" ରାଜା ଏକଥା ଯୁକ୍ତିଯୁକ୍ତ ବୋଲି ଶୋଚନା କରି ରାଜି ହେଲେ ।

ଉତ୍ତୋଳନ ମନ୍ତ୍ରୀ ଯାଇ ତାଙ୍କ ପରାମର୍ଶଦାତା ଟାଇପ୍ ବାବୁଙ୍କ ଆଶ୍ରୟ ନେଲେ । ସେ କହିଲେ, "ହଜୁର, ଏଥିକୁ କିଛି ଶୋଚନା, ନାହିଁ । ଆପଣଙ୍କୁ ତ ସେ ପଚାରିଛନ୍ତି କ'ଣ କରୁଛ ବୋଲି । ଆପଣ ଲେଖନ୍ତୁ, ଆପଣ ଏ ଦେଶରେ ସୁନା ଫଳାଇବାକୁ ଗୋଟିଏ ଯୋଜନା ତିଆରି କରିଛନ୍ତି । ସେ ଯୋଜନାର ଗୋଟିଏ ଚଠା ମଧ୍ୟ କୈଫିୟତ୍ ସାଙ୍ଗରେ ଯୋଡ଼ି ଦେବା । ଆପଣ ଯଦି ଅନୁମତି ଦେବେ ତେବେ ମୁଁ ·ସେ ଯୋଜନା ତିଆରି କରି ଅତି ସୁନ୍ଦରଭାବେ ଟାଇପ୍ କରି ଦେଉଛି ।" ଉତ୍ତୋଳନ ମନ୍ତ୍ରୀ ମନ ଉଲ୍ଲାସରେ ନିଃଶ୍ୱାସ ମାରି କହିଲେ, "ତୁମକୁ ବହୁତ ଧନ୍ୟବାଦ । ତୁମକୁ ମୁଁ ଉଚ୍ଚ ପଦ ଦେବାକୁ ଭୁଲିବି ନାହିଁ ।"

କୈଫିୟତ୍ ପଢ଼ି ରାଜାଙ୍କ ମନ ଖାଲି ଖୁସୀ । ଲୋକଙ୍କୁ ସନ୍ତୋଷ ରଖିବାର ଗୋଟିଏ ଉଜ୍ଜ୍ୱଳ ଚିତ୍ର ତାଙ୍କୁ ଦେଖାଦେଲା । ତାଙ୍କୁ ଦିଶିଲା, ସେ ଏଇ ଯୋଜନା ଯୋଗୁଁ, ଦେଶର ଅଭାବ ଦୂର କରିଦେଇ ପାରିବେ । ବେକାର ସମସ୍ୟା ଦୂର ହେବ, ତାଙ୍କର ଯେଉଁ ଆତ୍ମୀୟମାନେ କାମ ନ ପାଇଲେ ବୋଲି ରାଣୀ ଅସନ୍ତୁଷ୍ଟ ହେଉଥିଲେ ସେମାନଙ୍କର ଗୋଟିଏ କିନାରା ହୋଇଯିବ । ଦେଶର ସମୃଦ୍ଧି ଉନ୍ନତି ଫଳରେ ତାଙ୍କର ଆସନ ବି ଦୃଢ଼ ହୋଇଯିବ । ସେ ସାଙ୍ଗେ ସାଙ୍ଗେ ନିଜର ଉଆସ ଧଉଳାଇବାକୁ ଆଦେଶ ଦେଇଦେଲେ. ବୈଠକ-ଖାନାର ସବୁ ଆସବାବ ବଦଳାଇ ଦେବାକୁ ହୁକୁମ ଦେଲେ ଏବଂ ନିଜ ପରିଜନଙ୍କୁ ନୂଆ ପୋଷାକ ଓ ବଢ଼ିଆ ପଗଡ଼ି ଦେବାକୁ ହୁକୁମ କରିଦେଲେ ।

ସାଙ୍ଗେ ସାଙ୍ଗେ ଉତ୍‌ଫେଲଣି ମନ୍ତ୍ରୀଙ୍କୁ ଡକରା ଦେଲା । ମନ୍ତ୍ରୀ ଯୋଜନାର ଲକ୍ଷ୍ୟଟି ବୁଝାଇଦେଲେ ଯେ ଏହା ଫଳରେ ଦେଶରେ ଗୁରିଆଡ଼େ ସୁନା ଫଳିବ ; କିନ୍ତୁ ପ୍ରଥମେ ଗୋଟିଏ ସ୍ଥାନ ବାଛି ସେଇଠାରେ ସୁନା ଫଳାଇ ଲୋକଙ୍କୁ ଦେଖାଇ ଦେବାକୁ ହେବ । ତାହା କରିବାକୁ ଆଗ ଆମର ଏ ବିରାଟ ରାଜ୍ୟ ତମାମ ଖୋଜି ଗୋଟିଏ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ କରିବାକୁ ହେବ । ବର୍ତ୍ତମାନ ଏ ବର୍ଷର ଯେଉଁ ଛ'ମାସ ଅଛି ସେଥିରେ ଏଇ ସ୍ଥାନ ନିର୍ଣ୍ଣୟ କରିବାକୁ ମୁଁ ଯୋଜନା କରିଛି । ଏଥିରେ ପାଞ୍ଚ ଲକ୍ଷ ଖର୍ଚ୍ଚ କରିବାକୁ ହେବ ।

ଭବିଷ୍ୟତର ଯେଉଁ ଚିତ୍ର ରାଜାଙ୍କ ଆଖି ଆଗରେ ଥିଲା ସେଥିରେ ଏ ଖର୍ଚ୍ଚ ତ ଅତି ସାମାନ୍ୟ । ସେ କହିଲେ, "ଯୋଜନାରେ ଅଗ୍ରସର ହୁଅ । ଆଚ୍ଛା ! ଏଥିରେ କି କି ଚାକିରି ସବୁ ଖୋଲିବ ?"

ସେ କହିଲେ, "ଆଜ୍ଞା ! ଆମର ଏ ରାଜ୍ୟରେ ଏ ଯୋଜନା କାର୍ଯ୍ୟକାରୀ କରିବାକୁ ଲୋକ ମିଳିବେ ବୋଲି ମନେ ହେଉନାହିଁ । ବିଭିନ୍ନ ଜାଗାର ମାଟି ପରୀକ୍ଷା କରିବାକୁ ହେବ । ତହିଁରେ କି କି ଉପାଦାନ ଅଛି. ଆମେ ଯେଉଁ ଫସଲ ଉତ୍ପାଦନ କରିବାକୁ ଯାଉଛେ ତାହା କେଉଁ ଜମିରେ କିପରି ହେବ ସେ କଥା ଅନୁସନ୍ଧାନ କରିବା ଦରକାର । ସେଥିପାଇଁ ଲୋକ ଦରକାର ହେଲେ ବାହାରୁ ଆଣିବାକୁ ହେବ । ଯଦି ଏଠାରେ ତଳ ପାହିଆରେ ଯୋଗ୍ୟ ଲୋକ କେହି ଥା'ନ୍ତି ସେମାନଙ୍କୁ ଉପରକୁ ଠେଲିବାକୁ ହେବ ।"

ରାଜା ଖୁବ୍ ଖୁସୀ ହୋଇ କହିଲେ, "ନିଶ୍ଚୟ, ନିଶ୍ଚୟ । ସେଇ ତ ତୁମର କାର୍ଯ୍ୟ । ହଁ ! ଦେଖ, ନୂଆ ଲୋକ ନେବା ବେଳେ ଆମ ଉଆସରେ ରାଣୀଙ୍କର ଯେଉଁ ଭାଇ ଅଛନ୍ତି ତାଙ୍କୁ ଭର୍ତ୍ତି କରିଦେବ । ସେ ଏଠା ମାଟିକୁ ଖୁବ୍ ଚିହ୍ନି କାମୁଡ଼ି ପଡ଼ିରହିଛନ୍ତି । ସେ ଭଲ କରିବେ ।"

ମୃତ୍ତିକାବିଶାରଦ ଖବରରେ ସେ ନିଯୁକ୍ତ ହେଲେ ; ତାଙ୍କ ସାଙ୍ଗକୁ ଆଉ ୩/୪ ଜଣ ବାହାରୁ ଆସିଲେ । ଟାଇପ୍ ବାବୁ ମନ୍ତ୍ରୀଙ୍କର ପ୍ରଧାନ ସହକର୍ମୀ ପାହ୍ୟାକୁ ଉଠିଲେ । ଗସ୍ତ କରିବାକୁ ୧୬ ଖଣ୍ଡ ନୂଆ ଜିପ୍‌ଗାଡ଼ି କିଣା ହେବାର କଥା ହେଲା । ଗସ୍ତ ଖର୍ଚ୍ଚ ପାଇଁ ମୋଟା ଟଙ୍କା ବ୍ୟବସ୍ଥା ହେଲା । ମନ୍ତ୍ରୀଙ୍କ ଏ କାର୍ଯ୍ୟ ତାଙ୍କ ଦପ୍ତରର ଗତାନୁଗତିକ କାର୍ଯ୍ୟର ବାହାରେ ବୋଲି ତାଙ୍କୁ ମଧ୍ୟ ମାସକୁ ପାଞ୍ଚ ଶହ ଟଙ୍କା ଅଧିକ ଦରମା ମିଳିଲା । ନୂଆ ଘର ଭଡ଼ା ନିଆଗଲା—ଏ ଯୋଜନା ପାଇଁ ସ୍ୱତନ୍ତ୍ର ଏକ ମହଲା କୋଠା ତୋଳିବା ପାଇଁ ଟଙ୍କା ମଧ୍ୟ ମଞ୍ଜୁର ହେଲା ।

ବର୍ଷ ସରିବାକୁ ଆଉ ମୋଟେ ମାସେ ବାକି । ମଟରଗୁଡ଼ାକ ଆସି ପଡ଼ିଛି । ରେଜିଷ୍ଟ୍ରେସନ ପାଇଁ ଟଙ୍କା ନିଅଣ୍ଟ ହେବାରୁ ସେଗୁଡ଼ାକ ବ୍ୟବହାର ହୋଇ ପାରୁନାହିଁ । ଅଫିସରମାନେ ନିଜ ନିଜ ମଟରରେ ଖାଲି ଭଲ ସଡ଼କ ଯେଉଁ ପର୍ଯ୍ୟନ୍ତ ଅଛି ସେତିକି ଯାଇ ଥରକୁ ଥର ଫେରୁଛନ୍ତି । ଦେଶୋନ୍ନତି ବିଭାଗ ମନ୍ତ୍ରୀ ମଝିରେ ମଝିରେ ଠେଲି ଦେଉଥାନ୍ତି, ମଟର ରେଜିଷ୍ଟ୍ରେସନ ଟଙ୍କା ମଞ୍ଜୁର କରାଇବାକୁ । ଏଣେ ମନ୍ତ୍ରୀପରି ଚୁପ୍ ରହି କରିବାରେ ସନ୍ତୁଷ୍ଟ ନ ରହି, "କାର୍ଯ୍ୟ କେଉଁ ପର୍ଯ୍ୟନ୍ତ ଅଗ୍ରସର ହେଲା" ବୋଲି କୈଫିୟତ୍‌ଟାଏ ମାଗି ଦେଲେ । ଦେଶୋନ୍ନତି ବିଭାଗର ଅକଲଗୁଡୁମ୍ ହୋଇଯାଇଥାନ୍ତା, ଯଦି ସେ ବିଭାଗର ପ୍ରଧାନ ସହକର୍ମୀ ( ପୂର୍ବର ଟାଇପ୍ ବାବୁ ) ଅତି ବିଚକ୍ଷଣ ନ ହୋଇଥାନ୍ତେ ।

ସେ ଅକାରଣପୁର ରାଜ୍ୟର ବିଭିନ୍ନ ସ୍ଥାନର ମାଟିକୁ ପରୀକ୍ଷା କରାଇ ଗୋଟିଏ ରିପୋର୍ଟ ଦେଲେ ଯେ, ମନ୍ତ୍ରୀପରିଙ୍କ ବିରାଟ ଉଆସ ଯେଉଁ ହତାରେ ଅଛି, ସେଇ ହତାର ମାଟି ସୁନା ଫଳିବା ପାଇଁ ଏକମାତ୍ର ଉପଯୁକ୍ତ ସ୍ଥାନ । ବିଶାରଦମାନଙ୍କ ରିପୋର୍ଟ—ଏଥିରେ ଉଁ ଚୁଁ କରିବ କିଏ ? ମନ୍ତ୍ରୀପରି ବାଧ୍ୟ

ହୋଇ ଅନ୍ୟ ଘରକୁ ଗଲେ ଓ ବସ୍ତ୍ରର ଟଙ୍କା ଖର୍ଚ୍ଚ କରି ପୁରୁଣା ଭୁଆସର୍ରେ ଯେଉଁ ସବୁ ଅଦଳ ବଦଳ କରିଥିଲେ, ସେହିପରି ଅଦଳ ବଦଳ ନୂଆ ଘରେ କରାଇବା ପାଇଁ ଟଙ୍କା ମଞ୍ଜୁର କରାଇ ନେଲେ । ତାଙ୍କ ପୁରୁଣା ଘର ସୂତା ଉତ୍ପାଦନ ଯୋଜନାର କେନ୍ଦ୍ର ଅଫିସ ହେଲା ।

ତିନ୍ହି ଆର ବର୍ଷ ପାଇଁ ଯୋଜନା ହେଲା, ହତା ପାଇଁ ଗୋଟିଏ ଉଚ୍ଚ ଇଟା ବାଡ଼ ହେବ, ଓ ଭୂମି ଶୋଧ ହେବ । ପ୍ରକାଣ୍ଡ ଜାଗା ପ୍ରାୟ ୧୦ ଏକର ହେବ, ତା' ଚାରିପଟେ ୧୨ ଫୁଟ ଉଚ୍ଚର ପାଚେରି ତୋଳିବାକୁ ଯେତେ ଇଟା ଦରକାର ତାହା ବର୍ଷାବେଳେ ତିଆର କରିବା ଅସମ୍ଭବ । ଏଣେ ଶୀଘ୍ର ପାଚେରି ନ ହେଲେ ନ ଚଳେ—ସ୍ଥିର ହେଲା, ବିଦେଶରୁ ଦରକାରି କଳ ସବୁ ଆସି ବାଲି ସିମେଣ୍ଟରେ ଫମ୍ପା ଇଟା ତିଆର କରାଇ ବର୍ଷା ଦିନେ ପାଚେରି କରି ଦେବାକୁ ହେବ । ଯେଉଁ ତାର ବାଡ଼ ହୋଇଛି ତାହା ଥାଉ ବୋଲି କେହି କେହି କଥା ଉଠାଇଥିଲେ । କିନ୍ତୁ ତାର ବାଡ଼ ରହିଲେ ଦକ୍ଷିଣା ଓ ଉତ୍ତରୀ ପବନର ମାଡ଼ ବାଜି ଗଛ ନଷ୍ଟ ହେବାର ଭୟ, ପୁଣି ଦାଣ୍ଡ ଲୋକଙ୍କର ଲୋଲୁପ ଦୃଷ୍ଟି ପଡ଼ିବ, ଏଣେ କାମ କରୁଥିବା ଲୋକଙ୍କର ଏକାଗ୍ରତା ବି ଭାଙ୍ଗିଯିବ—ଏତେ ଅସୁବିଧା ସ୍ଥଳେ ତାରବାଡ଼ ଚଳିବ କିପରି ? ପ୍ରଶ୍ନ ହେଲା, ପ୍ରାୟ କେତେ ସୂତା ଫଳିବ—ଅଟକଳଟା ମିଳିଯିବାରୁ ଆସେମ୍ବ୍ଲି ଓ ଅର୍ଥମନ୍ତ୍ରୀ ମଣିଲେ ଯେ ଏ ଯୋଜନା ଉପରେ ଖର୍ଚ୍ଚ ପାଇଁ କୁଣ୍ଠ କୁଣ୍ଠ ହେଲେ ଚଳିବ ନାହିଁ । ଯେଉଁ କଳ ଆସିଲା, ତାହା ଚଳାଇବାକୁ ଲୋକର ଅଭାବ, ସ୍ଥିର ହେଲା ତିନି ଜଣ ଉଚ୍ଚଶିକ୍ଷିତ ଇଞ୍ଜିନିଅର ୬ ମାସ ବୃତ୍ତି ପାଇ ତାହା ଚଳାଇବାକୁ ଶିଖି ଆସିବେ ।

ଏ ସବୁ କାର୍ଯ୍ୟରେ ସମସ୍ତେ ବ୍ୟସ୍ତ ରହିବାରୁ ବଳଦ ପାଇଁ ଯୋଗାଡ଼ କରିବାରେ ଡେରି ହୋଇଗଲା । ଏଣେ କେତେ ହଳ ବଳଦ ଆସିବେ ସେ ବିଷୟରେ ମଧ୍ୟ କମ୍ ଘାଣ୍ଟାଘାଣ୍ଟ ହେଲା ନାହିଁ । ସୂତା ଗୃଷ ପାଇଁ ଜମି କେତେ ଓଡ଼ ଗୃଷ ହେବ ସେ ବିଷୟରେ କୌଣସି ବିଶ୍ୱାସଯୋଗ୍ୟ ଶାସ୍ତ୍ର ବଚନ ମିଳିଲା ନାହିଁ । ବହୁ ଗବେଷଣା କରାଇ ଦେଶୋଦ୍ଧାରଣ ମନ୍ତ୍ରୀ ନୋଟ ଦେଲେ, ମୂଳା ନିମନ୍ତେ ଷାଠିଏ ଓଡ଼ ଗୃଷ କରିବା ଦରକାର ହୁଏ । ମୂଳାର

ଦାମ ଅନୁପାତରେ ସୁନା ଚାଷ ପାଇଁ ୬୦୦୦ ଥର ଚାଷ କଲେ ବି ଯଥେଷ୍ଟ ହେବ ନାହିଁ । ତେବେ ପ୍ରଥମ ବର୍ଷ ବଡ଼ ଲଙ୍ଗଳରେ ଅନ୍ତତଃ ୬୦ ଥର ଚାଷ କରାଯିବା ଦରକାର । ସାଧାରଣ ଚାଷିମାନଙ୍କର ୫ ଏକର ପାଇଁ ହଳେ ବଳଦ ଦରକାର ହୁଅନ୍ତି, ସେ ପୁଣି ମୋଟେ ତିନି ଓଡ଼ ଚାଷ କରେ । ସେହି ମାପ କାଠିରେ ୧୦ ଏକର ଜମି ୬୦ ଓଡ଼ ଚାଷ କରିବାକୁ ବୈଜ୍ଞାନିକ ନିୟମରେ ୪୦ ହଳ ଦରକାର । କିଣା ହେଉଥିବା ବଳଦ ତ ସବୁବେଳେ କାର୍ଯ୍ୟକ୍ଷମ ରହିବେ ନାହିଁ ; ସେମାନଙ୍କ ଛୁଟି ବେଳେ କାର୍ଯ୍ୟ ଚଳାଇବାକୁ ଅନ୍ତତଃ ୫ ହଳ ଅଧିକା ପାଖରେ ଥିବା ଦରକାର ।" ଏ ଯୁକ୍ତିଯୁକ୍ତ କଥାରେ କିଏ ବା ଆପତ୍ତି କରିବ ? ବହୁ ଦୂରକୁ ଯାଇ ୩ ମାସରେ ବଳଦ ଆସିଲେ । ସେମାନେ ଆସିଲେ ତାଙ୍କର ହେପାଜତ୍ କରିବାକୁ ଓ ହଳ କରିବାକୁ ୯୦ ଜଣ ଲୋକ ଏଣେ ମୁକରର ହୋଇ ତିନି ମାସ ହେଲା ଅପେକ୍ଷା କରିଥାନ୍ତି ।

ବଳଦ ଆସି ପହଞ୍ଚିଲା ବେଳକୁ ମାର୍ଚ୍ଚ ମାସ ହୋଇଗଲାଣି । ମହାନଦୀରୁ ପାଣି ଆଣି ଛଞ୍ଚି ମାଟିକୁ ଲଙ୍ଗଳ କାଟିଲା ଭଳି କରିବା ପାଇଁ ୩ଟା ପାଣିବୁହା ଟ୍ରକ୍ କିଣା ହେଲା । ହଳ ହୋଇ ମାଟି ଅଦ୍ଭୁତ ପର ହୋଇଗଲା । ଗୋଟାଏ ଗୋଟାଏ ଯାହା ଗୋଡ଼ ଥିଲା, ସେ ସବୁ ଚାଲୁଣିରେ ଚାଲିହୋଇ ବାହାରିଲା । ଆଉ କିଛି ବାକି ନାହିଁ, ମଞ୍ଜି ଆସି ଗଦା ପ୍ରସ୍ତୁତ ହେଲେ ରୁଆ ହେବ । କେଉଁ ରୀତିରେ ରୁଆ ହେବ ଓ କି ସାର ଦିଆଯିବ ସେ କଥା ଠିକଣା ହୋଇ ସାରିଥାଏ । ସରକାରୀ ଖତ ଦେଲେ ମାଟିର ଉର୍ବରତା ଚାଲିଯାଏ ବୋଲି ଗୋଟାଏ ବିଖ୍ୟାତ କାଗଜର ଖଣ୍ଡେ ଟୁକୁରା ଜଣେ କିରାଣୀ ସେ ଫାଇଲରେ ଗୁଞ୍ଜି ଦେଇଥିଲେ । ବିଚାର ହୋଇ ହୋଇ ସିଦ୍ଧାନ୍ତ ହେଲା; 'ସରକାରୀ ପିଡ଼ିଆ ଯେତିକି ଦିଆ ହେବ, କମ୍ପୋଷ୍ଟ ଖତ, ଗୋବର ଓ ହାଡଗୁଣ୍ଡ ପ୍ରତ୍ୟେକରୁ ସେଇ ପରିମାଣରେ ଦିଆଯିବ । ସେଥିପାଇଁ କଣ୍ଟ୍ରାକ୍ଟର ନିଯୁକ୍ତ ହୋଇ ସାରିଥାନ୍ତି ।

ମଞ୍ଜି ଆସି ପାର୍ଶ୍ୱେଲ ଖୋଲା ହୋଇସାରି ନାହିଁ, ଏଇ ସମୟରେ ଗୋଟାଏ ଖବରକାଗଜ ପଚାରିଦେଲା, "ଯାହା ଆସିଲା ସେ ସବୁ ସୁନା ଗଛର ମଞ୍ଜି ନା ନୁହେଁ ?" ରଜା ମନ୍ତ୍ରୀ ସମସ୍ତେ ବିଗିଡ଼ିଲେ, ଏ ଖବରକାଗଜ ଗୁଡ଼ାକ ଗଠନ-

ମୂଳକ କାର୍ଯ୍ୟରେ ମନ ଦେବେ ନାହିଁ, ଖାଲି ସବୁବେଳେ ସମାଲୋଚନା । ଯେଉଁ କମ୍ପାନୀରୁ ମଞ୍ଜି ଆସିଛି, ତାକୁ ଅବିଶ୍ୱାସ କରିବାର କୌଣସି କାରଣ ନଥାଏ ।

ମଞ୍ଜିଗୁଡ଼ାକ ଶହେକେ ମୋଟେ ଗୃଲିଶଟା ଗଜା ହେଲା । ସେଥିକୁ ଶୋଚନା କ'ଣ ? ଗୋଟାଏ ସାମ୍ବାଦିକ ସମ୍ମିଳନୀ ଡକାଇ ଦେଶୋତ୍‌ତୋଳଣ ମନ୍ତ୍ରୀ ଜଣାଇ ଦେଲେ, "ଏଥିରୁ ପୁଞ୍ଜାଏ ଗଛ ଫଳିବେ ତ ଆମର ଯେତେ ଟଙ୍କା ଲାଗିଛି ସବୁ ମିଳିଯିବ ।" ସମସ୍ତେ ସନ୍ତୁଷ୍ଟ ହେଲେ ।

ଜାପାନୀ ରୀତିରେ ଗଛଗୁଡ଼ିକ ଲାଗିଲା । ମାଟି ଖତ ଓ ପାଣି ବଳରେ ଗଛ ଯେପରି ବଢ଼ିଲା ସେଥିରେ ଆଉ କାହାର ସନ୍ଦେହ ରହିଲା ନାହିଁ—କି ପ୍ରକାର ଫସଲ ହେବ । ଖବରକାଗଜବାଲା ଥରକୁ ଥର ଆସି ଫଟୋ ଉଠାଇ ନେଉଥାନ୍ତି । ବିଦେଶର ଗୋଟିଏ ବିଖ୍ୟାତ ଖବର କାଗଜରେ ସମ୍ପାଦକୀୟ ଟିପ୍ପଣୀ ବାହାରିଲା, "ଅକାରଣପୁରରେ ଯେଉଁ ପରୀକ୍ଷା ହେଉଛି, ସମଗ୍ର ପୃଥିବୀ ତା'କୁ ସତୃଷ୍ଣ ନୟନରେ ଗୃହିଁ ରହିଛି । ଏହା ଯଦି ସଫଳ ହୁଏ, ତେବେ ଆଉ ଜୀବନ ବିପନ୍ନ କରି ସୁନା ଖୋଳି ବାହାର କରିବା ଦରକାର ହେବ ନାହିଁ । ମୁଦ୍ରାନୀତି ବଦଳିଯିବ ଓ ଦେଶରେ ସବୁ ପ୍ରକାର ଉତ୍‌ତୋଳଣ କାର୍ଯ୍ୟ ପାଇଁ ପ୍ରବୃତ୍ତି ଶତଗୁଣ ବଢ଼ିଯିବ ।" ଏ କାଗଜରେ ସମ୍ପାଦକୀୟ ବାହାରିବା ପରେ ମନ୍ତ୍ରୀପକ୍ଷ ଯାହା ଚୁଗୁଲି କରୁଥିଲେ ତାହା ବନ୍ଦ କଲେ । କେବଳ ତାଙ୍କର ଗୋଟିଏ ଭୟ ରହିଲା, ଦେଶୋତ୍‌ତୋଳଣ ଯଦି ରାତିରେ ନିଜେ ଗୁଡ଼ାଏ ତୋଳି ନେଇଯାନ୍ତି—ସେ ରାଜାଙ୍କୁ କହି ଗଛପଟେ କଡ଼ା ପହରା ବସାଇ ଦେଲେ ଓ ପ୍ରତି ଗଛର ଫଳର ଭଉଁରିଆ କରିବାକୁ ଲୋକ ନିଯୁକ୍ତ କରିଦେଲେ ।

ସୁନାଗଛ ତିନି ବର୍ଷର ହେଲେ ଫଳ ଧରେ ବୋଲି ସେତେବେଳେକୁ ପ୍ରଗ୍ଭର ହୋଇ ସାରିଥାଏ । ତେଣୁ କେହି ଅକାରଣରେ ଉଦ୍‌ବିଗ୍ନ ନ ହୋଇ ଦିନ ଗଣୁଥାନ୍ତି । ଗଛଗୁଡ଼ିକ ବଡ଼ ସରାଗରେ ବଢୁଥାଏ ।

ଗୋଟାଏ ଦିନ ଗୋଟାଏ ଲୋକର ଅବିବେଚନାରେ ଯୋଜନାରେ ଟିକିଏ ବ୍ୟାଘାତ ଘଟିଲା । ସେ ଦିନ ରାଜାଙ୍କର ଜନ୍ମ ଦିନ । ସନ୍ଧ୍ୟା ବେଳେ କିଲା ପଡ଼ିଆରେ ରାଜା ବିଜେ କରିବେ, ଆତସବାଜି ଫୁଟିବ । ରାଜ୍ୟ ତମାମ ସେ ଦିନ ଛୁଟି ହୋଇଥାଏ । ୪୫ ହଳଯାକ ବଳଦ ଯେଉଁ ଗଉଡ଼ ଟୋକା ଚରାଇବାକୁ ନେଇଥିଲା, ସେ ଗେଟ୍ ମୁହଁରେ ବଳଦଙ୍କୁ ଛାଡ଼ିଦେଇ ସଭାକୁ ଧାଇଁଗଲା । ସେ ତ ଜାଣେ, ଗୁହାଳ ପୋଛୁବା ବାଲା ବଳଦଙ୍କୁ ନେଇ ସବୁଦିନ ପରି ଯେଉଁଠା ସ୍ଥାନରେ ବାନ୍ଧିବ । ସ୍ୱେ କିନ୍ତୁ ଆଗରୁ ସେ ଓଳି ଛୁଟି ନେଇ ଯାଇଥାଏ । ହାକିମ ଅର୍ଡ଼ର କରିଥାନ୍ତି ଯେ ଜଗୁଆଳ ଟୋକା ଗେଟ୍ ପାଖରେ ବଳଦ ନ ଛାଡ଼ି ଗୁହାଳରେ ଆଣି ବାନ୍ଧିଦେଇଯିବ । ଅର୍ଡ଼ର, ଛୁଟି ଯୋଗୁଁ ଟାଇପ୍ ହୋଇପାରି ନଥାଏ ; ତୁଣ୍ଡରେ ଖବର ଦେବାକୁ କାହାକୁ ବରାଦ ହୋଇପାରି ନଥିଲା ।

ବଳଦଗୁଡ଼ାକ ଏ ସବୁ ଜାଣିବେ କୁଆଡ଼ୁ ? ସେମାନଙ୍କୁ କେହି ଗୁହାଳକୁ ନ ନେବାରୁ ସେମାନେ ବଗିଚାରେ ପଶିଲେ । ତହିଁଆର ଦିନ ସକାଳ ଟା ପର୍ଯ୍ୟନ୍ତ ତାଙ୍କୁ ଓଡ଼ାଇବାକୁ କେହି ନାହିଁ । ପହରାବାଲା ରାତି ଅଧକୁ ଆସି ତାଙ୍କ କର୍ତ୍ତବ୍ୟ କରିଥିଲେ । ସେମାନେ ତ ପାଚେରି ବାହାରେ ରହିବା ଲୋକ, ବଗିଚା ଭିତରକୁ ଦେଖିବେ କିମିତି, କାହିଁକି ବା ଦେଖିବେ ? ପୁଣି ସେ ଦିନଟା ଅନ୍ଧାର ରାତି ।

ତହିଁ ଆର ଦିନ ଭାରି ଧରପଗଡ଼ ଲାଗିଲା, ସମସ୍ତଙ୍କୁ କୈଫିୟତ୍ ମଗାଗଲା । ପ୍ରାୟ ଅଧେ କର୍ମଚାରୀ ସସ୍‌ପେଣ୍ଡ୍ ହୋଇ ବିଚାରାଧୀନ ରହିଲେ । ଚାରିମାସ ପରେ ଠିକ୍ ହେଲା, ଗଉଡ଼ ପିଲା ବ୍ୟତୀତ ଆଉ କାହାର ଦୋଷ ନାହିଁ । ରାଜାଙ୍କ ଜନ୍ମ ଦିନ ଉତ୍ସବ ଦେଖିବାକୁ ଯିବାରେ କାହାକୁ ଦଣ୍ଡ ହୋଇ ପାରିବ ନାହିଁ ବୋଲି ନିର୍ଦ୍ଦେଶ ଥିବାରୁ ତାକୁ ମଧ୍ୟ ଛାଡ଼ି ମିଳିଲା । ଏ ଚାରିମାସ ଯାକର ଦରମା ମଧ୍ୟ ତା'କୁ ମିଳିବା ସକାଶେ ହୁକୁମ୍ ହେଲା । ସେ ବିଚରା କାମରୁ ବାହାରି ହୋଇ କଲିକତାର ଜଣେ ବାବୁ ବାଡ଼ିରେ କାମ କରୁଥାଏ । ତାହାର ଠିକଣା ଖୋଜାଖୋଜି କରି ମନିଅର୍ଡ଼ର ଖର୍ଚ୍ଚ କାଟି ତା' ଦରମା ତା' ପାଖକୁ ପଠାହେଲା ।

ଦେଶୋତ୍ତୋଳଣ ମନ୍ତ୍ରୀଙ୍କର ପୁରୋଦୃଷ୍ଟି ନଥିଲେ ଏତିକିରେ କଥା ସରିଥାନ୍ତା । ସେ କିନ୍ତୁ ସୁନା ବଗିଗୃହକୁ ଗୋରୁ ଚରିଯିବା ପରେ, ବ୍ୟାକୁଳ ହୋଇ ବଗିଗୃହଯାକ ବୁଲି ବୁଲି ଅଧା ଗୋରୁଖିଆ ୩୮ଟି ଗଛ ନିଜେ ଆଣି, ପାଇପ୍ ମୂଳରେ ରୋଇଦେଲେ । ସେଥିରୁ ଗୋଟିଏ ବଞ୍ଚିଲା । ଦେଶୋତ୍ତୋଳଣ ପ୍ରଚାର ବିଭାଗ ଜରିଆରେ ଗୋଟିଏ ବିଜ୍ଞାପନ ପ୍ରଚାରିତ କରିଦେଲେ ଯେ, ଏ ଯୋଜନା ବ୍ୟବସାୟ ଉଦ୍ଦେଶ୍ୟରେ କରାଯାଉନଥିଲା । ସରକାର ନିଜେ ବେପାର କରି ପଇସା ଉଠାଇବାର ଅନୁଷ୍ଠାନ ନୁହେଁ । ଲୋକେ ଏ ପରୀକ୍ଷାର ଫଳ ଜାଣିଲେ, ନିଜେ ନିଜେ ଏ ଚାଷ କରିଯିବେ । ସରକାର ପାଞ୍ଚ ଜଣିଆ କାରଖାନା ; ପୁଣି ନୂଆ କରି ଏ କାମ ଆରମ୍ଭ ହେଉଥିବାରୁ ଲଘୁତ୍ତ ଟିକିଏ ବେଶୀ ଲଗିଛି । କ୍ରମେ ନାନା ଦିଗରୁ ଖର୍ଚ୍ଚ କଟାଇବା ସମ୍ଭବ ହେବ ।

ପାଇପ୍ ମୂଳେ ଯେଉଁ ଗୋଟିକ ଗଛ ହୋଇଥିଲା, ତାହାର ଫଟୋ ପ୍ରତି କାଗଜରେ ବାହାରିଲା । ଅଗ୍ରୁଆମଣା ସମ୍ପାଦକ ଜଣେ ଦି'ଜଣ ସୁନାଗଛ ପ୍ରକୃତରେ ସୁନାଗଛ ନୁହେଁ ବୋଲି ସନ୍ଦେହ ପ୍ରକାଶ କଲେ । କିଏ ତାକୁ କହିଲା, ବଣତୁଳସିଆ, ଆଉ କିଏ କହିଲା, କୋରପୁଟିଆ ଝାଟି—ଏଇପରି ନାନା ପ୍ରକାର ସନ୍ଦେହ ପ୍ରକାଶ ହେବାରେ ବିଚାର ବିଭାଗୀୟ ତଦନ୍ତ ବସିଲା ; ଉଦ୍ଭିଦ ବିଶେଷଜ୍ଞଙ୍କ ସାକ୍ଷ୍ୟ ନିଆଗଲା । ସେ କହିଲେ, "ଗଛ ଠିକ୍ ଚିହ୍ନି ହେଉନାହିଁ । କିନ୍ତୁ ଏହା ଟିପାରି ଜାତୀୟ କୌଣସି ଗଛ ପରି ମନେ ହେଉଛି । ସେ ଜାତୀୟ ଗଛ ବର୍ଷକରେ ମଧ୍ୟ ଫଳେ, ତିନି ବର୍ଷରେ ବି ଫଳେ । ଫୁଲ କସି ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା ବିଜ୍ଞତାର କାର୍ଯ୍ୟ ହେବ ।" ତଥାପି ଯେଉଁ କାଗଜମାନେ ସନ୍ଦେହ ପ୍ରକାଶ କଲେ ସେମାନଙ୍କୁ ସାମ, ଦାନ, ଦଣ୍ଡ, ଭେଦ ମାଧ୍ୟମରେ ତୁନି କରାଗଲା ।

'ଶ୍ରେୟାଂସି ବହୁ ବିଘ୍ନାନ'—ଠିକ୍ ଫୁଲ କସି ଧରି ଆସିଲା ବେଳକୁ ଗୋଟିଏ ଦୁର୍ଘଟଣା ଘଟି ସମସ୍ତଙ୍କୁ ନିରାଶ କରିଦେଲା । ଦିନେ ଉତ୍ତୋଳଣ ମନ୍ତ୍ରୀ ସକାଳେ ଯାଇ ଗଛକୁ ଦେଖିଲା ବେଳକୁ ପଣ୍ଡ ସବୁ ଝାଉଁଳିବାକୁ ଆରମ୍ଭ କରିଛି । ସଙ୍ଗେ ସଙ୍ଗେ କୃଷି ବିଶାରଦମାନଙ୍କର ବୈଠକ ବସିଲା—ପୋକ ମାରିବାର ନାନା ପ୍ରକାର ଔଷଧ ଗୁଣ୍ଡ ବିଞ୍ଚା ହେଲା । କିନ୍ତୁ କିଛି ଫଳ ହେଲା

ନାହିଁ । ତିନି ଦିନରେ ଗଛଟି ଶୁଖି ଡାଙ୍ଗ ହୋଇଗଲା । ଭିତିରିଆ ଜଣେ ଚୁଗୁଲି କଲା ଯେ ଉତ୍‌ତେଲଣଙ୍କ ସହକର୍ମୀ ( ପୂର୍ବର ଟାଇପ୍ ବାବୁ ) ଦିନେ ରାତି ଅଧରେ ଆସି ଗଛଟାକୁ ଉପାଡ଼ି ଦେଇ ପୁଣି ପୋତି ଦେଇଗଲେ । ବିଶାରଦ-ମାନଙ୍କ ରିପୋର୍ଟରେ ଗଗନପବନ ଭରି ରହିଥିଲା ବେଳେ ଏ ଚୁଗୁଲିକୁ କେ ଅମଲ ଦେଉଛି ?

ତା'ପରେ ଲାଗିଲା ମସୁଧା, ଉତ୍‌ତେଲଣ ବିଭାଗରେ ଏଇ ସୁନା ଉତ୍ପାଦନ ସେକ୍‌ସନଟା ଉଠାଇ ଦିଆଯିବ ନା ରହିବ । ବିଭାଗରେ ଚାକିରି ପଇଥିବା ଲୋକେ ବଡ଼ବଡ଼ିଆଙ୍କୁ ଧରାଧରି କରିବା ସକାଶେ ଖୁବ୍ ବୁଲାବୁଲି କଲେ । ଏତେଗୁଡ଼ାଏ ଲୋକଙ୍କର ଚାକିରି ଚାଲିଯିବ—ଏ କଥାରେ ରାଣୀଙ୍କର ମଧ୍ୟ ସହାନୁଭୂତି ହେଲା । ବହୁ ଦାଣ୍ଡଚକଟ ପରେ ସ୍ଥିର ହେଲା, ଥରେ ଗୋଟିଏ ଯୋଜନା ବିଫଳ ହେଲା ବୋଲି ତାହାକୁ ଛାଡ଼ିଦେବା ଠିକ୍ ହେବ ନାହିଁ । ଆରବର୍ଷ ବୁଣା ବେଳକୁ ପୁଣି ସୁନା ଚାଷ କରିବାକୁ ହେବ । ବର୍ତ୍ତମାନ ଏ ବିଭାଗରେ ଅଭିଜ୍ଞତା ଅର୍ଜନ କରିଥିବା ଲୋକଙ୍କୁ ଛାଡ଼ିଦେଇ ପୁଣି ଚାରି ମାସ ପରେ ଲୋକ ନିଯୁକ୍ତ କଲେ, ଦରମା ବାବଦ୍‌ରେ ଯେତିକି ରହିବ, ବିଜ୍ଞାପନ, ପରୀକ୍ଷା ଓ ବଛାବଛିରେ ସେତିକି ଖର୍ଚ୍ଚ ହୋଇଯିବାର ଆଶଙ୍କା ।

ସୁନାଚାଷ ଅନୁଷ୍ଠାନ ପୂର୍ବପରି ଚାଲିଲା । ସୁନାଗଛ ନଥିଲେ କ'ଣ ହେଲା, ତାହାର ଚାଷ ପ୍ରଣାଳୀ, ତାହାର ରୋଗ ଇତ୍ୟାଦି ବିଷୟରେ ଫାଇଲ୍ କାମ ହେଉଥାଏ । ମନ୍ତ୍ରୀପରିଷଦ୍ କିନ୍ତୁ ବେଳେବେଳେ ଆଡ଼ି ପତାଉଥାନ୍ତି । ସେ ଥରେ ଗୋଟିଏ କୃଷି ବ୍ୟବସାୟୀଙ୍କ କ୍ୟାଟଲଗ୍ ଆଣି ସୁନାଫଳ ( Gold fruit ) ବୋଲି ଗୋଟିଏ ଗଛର ଚିତ୍ରଦେଖାଇ ରାଜାଙ୍କୁ ବୁଝାଇବାକୁ ଚେଷ୍ଟା କଲେ ଯେ ଏହି ସୁନାଫଳ ଗୋଟିଏ ଖାଦ୍ୟ ସାମଗ୍ରୀ । ସେ ବିଲାତରେ ଚାଖିଥିଲେ । ବୋଧହୁଏ ଏଇ ଗଛର ମଞ୍ଜି ଦେଶୋତ୍‌ତେଲଣ ଆଣି ବୁଣାଇଥିଲେ । ରାଜାଙ୍କ ମନ ସେତେବେଳେ ବିଗିଡ଼ିଥାଏ । ସେ କର୍କଶ ସ୍ୱରରେ କହିଲେ, "ଆପଣ ଦେଶୋତ୍‌ତେଲଣଙ୍କ ବିରୁଦ୍ଧରେ ସବୁବେଳେ କାହିଁକି ଲାଗିଛନ୍ତି ? ସେ ଆପଣଙ୍କ କୋଠିଟା ନେଇଗଲେ ବୋଲି—ବୋଧହୁଏ । କ୍ଷୁଦ୍ର ସ୍ୱାର୍ଥପାଇଁ ଦେଶର କଲ୍ୟାଣକର କାର୍ଯ୍ୟରେ ବାଧା ଦେବା ଉଚିତ ନୁହେଁ ।"

ମନ୍ତ୍ରୀପଣ୍ଡ ଏଥିରେ ଉତ୍‌କ୍ଷିପ୍ତ ହୋଇ ଖବର କାଗଜବାଲାଙ୍କ ଦ୍ୱାରସ୍ଥ ହେଲେ । କିନ୍ତୁ ଏ ବିଷୟରେ ଘାଣ୍ଟାଚକଟ କରିବାକୁ ସେତେବେଳେ କାହାକୁ ଫୁରୁସତ୍ ? ନିର୍ବାଚନ ଲଢ଼େଇରେ ସମସ୍ତେ ଯୋଗ ଦେଇଥାନ୍ତି, ଖବର-କାଗଜବାଲା ସବୁଠାରୁ ବେଶୀ । ରଜା ରହିବେ ନା ଯିବେ ? ଦେଶୋତ୍‌ଠେଲଣ ମନ୍ତ୍ରୀ ଆଶା କରି ବସିଥାନ୍ତି, ଏଇ ରଜା ଯଦି ରହିବେ, ତେବେ ସୁନା ଉତ୍ପାଦନ ଯୋଜନା ଚାଲୁ ରହିବ, ୫୦୦ ଟଙ୍କା ଆଲାଉନ୍‌ସ୍‌ଟାରେ ମଳି ଧୂଳି ଲାଗିବ ନାହିଁ, ମନ୍ତ୍ରୀପଣ୍ଡ ଆଶା କରି ବସିଲେ, ଏ ରାଜା ଗଲେ ସୁନା ଯୋଜନା ବହୁ ଧନ ସାପେକ୍ଷ ବୋଲି କହି ବନ୍ଦ କରାଇବ ଓ ମୋ ସାବିକ ଘରକୁ ମୁଁ ପୁଣି ଫେରିଯିବ ।





( ୧ )

ସଭା ସରିଲା । ସମସ୍ତେ ଯେ ଯୁଆଡ଼େ ଗଲେ, କାମଦାମ ସାରି ପଛକୁ ପ୍ରଦର୍ଶନୀ ଦେଖିବାକୁ ଆସିବେ । କିନ୍ତୁ ନରଣପୁରବାଲା ଉକାଉକି ହୋଇ ସମସ୍ତେ ଏକମୁହାଁ ଗାଁକୁ ଫେରିଗଲେ । ଘରକୁ ନଯାଇ ସମସ୍ତେ ବସିଲେ, ମିଶ୍ରଙ୍କ ଦାଣ୍ଡ ଘରେ । ଯେଉଁ ଜଣକ ଟିକିଏ କୁହାଳିଆ ପରି ଦିଶୁଥିଲା ସେ କହିଲା, "ଏଥର ହେଲାଟିକି ମିଶ୍ରେ ? ମୁଁ କହୁଛି ଏ କାମଗୁଡ଼ାକରେ ପଶ ନାହିଁ । ଆଜି ତ ପ୍ରକୃତରେ ଷଣ୍ଢପୁରବାଲା ଷଣ୍ଢ ହେଲେ । ବଡ଼ ସାହେବ କ'ଣ କହିଲା ଶୁଣିଲଟିକି ? 'ଷଣ୍ଢପୁରବାଲା ଆଜି ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଛନ୍ତି ।' ସେ ତ ମୁଖ ଉଜ୍ଜ୍ୱଳ କରିବେ ଆମେ ଚାଲ ଏଇଠି ମୁହଁ ପୋଡ଼ି ବସିଥିବା ।"

ହନୁ ଦାସେ କହିଲେ, "ହଁ ହେ, ସେ ଷଣ୍ଢ ହୁଅନ୍ତୁ କି ମୁହଁ ଉଜ୍ଜ୍ୱଳ କରନ୍ତୁ ଆମର ଯାଏଆସେ କେତେ ? ମତେ ଖାଲି ଲାଗୁଛି, ସେ ତୃପଉଁ

ଚୋଡ଼ାଟି ଉଠାଇ କରି ନେଲେ ।” ବୃନ୍ଦାବନ ମହାପାତ୍ରେ କହିଲେ, “ଆରେ ମୁଁ ତମ କଥାରେ ହଁ ମାରନ୍ତ ନାହିଁ, ପ୍ରକୃତରେ ଯଦି ତାଙ୍କର ଭଲ ହୋଇ-ଥାନ୍ତା, ତେବେ କାହାର କ’ଣ କହିବାକୁ ଥିଲା ? କାଲି, ପାଇଲି । ସେ ବାବୁ ଗୋଟେ ସାର୍ଟିଫିକେଟ୍ ଦେଇଦେଲା ବୋଲି କ’ଣ ନାଁ ତାଙ୍କର ଭଲ ? ସେ ବାବୁଙ୍କୁ କ’ଣ କହିବା ? ବଡ଼ ସାଇବ ଭଲା କେଉଁ ନ୍ୟାୟଟା କଲେ ! ସରକାର ତମକୁ ହଜାର ହଜାର ଟଙ୍କା ଦେଇ ରଖିଛି ! ପୁରସ୍କାରଟା ବଢ଼ାଇ ଦେବା ପୂର୍ବରୁ ଟିକିଏ ଭଲ କରି ବୁଝିଲି ନାହିଁ !”

କଣ୍ଟୁ ପଧାନ କହିଲା, “ସମସ୍ତେ ଏତେବେଳକୁ କାହୁଁ ଫଟେଇ ଦେଉଛ । ସେଠି ଆଉ କେହି କିଛି କହି ପାରିଲ ନାହିଁ ? ମିଶ୍ରେ ଆପଣେ, ଆପଣ ତ କାହିଁକି କିଛି କହିଲେନି ?”

ମିଶ୍ରେ ଗୁମ୍‌ମାରି ଟିକିଏ ବସିଲେ । ପରେ ତାଚ୍ଛଲ୍ୟରେ କହିଲେ “ହୁଁ” ; ଆସ୍ତେ ଆସ୍ତେ ଉଠି ଦୁଆର ମୁହଁକୁ ଗଲେ, ଦାଣ୍ଡଦୁଆରେ ଦୁଇଆଡ଼କୁ ଟିକିଏ ଚାହିଁଲେ । ତା’ପରେ ଦୁଆରଟି କିଲି ପୁଣି ଆସି ନିଜ ସ୍ଥାନରେ ବସିଲେ । ତା’ପରେ କଣ୍ଟୁକୁ ସତେ ଜାଳିଦେଲା ପରି ମୁହଁଟି ଦେଇ କହିଲେ, “ହଇରେ କଣ୍ଟୁ, ତୁ ମତେ ଅକଲ ଶିଖାଇବୁ, ନାଁ ? ହଁ, କାଳ ତ ସେମିତି ହେଲାଣି । ନୋହିଲେ ତୁ ପୁଣି ନରହରି ମିଶ୍ରଙ୍କୁ ଖୁଣି ଥାନ୍ତୁ !” କଣ୍ଟୁ ଉପରୁ ଆଖି ଉଠାଇ ଅନ୍ୟମାନଙ୍କ ଆଡ଼କୁ ଚାହିଁ କହିଲେ, “ମୁଁ ଆଗ ଭାବିଲି, ସାଇବକୁ ମୁହେଁ ମୁହେଁ ବତାଇଦେବି । ସେଠ୍ ପୁଣି ବଗୁରିଲି, ଶୁଣିବାକ ନ ଶୁଣିବ, ସ୍ବାଙ୍କୁ ଖୁସାମତ କରିବା ଦରକାର କ’ଣ ? ଆମର ଦେଖିଲା କାମ ଆମେ କରିବା ।”

ସମସ୍ତେ ଉତ୍ସୁକ ହୋଇ ଚାହିଁ ରହିଲେ । ନରି ମିଶ୍ରେ ଭାରି ଗମ୍ଭୀର ହୋଇ ଆଖି ତଳକୁ ଫେରାଇ ବସିଲେ ।

( ୨ )

ଷଣ୍ଢପୁର ଗାଁରେ ହାହାକାର ପଡ଼ିଗଲା । ଖରାରେ ଏତେ ହାଡ଼ଭଙ୍ଗା ପରିଶ୍ରମ କରି, ସେମାନେ ଅଣ୍ଟାବଗିଙ୍କୁ ଲଗାଇ ଯେଉଁ ପରିଶ୍ରମ କରିଥିଲେ ସେ

ସବୁ ଭୁଷୁଡ଼ି ଗଲା । ସେମାନେ ଯେପରି ଟାଣ କରି ବନ୍ଧ ଦେଇଥିଲେ ଏତିକି ପାଣିରେ ସେ ବନ୍ଧ ଭାଙ୍ଗି ନଥାନ୍ତା । ଗୋଟିଏ ସ୍ତ୍ରୀଲୋକ ପୋଖରୀପାଣି ବସି ଆସୁ ଆସୁ ଦେଖିଥିଲା, ମୁହଁ ସଞ୍ଜବେଳେ ଜଣେ କେହି ଧାଇଁ ଧାଇଁ ନରଣପୁର ଆଡ଼େ ଯାଉଥିଲା । ଷଣ୍ଢପୁରରେ କାହାର ଆଉ ଅବିଶ୍ୱାସ ରହିଲା ନାହିଁ ଯେ, ନରଣପୁରବାଲା ବନ୍ଧ କାଟି ଦେଇଛନ୍ତି । ହାଟ ଦିନ ଷଣ୍ଢପୁରର ଜଣେ, କଣ୍ଢୁ ପଧାନକୁ କହିଲା, "ଆଚ୍ଛା ହେଉ, ଭଗବାନ ଅଛନ୍ତି । ଯେ ହଜାର ଲୋକଙ୍କ ନିଃଶ୍ୱାସ ପକାଇ ଦେଇଛି ସେ କ'ଣ ଧରା ପଡ଼ିବ ନାହିଁ ?"

କଣ୍ଢୁ ପଧାନ ହାଟରୁ ସିଧା ନରି ମିଶ୍ରଙ୍କ ଘରକୁ ଗଲା । ନରି ମିଶ୍ରେ ସବୁ ଶୁଣି କହିଲେ, "ହଉ କଣ୍ଢୁ ! ଅପେକ୍ଷା ଧର, ମୁଁ ଏହାକୁ ଫଇସଲା କରିଦେଉଛି ।" ତହିଁ ଆରଦିନ ବଡ଼ି ସକାଳୁ ନରି ମିଶ୍ରେ ଓ ସାଙ୍ଗରେ ଦଶ କୋଡ଼ିଏ ଜଣ ଯାଇ ଷଣ୍ଢପୁରରେ ହାଜର । ପାଟି ତୁଣ୍ଡ ହେଉ ହେଉ ହାତ ଉଠିବାଯାଏଁ ଗଲା । କଣ୍ଢୁ ପଧାନ ଖୁବ୍ ତେରି ମେରି କରି ଷଣ୍ଢପୁରବାଲାଙ୍କ ଆଡ଼କୁ ଧାଇଁଯାଇ ଜଣକ ଦେହରେ ହାତ ଲଗାଇଛି କି ନାହିଁ, ଷଣ୍ଢପୁରିଆ ଭେଣ୍ଡିଆଟାଏ କଣ୍ଢୁ ପଧାନକୁ ହାତଧରା ପାଞ୍ଚଣ ଖଣ୍ଡେ ଉଠାଇ ଗୋଡ଼େଇ ଆସି ଯ୍ୟାଙ୍କ ମେଲରେ ପଶିଗଲା । ହାତଧରା ବାଡ଼ିଖଣ୍ଡ ମିଶ୍ରଙ୍କ ତାଳୁରେ ବାଜିଲା । ସାମାନ୍ୟ ଆଘାତ । କିନ୍ତୁ ମିଶ୍ରଙ୍କ ମୁଣ୍ଡରେ ରକ୍ତ ଦେଖି ଷଣ୍ଢପୁରିଆ ଶଙ୍କିକରି ଘରକୁ ଫେରିଗଲେ । ଫେରିଲାବେଳେ କଣ୍ଢୁ ପଧାନ ମୁଣ୍ଡରେ ହାତ ମାରି କହିଲା, "ସବୁ ସହିଯାଇ ଥିଲି । ଆଜି ଆଉ ହେଉ ନାହିଁ । କିବା କଥା ହେଲା ? ଶ୍ରୀଅଙ୍ଗରେ ଘାଉଡ଼ ?"

ମିଶ୍ରେ ଡାକିଲେ, "ବୃନ୍ଦାବନ, ଗାଁକୁ କ'ଣ ଯାଉଛ ? ଚାଲ, ଥାନାକୁ ଚାଲ ।"

ଥାନା ଆଉ କୋଶେ ବାଟ ଥାଏ । ମିଶ୍ରେ କହିଲେ, "ଆରେ ରହ । ଇମିତି ଟଙ୍ଗ ଟଙ୍ଗ ହୋଇ ଯାଇ ଥାନାରେ ପହଞ୍ଚିଲେ କ'ଣଟାଏ ହେବ ? ସମସ୍ତେ ବିଚାରିଲେ, ସତ । ମୁଣ୍ଡରୁ ଟିକିଏ ରକ୍ତ ବାହାରୁଥିଲା ଯେ, ସେତିକ ମଧ୍ୟ କଳା ପଡ଼ି ଗୋଟି ବାନ୍ଧି ଗଲାଣି । ଦଣ୍ଡେ ଖଣ୍ଡେ ମସୁଧା ହେଲା । କଣ୍ଢୁ ପଧାନ ମିଶ୍ରଙ୍କୁ ଖୁଆଠାରୁ ଧଇଲା । ବୃନ୍ଦାବନ ଗୋଡ଼ ପାଖ ଧଇଲା । ମିଶ୍ରେ ଲୁଗା ଟେକି ଧରିଥାନ୍ତି । ଖୁବ୍ ଜୋରରେ କଣ୍ଟା ମାଇଲା ପରି ଦାହେଁ ମିଶ୍ରଙ୍କୁ 'ସଡ଼କରି

କଲା ମୁଗୁନିରେ ଦଶ ପନ୍ଦର ଥର ଘୋଷାରି ଦେଲେ । ମିଶ୍ରେ ବି ସେହି ସମୟରେ ହାତଟା ସଡ଼କରେ ଘସି ଦେଇଥାନ୍ତି । ଟିକକ ପରେ ମିଶ୍ରେ କହିଲେ, "ହଉ ଥାଉ, ଏଥର ହେବ । ମତେ ଏଥର ସେମିତି ଧରି ଚାଲ । ଆଜି ଦେଖୁଛୁ, ଶଳା ଷଣ୍ଢପୁରିଆଙ୍କୁ ।"

ଏ କଥାରେ ନରଣପୁରବାଲା କେହି ବିସ୍ମିତ ହେଉନଥାନ୍ତି । ମିଶ୍ରଙ୍କୁ ସମସ୍ତେ ଜାଣନ୍ତି । ସେ ବାପ୍‌କା ବେଟା । ତାଙ୍କ ନନା ମଲାବେଳେ ମିଶ୍ରଙ୍କୁ ଡାକି କହିଥିଲେ, "ପୁଅ, ମୁଁ ମରିକରି ପଡ଼ିଥିବି, ମୋଠେଇ ବାକୁଲିଟାଏ ଗେଞ୍ଜି-ଦେଇଥିବୁ । ମରି ତ ଯାଉଛି, ଦାସିଆକୁ ପାରିଲିନି । ପୁଲିସରେ ଏତଲାଟାଏ ଦେଇଦେବୁ, ଦାସିଆ ମତେ ଅପମାନ ଦେବାକୁ ଏମିତି କରିଛି । ସାକ୍ଷୀ ଦି'ଜଣ ଭଲ କରି ଠିଆରିଥିବୁ ।" ମିଶ୍ରେ ଠିକ୍ ସେହିପରି କରିଥିଲେ । ହାକିମ ଅବୁଝାମଣା । ସେଦିନ ଦୈବାତ୍ ଦାସିଆ କୁଳୁଆଁ ଘରେ ଯାଇଥିଲା ବୋଲି ଯେଉଁ ସଫାଇ ଦିଆହେଲା ସେଥିରେ ବିଶ୍ୱାସ କରିଗଲା । ହେଲେ କ'ଣ ହେବ ! କଚରିକି ଯାଇ ଯାଇ ଦାସିଆର ବାତ ଜର ବେଏଣ୍ଠିଥିଲା ।

ରାତି ୯ଟାରେ ସମସ୍ତେ ଯାଇ ଥାନା ବାବୁଙ୍କୁ ଉଠାଇଲେ । ଥାନା ବାବୁ ଘଡ଼ିଏଖଣ୍ଡେ ପଚରାପଚରି କଲେ ; ମିଶ୍ରଙ୍କର ପ୍ରତ୍ୟେକ କ୍ଷତକୁ ଭଲ କରି ଦେଖିଲେ ; ଠୋଠୋ ହସିଦେଇ କହିଲେ, "ମିଶ୍ରେ, ଏଥର ପାରିଲନି ! ଏଇ ଲୁଗା ଖଣ୍ଡ ମୂଳରୁ ପିନ୍ଧିଥିଲଟି ? ପିଠିଯାକ ଫଡ଼ାଫଡ଼ା ହେଇଯାଇଛି ; ଲୁଗାରେ ତ କାହିଁ ଟିକିଏ ଦାଗ ଲାଗିନାହିଁ ।"

ମିଶ୍ରେ ଚଟ୍‌କରି ଜବାବ୍ ଦେଲେ, "ଆଜ୍ଞା, ଆପଣଙ୍କୁ ତ କାହିଁ ନାହିଁ । କାହିଁକି ଜାଣିବେ ? ଗାମୁଚ୍ଛା ଖଣ୍ଡେ ପିନ୍ଧିଥିଲି । ସେଇଟା ରକ୍ତସ୍ନାନ ହୋଇଯିବାରୁ, ଏ ଖଣ୍ଡ ଗୁଡ଼ାଇ ହୋଇ ପଡ଼ିଛି ।"

ଗାମୁଚ୍ଛା ବିଷୟରେ ଅନୁସନ୍ଧାନ ଚାଲିଲା । ଗାମୁଚ୍ଛା ଛୁଡ଼ିଉଡ଼ି ବାଟରେ ପଡ଼ିଛି ବୋଲି ମିଶ୍ରେ କହିଥିଲେ, ବାଟରେ ନ ମିଳିବାରୁ କହିଲେ, "ଆଜ୍ଞା, ଷଣ୍ଢପୁରିଆ ଲୁଚାଇ ଦେଇଥିବେ ।" ଷଣ୍ଢପୁର ଗାଁଯାକ ଖାନତଲାସ ତୋଡ଼ପାଡ଼ ହେଲା । ସାତ ଆଠ ଦିନ ପରେ ପୁଲିସ ରିପୋର୍ଟ ଦେଲେ, "ନରଣପୁରବାଲା ଅଜାଏ ଜବରଦସ୍ତ ଆସି ଷଣ୍ଢପୁର ଗାଁ ଭିତରେ ପଶି ଫୌଜଦାରି କରିଛନ୍ତି ।

ଆଘାତ ସେପରି ଗୁରୁତର ନୁହେଁ । ମକଦ୍ଦମା ହେବ ବୋଲି, ମିଶ୍ରେ କଳାମୁଗୁନି ବଗ୍ଧ ସଡ଼କରେ ପିଟ୍ଟି ଚୋପରାଇଛନ୍ତି ।”

ମକଦ୍ଦମା ଚଳିଲି ନାହିଁ ବୋଲି ନରଣପୁରବାଲାଙ୍କର ଖୁବ୍ ମନ ଦୁଃଖ ; ବିଶେଷ କରି ସେହି ଗୃହିଜଣଙ୍କର, ଯେଉଁମାନେ କୋଣେ ବାଡ଼ି ମିଶ୍ରଙ୍କ ଅଢ଼େଇ ମହଣିଆ ଗଣ୍ଡି ଟେକାଟେକି କରି ଝାଳ ବୁହାଇଥିଲେ । ସେଇଥି ଭିତରୁ ଜଣେ କହିଲି, “ଆରେ ଯା ମ ! ମଗ୍ରେ ଖାଲି ଆପେ ଆପେ ମାମଲତକାର ବୋଲାଉ-ଛନ୍ତି ନାଁ ! ଲୁଗା ଖଣ୍ଡିକର ମାୟା ଯଦି ଛାଡ଼ିଥାନ୍ତେ ତେବେ କ’ଣ ମକଦ୍ଦମା ହଟିଆନ୍ତା ?

ମିଶ୍ରେ ଏ କଥା ଶୁଣି ବିଦ୍ରୂପରେ ହସି କରି କହିଲେ, “ଆରେ ହଁ, ଆମେ କୁଆଡ଼ୁ ? ତମେ ତ ସବୁ ମାମଲତକାର । ଲୁଗା କଥା କ’ଣ ମୁଁ ବିଗୃରି ନଥିଲି ? ମୁଁ ଯେତେବେଳେ ଚୋପାରିବାକୁ କହିଦେଲି ତାରିପରେ ମନେ ପଡ଼ିଗଲା, ମୂଳରୁ ତ ଅଶୁଦ୍ଧ ହୋଇଛୁ । ଆମେ ଆସି ତାଙ୍କ ଗାଁରେ ମାଡ଼ ଖାଇଛେ । ବିଗୃରିଦେଲି ମକଦ୍ଦମା ତ ଦୁର୍ବଳ, ଲୁଗାଟା କାହିଁକି ଯିବ । ଦେହକୁ ଯାହା ଟିକିଏ ପୀଡ଼ା ହେବ, ସେ ତ ତା ମନକୁ ଯିବ । ଏ କାଳରେ ଲୁଗାଖଣ୍ଡି ଗଲେ ପୁଣି ଥୁଅ ପାଞ୍ଚ ଟଙ୍କା ।

ସମସ୍ତେ ବୁଝିଗଲେ । ପୁଣି ଉତ୍ସାହର ସହିତ ମିଶ୍ରଙ୍କ ଦାଣ୍ଡଦରେ ସଭା ବସିଲା, କମିତି ଷଣ୍ଢପୁରିଆଙ୍କୁ ପାନେ ଦେବେ । ଷଣ୍ଢପୁରିଆଗୁଡ଼ାକ ତ ମେଣ୍ଢା, ସେ କ’ଣ ମାଡ଼ମାରିବାକୁ ନରଣପୁର ଆସିବେ ? ଏଡ଼େବଡ଼ ପୁଲିଶ ଏନ୍‌କୁଆରି ଗୃଲିଲା । ମିଶ୍ରଙ୍କ ଗାଗୁଗ୍ଧ ଖୋଜିବାରେ ମାଇକିନିଆଙ୍କ ଲୁଗାପଟା ଦରଣ୍ଡା ହେଲା । ତଥାପି କ’ଣ ଟିକିଏ ଗ୍ରଗ ନା ରିସା ଅଛୁ ? ହାଟରେ ଦେଖାହେଲେ ନରଣପୁରିଆଙ୍କୁ କୋଉ ଲାଜରେ ‘ଭାଇ ଭାଇ’ ବୋଲି ଆଗ ଡାକୁଛନ୍ତି କେଜାଣି ? ବର୍ଷା ଛାଡ଼ିଲାମାନେ ପୁଣି ଧାଇ ହୋଇଥିବା ବନ୍ଧରେ କାମ ଲାଗିଲା । ଏଥର କୁଆଡ଼େ ସେମାନେ ମସୁଧା କରିଛନ୍ତି, ବର୍ଷା ଦିନେ ପାଳିକରି ବନ୍ଧ ଜଗିବେ । କଟକଆଡ଼ୁ ଗୋଟେ ପାଞ୍ଚ ବ୍ୟାଟେରିବାଲା ଟର୍ଚ୍ଚ ଲାଇଟି କିଣି ବନ୍ଧ ଉପରେ ପକାଇବେ । ଆରବର୍ଷ ମାଣକେ ଯେତିକି ଧାନ କରି ପୁରସ୍କାର ପାଇଲେ, ତହିଁରୁ ବେଶୀ କରାଇବେ ।

ଏ ସବୁ ଶୁଣି ମିଶ୍ରେ କହିଲେ, "ଆରେ ଅଥୟ କାହିଁକି ହେଉଛ ? 'ସହସା ବିଦଧୀତ ନ କ୍ରିୟାମ୍' ।" ତା' ବେଳ ଆସିଲେ ମୁଁ କହିବନି ? କ'ଣ ମୋର ପାଣୋର ହୋଇଗଲାଣି ପରି ! କାଷ୍ଟ କ୍ଲେଶ ଯାହା ହେଲା ହେଲା ; ହକ୍ ପାଞ୍ଚଶ ଟଙ୍କା ବୋହି ଗଲାଟି !" ଗାଁର ଅନେକ ଲୋକଙ୍କର ସନ୍ଦେହ ଥିଲା, ମକଦ୍ଦମା ପାଇଁ ଯେଉଁ ଗୃନ୍ଦା ହୋଇଥିଲା ସେ ସବୁ ଖର୍ଚ୍ଚ ହୋଇନାହିଁ । ଅଛ ବଗୁଲିଆ ଜଣେ ଦି ଜଣ କ'ଣ ଯ୍ୟାଡ଼ୁସିଆଡୁ ହିସାବ କରି କହନ୍ତି, ଅଧେ ବି ଖର୍ଚ୍ଚ ହୋଇନାହିଁ । ଟୋକା ପଞ୍ଚାଟେ ଫୁନ୍‌ଫାଟ୍ ହେଉଥିଲେ, ଏଥର ସଭା ହେଲେ ମିଶ୍ରଙ୍କ ମୁହଁ ଉପରେ ମାଗିଦେବେ ହିସାବ ଦେବାକୁ । ଥରେ ଦି ଥର ସଭା ଡକାଇବାକୁ ଉଦ୍ୟମ ହୋଇଥିଲା । ମିଶ୍ରେ ଭାଙ୍ଗିଦେଲେ ; କହିଲେ, "ଆରେ, ଆଜି ଯଦି ସଭାଟେ କରିବା, ଆଉ କାଲିକି ଷଣ୍ଢପୁରିଆଙ୍କ ଉପରେ କ'ଣ ପରିଭବ ହେବ ; ତା'ହେଲେ ହାକିମ କହିବ ଆମେ ମସୁଧା କରି ମାଡ଼ ମାରିଥିଲେ । ସେଠୁ ଲଗିଯିବ ଆମ ପଛେ ଗଣ୍ଡାଗଣ୍ଡା ସେକ୍‌ସନ ।" ବୃନ୍ଦାବନ ମହାପାତ୍ରେ ଓ କଣ୍ଡୁ ପଧାନକୁ ଡାକି ଦିନେ କହିଲେ, "ଆମ ଗାଁରେ ଟୋକା ବଢ଼ିଆ ହୋଇ ଗଲେଣି ; ଆଉ ଗାଁରେ କିଛୁ କରିହେବ ନାହିଁ ।"

ମୁରବିମାନଙ୍କର ସବୁ ଟୋକାଟାକରିଆଙ୍କ ଉପରେ ପଡ଼ିଲା କୋଡ଼ମାଡ଼ । ସମସ୍ତେ ଚୁପ୍‌ଚାପ ହୋଇଗଲେ । ଗାଁରେ ଯେଉଁ ଆଖଡ଼ା ଖଣ୍ଡେ ହୋଇଥିଲା ସେ ବି ଭାଙ୍ଗିଲା ।

## ( ୩ )

ଷଣ୍ଢପୁରରେ ସେଦିନ ଗୋଟାଏ ଭାରି ବଢ଼ିଆ ବାହାଘର । ସେ ଅଞ୍ଚଳରେ ଜଣେ ନାମଯାଦା ଧନୀ ଘରର ବିଭାଘର ବରଯାତ୍ରୀ ଆସୁଥାନ୍ତି । ସା'ନ୍ତରାଙ୍କ ଝିଅ ବିଭା ହେଉଥାଏ । ସେଉଟି ସତେ ଯେମିତି ଷଣ୍ଢପୁରିଆ ସମସ୍ତଙ୍କର ଝିଅ । ସମସ୍ତେ କାମଦାମ ବନ୍ଦ କରି ସା'ନ୍ତରାଙ୍କ ଝିଅ ବିଭାଘରରେ ଲାଗିଥାନ୍ତି । ଗାଁର ଭେଣ୍ଡିଆଯାକ ସମସ୍ତେ ଝିଅର ଭାଇ ଲେଖା । ଦୁଇ ଗୁରି ଜଣ ଲେଖାଏଁ ଯାଇ ସଡ଼କରେ ଗୁହିଁ ଆସୁଥାନ୍ତି—ଶୋଭାଯାତ୍ରା ଆସିଲା କି ନାହିଁ । ସଦର ରାସ୍ତା ନରଣପୁର ଗାଁମୁଣ୍ଡରେ । ନରଣପୁରବାଲା କେଜାଣି କ'ଣ ଗୋଳମାଳ କରିପାରନ୍ତି ବୋଲି କେହି ଜଣେ କହିଲା । ସା'ନ୍ତରା ଟିକିଏ ମୁଣ୍ଡୁକୁ

ମୁରୁକି ହସିଲେ, କହିଲେ, "ଛି, ସେ କଥା କାହିଁକି ମନକୁ ଆଣୁଛ ? ଅବା ସେ ଆମ ସାଙ୍ଗରେ ଲାଗନ୍ତେ । ବାହାର ଗାଁରୁ ବରଯାତ୍ରୀ ଆସୁଛନ୍ତି । କ୍ୟାଇଁ ପୁଅ ସଙ୍ଗେ କଳି କରିବେ ? ବାସନ୍ତି କ'ଣ ନର ମିଶ୍ରଙ୍କର ଝିଅ ନୁହେ ?" ସମସ୍ତଙ୍କ ମନକୁ ଏକଥା ପାଇଥିଲା ।

ତେଣୁ ଯେତେବେଳେ ନରଣପୁର ଆଡ଼ୁ ହୋ ହା ଶୁଭିଲା, ସେତେ-ବେଳେ ସମସ୍ତେ ଜାଣିଗଲେ ନରଣପୁରିଆ ନିଶ୍ଚୟ ବରଯାତ୍ରୀଙ୍କ ସଙ୍ଗେ ଦଙ୍ଗା ହଙ୍ଗାମା କଲେ । ତେଣୁ ଖାଲି ଯୁବକ କାହିଁକି ଅଧା ବୟସିଆ ଲୋକଙ୍କ ପର୍ଯ୍ୟନ୍ତ ସମସ୍ତେ ଧାଇଁଲେ । ଘଟଣା କ'ଣ ହୋଇଛି ଦେଖିବାକୁ ସବୁ ହୋହାକୁ ଟପି କିଣୁ ପଧାନର ପାଟି ଶୁଭିଲା, "ଆଲୋ ବାପ ଲୋ ! ମାରିପକେଇଲେ ଲୋ ! ଛୁରୀ ହାଣି ଦେଇ କରି ପଳାଇଲା । ଧର, ଧର । ମିଶ୍ରେ ତା ସାଙ୍ଗକୁ ବଡ଼ ପାଟି କରି ଜବାବ ଦେଲେ, "ଆରେ ଝିହ୍ଲଟ କରୁଛୁଟି ? କଟୁରି କାହା ହାତରେ ଥିଲା ଦେଖିଛୁଟି ?"

ମିଶ୍ରେ ନିଜ ଲୁଗା ଭିତରେ ଲୁଚାଇ କରି କଟୁରିଟି ଆଣିଥିଲେ ଓ ନିଜେ କିଣୁ ପଧାନର ବାହାକୁ ସେଥିରେ ପାହାରେ ଦେଇଥିଲେ । କଟୁରି ଗୋଟି ଝିପି ଯିବାରୁ ଭିନ୍ନୁଲି ଗଣ୍ଠି ଚିରିଲା ପରି ବାହାରୁ ଟେନାଏ ଗୁଡ଼ି ଯାଇଥାଏ ।

ସାନ୍ତରାଙ୍କ ହାତରେ କଟୁରି ଥିଲା ବୋଲି କିଣୁ ପଧାନ ଚିହ୍ଲଟ ଦେଲା । ବାଭିଘର ବାସି ସକାଳ ପହରରେ ଝିଅ ଶାଶୁଘରକୁ ଗଲା, ସା'ନ୍ତରା ଓ ଆଉ ପାଞ୍ଚ ଦଶ ଜଣ ହାତକଡ଼ିଲାଗି ଥାନାକୁ ଗଲେ ।

ଘମାଘୋଟ ମକଦ୍ଦମା ଚାଲିଲା । ସାନ୍ତରାଙ୍କ ସମନ୍ଧୀ ଭାରି ସ୍ନେହୀ ଲୋକ । ହାତରେ ତ ଟଙ୍କା ଅଛି, ଜଜ୍ ସାହେବଙ୍କ ପାଖେ ଅପିଲ ହେଲାବେଳକୁ କଲିକତାରୁ ବାରିଷ୍ଟର ଆଣିଲେ ଯେ ପୁରା ପାଞ୍ଚ ଦିନ ସୁଆଲ ଜବାବ ଚାଲିଲା । ଦିନକୁ ହଜାରେ ଟଙ୍କା ଫିସ୍ । ତା' ବାଦ ଡାକ ବଙ୍ଗଳା ଖର୍ଚ୍ଚ, ରେଳ ଭଡ଼ା ଫାଷ୍ଟ କ୍ଲାସ୍ । ବାରିଷ୍ଟରଙ୍କ ପାଇଁ ଦିଟା ଟିକଟ, ତାଙ୍କ କିରାଣି ପାଇଁ ଦେଢ଼ଟା ପୁଣି ଅର୍ଦ୍ଦଲୀ ପାଇଁ ଗୋଟେ । ଖର୍ଚ୍ଚକୁ କିଏ ପଚାରୁଛି ? ନୂଆ ସମନ୍ଧୀଙ୍କର ଇଂରେଜୀ ପଢ଼ା । ବାରିଷ୍ଟର ଯେଉଁ ପଇଁଟି ସବୁ କହିଲା, ସେ ରାତିରେ ବସା ଘରେ ଷଣ୍ଢପୁରିଆଙ୍କୁ ବସାଇ ବୁଝାଇ ଦିଅନ୍ତି ।

ଭଲ କୋର୍ଟରେ ନରଣପୁରଆଙ୍କର ଡିଗ୍ରୀ ହୋଇଥିଲା । ହାକିମ ରାଏ ଦେଇଥିଲା, "ନରଣପୁର ଲୋକେ ବନ୍ଧ ହାଣିଛନ୍ତି ବୋଲି ଷଣ୍ଢପୁର ଲୋକ-ମାନଙ୍କର ଗୋଟାଏ ଭ୍ରମ ଧାରଣା ଥିଲା । ଆସାମୀ ପକ୍ଷକୁ ଜେରା କରି ଫେରାଦୀ ପକ୍ଷର ସୁପଣ୍ଡିତ ଓକିଲ ଏହା ପରିଷ୍କାର ଧରାଇ ଦେଇଛନ୍ତି । ମୋର ଆଉଲେମାନ୍ଧ ସନ୍ଦେହ ହେଉନାହିଁ ଯେ ; ଷଣ୍ଢପୁରବାଲା ସେହି ରାଗ ରଖି ନରଣପୁରରେ ଫୌଜଦାରୀ କରିବାକୁ ଆସିଥିଲେ । ଏଥିପୂର୍ବରୁ ନରଣପୁର ଲୋକେ ଯାଇ ଷଣ୍ଢପୁରରେ ଯେଉଁ ଅଶାନ୍ତି ଘଟାଇଥିଲେ ସେ ବିଷୟର କାଗଜାତ୍ ଆମ ଶ୍ରୀ ହଜୁରରେ ଉପସ୍ଥାପିତ ହୋଇଛି । ସେ ଘଟଣାରେ ନରଣପୁରବାଲା ଦୋଷୀ ହୋଇପାରନ୍ତି । କିନ୍ତୁ ଏହା ଏ ମକଦ୍ଦମାର ବିଷୟ ନୁହେଁ । ସେ ସମ୍ପର୍କରେ କୌଣସି ଫେରାଦ ଆମ୍ଭ ସମ୍ମୁଖରେ ନାହିଁ ।

"ସେ ଘଟଣାର ଯେଉଁ କାଗଜ ଦାଖଲ ହୋଇଛି, ସେଥିରୁ ଆମ୍ଭର ପୂର୍ଣ୍ଣ ପ୍ରତ୍ୟୟ ହେଉଛି ଯେ ଆସାମୀମାନେ ସେହି ଦିନର ରାଗ ରଖି ଏ ଘଟଣା ଭିଆଇଛନ୍ତି । ଏତେ ଦିନ ହେଲା ରାଗ ରଖି ଜମାଏତ ବସ୍ତି ହୋଇ ଆସାମୀ-ମାନେ ସାଙ୍ଗରେ କଟୁରୀ ନେଇ ଲୋକକୁ ମାରିଦେବା ପାଇଁ ଚେଷ୍ଟା କରିଥିବାରୁ ଆସାମୀମାନଙ୍କ ଉପରେ ୧୭ ପଣ ଅପରାଧ ଫାବୁଛି ।

"କଟୁରୀ ତିଆରି କରିଥିବା କମାର ଯେଉଁ ସାକ୍ଷ୍ୟ ଦେଇଛି, ତାହା ଅବଶ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ନରଣପୁରର କିଣୁ ପଧାନ ଯାହା ସାକ୍ଷ୍ୟ ଦେଇଛି ତାହା ମଧ୍ୟ ମୁଁ ଅବିଶ୍ୱାସ କରିପାରୁ ନାହିଁ । କିଣୁ ପଧାନ ଜମିକୁ ସାଁନ୍ତରାଙ୍କ ଜମି ଲଗିଛି । କିଣୁ ପଧାନ ନିଜ ହିଡ଼ ଉପରେ କଟୁରୀ ଛାଡ଼ିଦେଇ ଆସିଥିବାର ପୂରା ସମ୍ଭବ । ଫେରାଦୀ ପକ୍ଷର ବିଚକ୍ଷଣ ଓକିଲ ଯେପରି ଦର୍ଶାଇଛନ୍ତି କିଣୁ ପଧାନର କଥା ଭଲ ମନେ ରହେ ନାହିଁ । ସାଁନ୍ତରା ସେ କଟୁରୀ ନେଇ ନିଜ ଘରେ ଲୁଚାଇବା ସମ୍ଭବ । ଏତେ ବାଟ କଟୁରୀ ଧରି ମଣିଷ ହାଣିବାକୁ ଆସିବା ଅତି ଘୋରତର ଅପରାଧ ।

"ଆମ୍ଭେ ସ୍ୱୀକାର କରୁଛୁ ଯେ ସାଁନ୍ତରା ଭଲ ଲୋକ ବୋଲି ଆମ୍ଭ ସମ୍ମୁଖରେ ସାକ୍ଷ୍ୟ ଦିଆହୋଇଅଛି । କିନ୍ତୁ ମନୁଷ୍ୟ ମନ ଜାଣିବା ସହଜ କଥା ନୁହେଁ । ଫେରାଦୀ ପକ୍ଷର ସୁବିଚକ୍ଷଣ ଆଡ଼ଭୋକେଟ୍ ଯେପରି ଦେଖାଇଛନ୍ତି,

ନିଜ ଉଦ୍ୟମରେ ବନ୍ଧ କାର୍ଯ୍ୟ ହୋଇଥିବାରୁ ସାଁନ୍ତରା ଭାରି ଗର୍ବିତ ହୋଇ-ଥିଲେ । ନରଣପୁର ଲୋକଙ୍କ ଯୋଗୁଁ ତାଙ୍କ ଗର୍ବର କାରଣ ଗୁଳିଗଲା ବୋଲି ସେ କ୍ରୁଦ୍ଧ ହେବା ସ୍ୱାଭାବିକ । ଲୋକେ ତାଙ୍କ କଥା ମାନିବା ହେତୁରୁ ତାଙ୍କର ଦର୍ପ ବଢ଼ିବାର କଥା । ତେଣୁ ସେ କ୍ରୋଧାନ୍ଧ ହୋଇ ଏପରି କାର୍ଯ୍ୟ କରିବାକୁ ବାହାରିବାରେ କୌଣସି ସନ୍ଦେହ ନାହିଁ । ବହୁତ ଦିନର ରାଗ ରଖି କନ୍ସିରେସି କରି କ୍ରୋଧରେ ଏ ଅପରାଧ କରିଥିବାରୁ ଓ ବିଶେଷ କରି ସାମନ୍ତରାୟ ଜଣେ ନାମୁଆ ଲୋକ ହୋଇଥିବାରୁ ମୁଁ ସାମନ୍ତରାୟଙ୍କୁ କଠିନ ସଜା ଦେବା ଉଚିତ ମନେ କରି ଛ'ମାସ ସଶ୍ରମ କାରାଦଣ୍ଡ ହୁକୁମ କରୁଛି । ଅନ୍ୟ ଆସାମୀମାନେ ଛୋଟା ଲୋକ, ସାମନ୍ତରାୟଙ୍କ ଆଶ୍ରିତ, ଏଥିପାଇଁ ମୁଁ ସେମାନଙ୍କୁ କଠୋର ସଜା ଦେଲିନାହିଁ । ସେମାନଙ୍କୁ ଶିକ୍ଷାଦେବା ସକାଶେ ମୁଁ ଦୁଇ ମାସ ଲେଖାଏଁ ସଶ୍ରମ କାରାଦଣ୍ଡ ଦେଉଛି ।"

ଉପରେ ତଳ କୋର୍ଟ ରାଏର ସାରାଂଶ ମାତ୍ର ଦିଆଗଲା । ସମୁଦାୟ ରାଏ ଫୁଲସକେପ୍ କାଗଜରେ ପଚିଶ ପୃଷ୍ଠା ହେବ । ନୂଆ ସମ୍ବନ୍ଧୀ ସାକ୍ଷୀ ଜମାନବନ୍ଦିର ସବୁ ନକଲ ଓ ରାଏ ନକଲ ନେଇ ଡାକ ବଙ୍ଗଳାରେ ବାରିଷ୍ଟରଙ୍କ ସଙ୍ଗେ ଦେଖାକଲେ । ବାରିଷ୍ଟର ଘଣ୍ଟାଏ କାଳ ରାଏକୁ ଲେଉଟପାଲଟ କରି ତାହା ଟେବୁଲ ଉପରେ ଚଉଡ଼ କରି ଥୋଇଦେଲେ । ତା' ଉପରେ ଗୋଟାଏ ବିଧା ମାରି ଜମାନବନ୍ଦି କାଗଜ ତାଡ଼ାକୁ ତାଙ୍କ କିରାଣୀବାବୁଙ୍କ ଆଡ଼କୁ ଦେଖାଇ କହିଲେ, "ଏଥିକୁ ସମାରି ( Summary ) କର ।"

ତାଙ୍କ ସୁଆଲ ଜବାବ ଦେଖିବାକୁ କଟକର ବହୁତ ଓକିଲ ଅଦାଲତ ଭିଡ଼ କରିଥାନ୍ତି । ପ୍ରତି ପରିଚ୍ଛେଦ ଉପରେ ସେ ଦିନେ ଦିନେ ଲଗେଇଲେ । ହାକିମ ଖାଲି ମୁରୁକି ମୁରୁକି ହସୁଥାନ୍ତି । ଦର୍ଶକମାନେ ହସ ସମ୍ଭାଳି ପାରୁ ନଥାନ୍ତି । ହାକିମ ଥରକୁ ଥର 'ଶାନ୍ତ' 'ଶାନ୍ତ' ବୋଲି କହୁଥାନ୍ତି । କିନ୍ତୁ ନିଜ ମୁରୁକିହସା ବେଳେ ବେଳେ ଧରାପଡ଼ିଯାଏ । ଦର୍ଶକଙ୍କ ଭିତରୁ ଆହୁରି ପାଟି ଶୁଭେ ।

ବାରିଷ୍ଟର ଯେତେବେଳେ କହିଲେ, "ହଜୁର, ତଳ କୋର୍ଟର ହାକିମ ଏ ଦେଶର ଜଣେ ଲୋକ ହୋଇ ଆମର ରୀତିନୀତି ବିଷୟରେ ଏତେ ଅଜ୍ଞ ଦେଖି

ମୁଁ ତାଜୁବ ହେଉଛି । ଏହିପରି ହାକିମଙ୍କ ହାତରେ ନିରୀହ ଲୋକଙ୍କର ଜୀବନ ମରଣ ନିର୍ଭର କରିବା ବଡ଼ ଦୁଃଖର ବିଷୟ । ମୋ ପକ୍ଷର କୋଟିଏ ମାତ୍ର ଯୁକ୍ତି । ତାହାର ବିର ଆସୁଛି । ସେ ବେଦି ପାଖେ ଗୁଡ଼ିଏ ଫୁଲ ପାଣି ଅରୁଆ ଗୃଉଳ ନ ଧରି ଖଣ୍ଡିଏ ଗୈରିକ କଣ୍ଟୁଆ ଧରି ବରଯାତ୍ରୀଙ୍କୁ ଅଭିବାଦନ କରିବା ପାଇଁ ଏକ ମାଇଲ ବାଟ ଯିବା ଯେଉଁ ହାକିମ ବିଶ୍ୱାସ କରିପାରିଲେ ତାଙ୍କ ବିଗ୍ୟର ବୁଦ୍ଧିକୁ ମୁଁ ଧନ୍ୟ ଧନ୍ୟ କରୁଛି ।"—ସେତେବେଳେ ଦର୍ଶକଙ୍କ ଭିତରୁ କେତେ ଜଣ ତାଳି ମାରିଲେ । ହାକିମ ଖୁବ୍ ବିଗିଡ଼ିଲେ ।

ବାରିଷ୍ଟରି ତଳ କୋର୍ଟ ରାଏର ପ୍ରତିବାକ୍ୟ ଉପରେ ଏପରି ସୁନ୍ଦର ସୁଆଲ ଜବାବ କଲେ ଯେ ହାକିମ ତାଙ୍କ କଥା ପିଇଯାଉଥାନ୍ତି । ଆଦାଲତରେ କାହାରି ସନ୍ଦେହ ରହିଲା ନାହିଁ ଯେ ସାମନ୍ତଗଣ ନିଷ୍ଟୟ ଖଲାସ ହେବେ । କିନ୍ତୁ ମିଶ୍ରେ ନିଜ ବସାରେ ବୋଧ ଦେଉଥାନ୍ତି, "ଆରେ ଯାଃ, ତାଧିଲା ପାଣିରେ କ'ଣ ଘର ପୋଡ଼ିବ ? ହଜାରେ ଟଙ୍କା ନେଉଛି ବୋଲି ସିମିତି ଗୁଡ଼ାଏ ଗପୁଛି । କଲିକତାରୁ ଆସିଛି ବୋଲି ଜଜ୍ ସାହେବଙ୍କୁ ବି ଖାତିର ନାହିଁ । ଏ କଥା ଆଉ ଜଜ୍ ସାହେବଙ୍କୁ ବାଧୁ ନଥିବ ପରା ? ଆରେ ! ଜଜ୍ ଉପରେ ଆଉ କିଏ ଅଛି ? ଦେଖିଲ ନାହିଁ ? ମନକୁ ବାଧିଥିଲା ବୋଲି ସେହି ଜଜ୍ ମନ୍ତ୍ରୀଟାକୁ କେଡ଼େ ହିନସ୍ତା କରି ନ ଦେଲା ? ଆମେ ସୁଆଲ ଜବାବ ଶୁଣିଛୁ ; ରହ, ରାଏ ଶୁଣିବ । ଜଜ୍ ନିଷ୍ଟୟ କହିବ, 'ତଳ କୋର୍ଟ ରାଏ ବାହାଲ' ।"

ବାରିଷ୍ଟରଙ୍କ ଜବାବ ସରିବା ସଙ୍ଗେ ସଙ୍ଗେ ଜଜ୍ ସାହେବ ରାଏ ଦେଲେ, 'ସାମନ୍ତମାନେ ନିର୍ଦ୍ଦୋଷରେ ଖଲାସ ।' ନରେଣପୁରବାଲାଙ୍କ ଉପରେ ପାଞ୍ଚଶ ଟଙ୍କା ମକଦ୍ଦମା ଖର୍ଚ୍ଚ ଡିଗ୍ରୀ ହେଲା ।

( ୪ )

ସେତେବେଳକୁ ନରେଣପୁରିଆ ଏକାବେଳକେ କରଜରେ ବୁଡ଼ିଗଲେଣି । ତାଙ୍କ ଭିତରେ ଯେଉଁ ଜଣକ ଥିଲାବାଲା ସେ ଆଗ ଦିନେ ଦୁଇ ଦିନ ତା'ଆଡ଼ୁ ମିସଲ ଖର୍ଚ୍ଚ ଚଳାଇଥିଲା । ତା'ପରେ ଗୋଟି ଗୋଟି କରି ସମସ୍ତଙ୍କଠାରୁ ଷ୍ଟାମ୍ପ କାଗଜ ଲେଖାଇ ରଖିଲା । ଜଜ୍‌କୋର୍ଟ ଅପିଲ ସରିଲାବେଳକୁ ସବମୋଟ

ପାଞ୍ଚ ହଜାର ଟଙ୍କା ଖର୍ଚ୍ଚ । ଏଣେ ବାହାରିଲା ପରେ ସମସ୍ତଙ୍କ ମୁହଁଟିମାନ ଶୁଖି ଗଲା । ମିଶ୍ରେ କିନ୍ତୁ ସବୁବେଳ ପରି ନିଶ୍ଚିନ୍ତ । ସେ ତ ଦାନ ଖଣ୍ଡ ଏ ମକଦ୍ଦମାରେ ଲାଗିଥାନ୍ତି ତେଣୁ ତାଙ୍କୁ କେହି ଚନ୍ଦା ମାଗନ୍ତି ନାହିଁ । ତାଙ୍କୁ ବା କାଗଜ କରିଦେବାକୁ କିଏ କହିବ ? ବର୍ତ୍ତମାନ ଏକମାତ୍ର ଚିନ୍ତା ପଡ଼ିଲା ଯେଉଁ ଖର୍ଚ୍ଚ । ତିଆରି ହୋଇଛି ତାହା କୁଆଡ଼ୁ ଆସିବ । ଓକିଲ ତ ଆଗରୁ ସବୁ ଫିସ୍ ଟାଣି ନେଇଥାଏ । ଆଉ ଯାହା ଅଳ୍ପ ବାକି ଅଛି ତା' ଅବା ନ ମାଗିବ, କିନ୍ତୁ ମକଦ୍ଦମା ଖର୍ଚ୍ଚ ତ ବଜ୍ରଲେପ । ମିଶ୍ରେ କହିଲେ, "ଆଗ ଘରକୁ ଚାଲ ! ଏଇନେ କଣ କିଏ ଖର୍ଚ୍ଚ ନେଇଯାଉଛି !

ଗାଡ଼ି ଭଡ଼ା କରିବାକୁ ପଇସା ନ ଥାଏ । ଯେଉଁ ଟଙ୍କା ଦୁଇ ଛନୋଟି ବଳିଥିଲା, ସେଥିରେ ଚୁଡ଼ାଭଜା ପୁଞ୍ଜିଏ ଲେଖାଏଁ କିଣି ମିଶ୍ରେ ସାଥିମାନଙ୍କ ହାତକୁ ମୁଠାଏ ମୁଠାଏ ଦେଇଦେଲେ, କହିଲେ, "ଆରେ, ଚାଲ ରେଳରେ ଯିବା । ଆଜିକାଲି ତ ସ୍ୱରାଜ୍ୟ ବେଳ । ଟିକଟ ନ କଲେ କିଏ ଧରୁଛି ? ଆଗ ତ ଜେନାପୁର ଯାଏଁ ବାହାରିଯିବା । ମଟରବାଲା ନ ଛାଡ଼ିଲେ ନାହିଁ । ବାଟ ପାଞ୍ଚ ମାଇଲ କ'ଣ ଚାଲିଯାଇ ହେବନେଇଁ ?"

ଜେନାପୁରରେ ଗାଡ଼ି ପହଞ୍ଚିବାକୁ ଆଉ ଗୋଟିଏ ଷ୍ଟେସନ ଅଛି । ଗାଡ଼ିରେ ଟିକେଟ କଲେକ୍ଟର ପଶିଲା । ସମସ୍ତଙ୍କ ତୁଣ୍ଡରେ ଏକା କଥା— 'ଆମ ଘର ନରଣପୁର ।' ଟିକଟ କଲେକ୍ଟରର ସନ୍ଦେହ ହେଲା, ନରଣପୁର ବୋଲି ବୋଧହୁଏ କୌଣସି ଗ୍ରାମ ନାହିଁ ; ସମସ୍ତେ ମିଛ ନାଁ ଓ ମିଛ ଠିକଣା ଦେଉଛନ୍ତି । କଟକରୁ ତାର ହୋଇ ରେଳବାଇ ପୁଲିସ ଆସିଲେ । ପୁଲିସଙ୍କ ଭିତରେ ମେଞ୍ଚାଟି ହୋଇ ନରଣପୁରିଆ ଗାଁକୁ ଚାଲିଲେ । ଷ୍ଟେସନ ଆଡ଼୍, ଗଲାବେଳକୁ, ଫଣପୁର ଗାଁ ଆଗ ପଡ଼େ । ଓଳକଠାରୁ ଭଡ଼ା ମଟର ଆସି ସେଠାରେ ପହଞ୍ଚିଥାଏ । ଆଗ ସାମନା ପଡ଼ିଆରେ ଗୋଟିଏ ବଡ଼ ସଭା ହେଉଥାଏ । ସାନ୍ତରା ସଭାପତି ହୋଇଥାନ୍ତି । ତାଙ୍କ ବେକରେ ବେକେ ଫୁଲମାଳ । କଡ଼କୁ ଖଣ୍ଡେ ଦୂରରେ ବନ୍ଧଟା ଦିଶୁଥାଏ । ପୂର୍ବେ ଯେତେ ଉଚ୍ଚ ଥିଲା, ଏଥର ତାହିଁରୁ ଆଉ ଉଚ୍ଚ ହୋଇଛି । କଡ଼ରେ ତଳରୁ ଖଣ୍ଡେଦୂର ଚିମା ପଥର ବସିହୋଇଛି । ତା' ଉପରକୁ ଘାସ ଚେକା । ମିଶ୍ରଙ୍କ ନଜର ଆଗ ବନ୍ଧ ଉପରେ ପଡ଼ିଗଲା ।

ସଖି ଆଡ଼କୁ କଡ଼େଇ କରି ଗୃହୁଁ ଗୃହୁଁ ସା'ନ୍ତରାଙ୍କ ମୁହଁରେ ନଜର ପଡ଼ିଲା । ସା'ନ୍ତରାଙ୍କ ସ୍ତ୍ରୀ ସାନ୍ତରାଙ୍କୁ ଜେଲଦଣ୍ଡ ହେବାରେ ଝୁରିଝୁରି ଦୁଇମାସ ହେଲା ମଲେଣି । ମିଶ୍ରଙ୍କୁ ଦିଶିଲା, ସା'ନ୍ତରାଙ୍କର ସେଥିପାଇଁ ଶୋଚନା ନାହିଁ । ସେ ନିର୍ଦ୍ଦୋଷରେ ଖଲାସ ହେଲେ, ଯେଉଁ ବନ୍ଧ ଭାଙ୍ଗିଥିଲା, ତାହା ଲୋକେ ନିଜେ ନିଜେ କଲେ, ଏଥିଯୋଗୁଁ ତାଙ୍କ ମୁହଁରେ ଦର୍ପ ଦେଖାଯାଉଛି ।

ମିଶ୍ରେ ଷଣ୍ଢପୁରକୁ ପଛରେ ରଖି ଗାଁଆଡ଼କୁ ଅଗ୍ରସର ହେଉ ହେଉ କହିଲେ, "ହଉ, ଏକା ମାଘକେ କ'ଣ ଶୀତ ଯାଉଛି ? ହାଇକୋର୍ଟରେ ଶୁଭଜନ କରିବାକୁ ତ ତିନି ମାସ ମିଆଦ ଅଛି ! ଦେଖିବା ।"





"ମାହାପୁରୁ !"

"କିଏ ରେ ତୁ ? ମାହାପୁରୁ ବୋଲି ତୁଣ୍ଡରେ କହୁଛୁ ; ଆଖି ନ ଥିଲା ପରି ଉପରକୁ ମାଡ଼ିଆସୁଛୁ ! ବ୍ରାହ୍ମଣ ସକାଳୁ ଗାଧୋଇ ନିତ୍ୟକର୍ମ କରିବାକୁ ପାଣି ଧରି ଆସୁଛି, ଆଖିକି ଦିଶୁ ନାହିଁ ?"

"ମାହାପୁରୁ, ଯେତେ ବୁଢ଼ା ହେଲେ ମଧ୍ୟ ମୁଁ କ'ଣ ଏଇସ୍ଥା ଜାଣି ପାରୁ ନାହିଁ ? ମୁଁ ତ ଆପଣଙ୍କଠାରୁ ଏତେ ଦୂରରେ ଛିଡ଼ା ହୋଇଛି ! ଗାଧୋଇଥିବା ବ୍ରାହ୍ମଣଙ୍କୁ ମୁଁ ଛୁଇଁବି ? ବୁଢ଼ାଦିନେ ଏଡ଼େ ଅଧର୍ମ ତ ମୁଁ କରିବି ନାହିଁ, ମହାପ୍ରଭୁ !"

"ଆରେ ଯା, ଯା, କୁହାଳିଆ ଲୋକଟାଏ ତୁ । ଗାଧୋଇ ଥିବା ବ୍ରାହ୍ମଣଙ୍କୁ ଛୁଇଁବୁ ନାହିଁ ! ଆଉ କ'ଣ ନ ଗାଧୋଇଥିଲେ ଛୁଇଁଥାନ୍ତୁ ? ମୋତେ ତୁ ଛୁଇଁ ସାରିଲୁଣି । ତୁ ଯେଉଁଠାରେ ଠିଆ ହୋଇଛୁ, ସେଠାରୁ କୁଟାକାଠି ଲାଗି ମୋ ପର୍ଯ୍ୟନ୍ତ ଆସିଛି । ତୋ ଛାଇ ମୋ ଉପରେ ପଡ଼ିଥାନ୍ତା । ଉଚ୍ ! ଉଚ୍ !"

ବୁଢ଼ାଟି ବ୍ୟତିବ୍ୟସ୍ତ ହୋଇ ନିଜ ଗୋଡ଼ ତଳକୁ ଗୃହିଁଲା । ଦାଣ୍ଡସାକେ କୁଟାକାଠି ପଡ଼ିଛି । ଖୋଜି ଖୋଜି ଖଣ୍ଡେ ଦୂରରେ ଟିକେ ସଫା ଜାଗାକୁ ଘୁଞ୍ଚିଯାଇ ସେ ଅତି ବିନମ୍ରସ୍ୱରେ କହିଲା, "ମହାପ୍ରଭୁ ! ମୁଁ ଗୋଟିଏ କଥା ପଗ୍ଚରନ୍ତି ?"

ବ୍ରାହ୍ମଣ ଗୋସାଇଁ ଅଧୀରସ୍ୱରରେ କହିଲେ, "ଆରେ ମୋ ନିତ୍ୟକର୍ମ ବେଳ ଗଡ଼ିଗଲାଣି । ତୋ ପଗ୍ଚରିବା କଥା କିଏ ଶୁଣୁଛି ? ମୁଁ ପଗ୍ଚରୁଛି, ଆଗେ ତୁ କହିଲୁ କି ଲୋକ ? ଅଛୁଆଁ ଜାତିର ଲୋକ ପରି ତ ଦିଶୁଛୁ ! ସକାଳୁ ଆଜି ମଣିଷ ଗ୍ରେତଲୋକଟା ସାଙ୍ଗରେ କଥାବାର୍ତ୍ତା ହେଲା । କେ ଜାଣି ଅପରେ କିଂ ଭବିଷ୍ୟତି ?"

"ମହାପ୍ରଭୁ ! ମୁଁ ତ ଅଛୁଆଁ ଲୋକ ନୁହେଁ । ମୁଁ ଜାତିରେ ତେଲି ମହାଜନ !"

"ତେଲି, ମହାଜନ ! 'ମହାଜନ' ଲଗାଇଦେଲେ କ'ଣ ତେଲି ବଡ଼ ଜାତି ହୋଇଯିବ ! ଆରେ ତେଲି ବୋଇଲେ ଧ୍ୱଜ ! ପୂର୍ବରୁ ବାକ୍ୟ କ'ଣ ଅଛି ଜାଣିଛୁ ?

"ଦଶ ଶ୍ୱାନସମଃ ଚକ୍ରୀ
ଦଶ ଚକ୍ରୀସମୋ ଧ୍ୱଜଃ !
ଦଶ ଧ୍ୱଜ ସମା ବେଶ୍ୟା
ଦଶ ବେଶ୍ୟାସମୋ ନୃପଃ ।"

"ଆରେ—ବୁଝିଲୁ, ବୁଝିଲୁ, ଦଶଟା କୁକୁର ସଙ୍ଗେ ଗୋଟାଏ କୁମ୍ଭାର ସମାନ, ଦଶଟା କୁମ୍ଭାର ମିଶିଲେ ଗୋଟାଏ ତେଲି ସଙ୍ଗେ ସମାନ ।"

"ହେଲା—ଏବେ—ମହାପ୍ରଭୁ ! ଏ ପାଠ ତ ଆମେ ଜାଣିନାହୁଁ । କିନ୍ତୁ ହେଇଟି କେତେ କୁକୁର ତ ଆପଣଙ୍କ ଏ ଦାଣ୍ଡରେ ବୁଲୁଛନ୍ତି । ହେଇଟି, ଏ ଗୋସେଇଁଙ୍କ ଘରୁ କୁକୁରଟାଏ ବାହାରୁଛି । ମୁଁ ଆପଣଙ୍କୁ କଥା ପଦେ ପଗ୍ଚରିବାକୁ ଠିଆ ହେଲି ବୋଲି, ଆପଣ ଆମ କୁଳକୁ ଗିରିଧ କରୁଛନ୍ତି ଏତେ ।"

ନୈଷ୍ଠିକ ବ୍ରାହ୍ମଣ, ଗୋସେଇଁଙ୍କ ଘରୁ କୁକୁର ବାହାରିବା କଥା ଶୁଣି ବିଶେଷ ବିଗିଡ଼ି ଗଲେ । ସେ ଘରଟି ତାଙ୍କ ନଜର । କୁକୁରଟି ମଧ୍ୟ ତାଙ୍କ ସାନ ପୁଅ ରଖିଥିବାରୁ ତାଙ୍କ ନଜର ବୋଲି କହିଲେ ଚଳେ । ବଡ଼ ପୁଅ ଦଶ ବର୍ଷ ହେଲା କୁଆଡ଼େ ଯାଇଥିଲା ଯେ ଦେଖାଶୁଣା ନଥିଲା । ଏବେ ଛଅ ମାସ ହେଲା ଏ କୁକୁରଟି ମାନ ଧରି ଘରକୁ ଆସିଥିଲା । ସାନ ଭାଇଙ୍କ ସ୍ନେହ କରି ଦେଇ ଯାଇଛି । ପୁଅମାଇପଙ୍କ ସଙ୍ଗେ ଘରେ କଳିକଜିଆ ଲାଗି ଏବେ ଯେଉଁ ସମଜାସୀ ହୋଇଛନ୍ତି, ସେଥିରେ କୁକୁରକୁ ଦିଅଁଙ୍କ ଘର ଛାଡ଼, ଅଇଁଶା ବାସନ ଗୁଡ଼ିବା ଛାଡ଼, ଏପରି କି ଭାତ ରାନ୍ଧିବାକୁ ଥୁଆ ହୋଇଥିବା ପାଣିରେ ମୁହଁ ମାରିବା ବି ଛାଡ଼ ହୋଇଛି । ବୁଢ଼ାଟା ସେହି କୁକୁର କଥା ଉଠାଇବାରୁ ଗୋସାଇଁ ଟିକେ ଦବି ଯାଇଥିଲେ । କିନ୍ତୁ ବୁଢ଼ା ବିଦେଶୀ ଓ ତାଙ୍କ ଘର କଥା ଜାଣି ନ ଥିବ ବୋଲି ଠିକଣା କରି ସେ ପୂର୍ବଠାରୁ ଅଧିକ ଚଢ଼ା ଗଳାରେ କହିଲେ,"ଆରେ, ଯା, ଯା, ମତେ ତୁ ପାଠ ବତାଇବୁ ! ଅଜ୍ଞାନ ପଶୁ, ଦାଣ୍ଡରେ ବୁଲୁଛୁ ବୋଲି ମୁଁ ତୋତେ ମୁଣ୍ଡରେ ବସାଇବି ! ଯା, ଯଦି ଭଲକୁ ମନ ଅଛି, ବ୍ରାହ୍ମଣମାନଙ୍କ ଗାଧୁଆ ସମୟରେ ଗାଁ ଭିତରୁ ବାହାରି ଯା ।"

ବୁଢ଼ା ଯିବାକୁ ଗୋଡ଼ ବଢ଼ାଇ ପଚାରିଲା—"ସା'ନ୍ତ—କଥାଟିଏ ପଚାରୁଥିଲି ! ଏ ଗାଁରେ ବୈରାଗୀ ମିଶ୍ରଙ୍କ ଘର କିଏ ? ତାଙ୍କ ଘରଠିକି ଟିକେ ଯାଇଥାନ୍ତି ।"

"କରେ—ବୈରାଗୀ ମିଶ୍ରଙ୍କ ସାଙ୍ଗରେ ତୋର କ'ଣ ସମ୍ପର୍କ ? ତୁ କ'ଣ ତାଙ୍କ ଶଶୁର ନା ସମ୍ବନ୍ଧୀ ? ମୁଣ୍ଡରେ ତେଲ ବୋହଁ ନାହିଁ, ତାଙ୍କ ଘରେ ତୋର କ'ଣ କାମ ! ଯା—ଯା—ଏତେବେଳେ ତାଙ୍କ ଘର ଖୋଜିବା ଦରକାର ନାହିଁ । ସେ ମୋ ନିଜ ପୁତୁରା, ମୋ ପଡ଼ିଶା ଘର ! ସେ ଏତେବେଳେ ଘରେ ନଥିବ । ତା'ର କେତେ କାମ । ଦିନରାତି ପିଲାକୁ ଫୁରୁସତ୍ ନାହିଁ । କୁଆଡ଼େ ଯାଇଥିବ କାମରେ । ପାଞ୍ଚ ଜଣଙ୍କର ଉପକାର କରିବାକୁ ବୈରାଗୀ ଧର୍ମ କରି ଧରିଛି । ଯାହାହେଉ, ସେହି ପିଲାଟି ଆମ ବଂଶର ମର୍ଯ୍ୟାଦା ରଖିଲା । ଯା, ତାକୁ ଏଇଲେ ପାଇବୁ ନାହିଁ । ଦି'ପହରେ ନହେଲେ ତାକୁ କିଏ ଦେଖେ ।"

ବୁଢ଼ା ନିରସ୍ତ ହୋଇ ଆଗକୁ ଗ୍ଭଲିଲା । ବ୍ରାହ୍ମଣ ମନ୍ଦିରେ ବନ୍ଦ ହୋଇ ଯାଇଥିବା ସୂର୍ଯ୍ୟସ୍ତବ ପୁଣି ଆବୃତ୍ତି କରୁ କରୁ ଅନ୍ୟ ଦିଗରେ ଗଲେ ।

ବେଳ ଗଡ଼ିଗଲାଣି । ପୋଖରୀ ତୁଠ ଏକ ରକମ ଶୂନଶାନ । ମୂଲିଆ ଗାଧୋଇବା ବେଳ ବି ଗଡ଼ିଗଲାଣି । ବୁଢ଼ାଟି ତୁଳସୀ ଚଉରା ଛାଇରେ ଗାମୁଛା ମୁଣ୍ଡକୁ ଦେଇ ତଳେ ଶୋଇପଡ଼ିଛି । ଛାଇ ଗଡ଼ିଗଲାଣି । ଦହଯାକ ଟାଣ ଖରାରେ ତାତି ଯାଇଛି । କପାଳରୁ ଟୋପା ଟୋପା ଝାଳ ବାହାରି ପଡ଼ୁଛି । ନିଦ କିନ୍ତୁ ଭାଙ୍ଗି ନାହିଁ । କାଲି ରାତିଯାକ ଅନିଦ୍ରା । ପଅରଦିନ ସକାଳୁ ଅଦ୍ୟାପି ପୁଞ୍ଜିଏ ବଳକା ରନ୍ଧା କାନିରେ ବନ୍ଧା ହୋଇଥିବା ମୁଡ଼ିରେ ଗୁଜରାଣ ମେଣ୍ଟିଛି । ଘରୁ ବାହାରିଲା ବେଳୁ ଏତେବେଳଯାଏ ଦଶ କୋଶ ପାଦରେ ଗ୍ଭଲିବାକୁ ହେଲାଣି । ଜଟଣି ଷ୍ଟେସନଠାରୁ ଲୋକ ଗହଳି ଭିତରେ କେନ୍ଦ୍ରାପଡ଼ା ରୋଡ଼ ଷ୍ଟେସନ ପର୍ଯ୍ୟନ୍ତ ଆସିବାତକ ଯେଉଁ କଷ୍ଟ ହୋଇଛି, ଆଉ ଦଶ କୋଶ ଗ୍ଭଲିଥିଲେ ମଧ୍ୟ ସେତେ ବାଧା ହୋଇ ନଥାନ୍ତା । ସେଠାରୁ ପୁଣି ସାଲେପୁର ଯାଏଁ ଭଡ଼ା ମଟରରେ ଆସି ମୁଣ୍ଡରେ ଗୋଳିଆଳୁ ପରି ଯୋଡ଼ାଏ ଫୁଲି ଯାଇଛି ।

ଆଉ କେତେବେଳ ନିଦ ହୋଇଥାନ୍ତା କେଜାଣି ? ଜଣେ ଦିବ୍ୟ ସୁନ୍ଦର ବ୍ରାହ୍ମଣ ଯୁବକ, ବୟସ ପ୍ରାୟ ୩୦।୩୫ ହେବ, ଗାଧୋଇ କରି ଗଲା ବେଳେ ବୁଢ଼ାକୁ ଦେଖି ଉଠାଇ ଦେଲେ ; ବୁଢ଼ାଟି ବିଦେଶୀ, ସକାଳୁ କିଛି ଆଶ୍ରା ନ ପାଇ ଏଇଠାରେ ପଡ଼ିଛି ଶୁଣି, ତାକୁ ଘରକୁ ଡାକିନେଲେ । ବୁଢ଼ା ଆଖି ମଳି ମଳି ନିଦରୁ ଉଠି ଯନ୍ତ୍ରଗ୍ଭଳିତ ପରି ତାଙ୍କର ପଛେ ପଛେ ଯାଉ ଯାଉ କହିଲା, "ବାବୁ, ଗୋଟିଏ କଥା ପଗ୍ଭରନ୍ତି ?"

ଯୁବକ କହିଲେ, "ହଉ, ପଗ୍ଭରିବାକୁ କ'ଣ ବେଳ ପଳେଇଯାଉଛି ? ତମେ ଗାଧୋଇଲଣି ? ମୋ ଘର ହେଇ ସେ ଚଉରାମୂଳି ଘର । ଆସ, ତେଲ ଟିକିଏ ଲଗେଇ କରି ଏଇ ପୋଖରୀରେ ମୁନ୍ଦେ ବୁଡ଼ିପଡ଼ିବ । ମୋ ଘରେ ଶାଗ ପେଜ ଯାହା ମିଳିବ, ପୁଞ୍ଜିଏ ଖାଇ ସାରିଲା ପରେ କଥାବାର୍ତ୍ତା ହେବା । ମୋର

ବ ଆଜ ବହୁତ ଡେରି ହୋଇଗଲାଣି । ସକାଳୁ ବାହାର ଗାଁକୁ ଯାଇଥିଲି ସେ ଆସୁ ଆସୁ ଗୁଡ଼ାଏ ଡେରି ହୋଇଗଲା ।

× × ×

ବୁଢ଼ା ଏ ଗାଁରେ ଏପରି ବ୍ୟବହାର ପାଇବାକୁ ପ୍ରସ୍ତୁତ ନ ଥିଲା । ତା ଘର ଯେଉଁ ଗାଁରେ, ସେଠାରେ ବ୍ରାହ୍ମଣଠାରୁ ହାଡ଼ି ପର୍ଯ୍ୟନ୍ତ ସବୁ ଜାତି ପାଞ୍ଚକର ଲୋକେ ଚାଲିବନ୍ଧା ଭାଇପରି ଥିବାରୁ ଜାତିଭେଦର ଦାଢ଼ ସେଠାରେ ମରିଯାଇଥାଏ । ବ୍ରାହ୍ମଣ ଶାସନରେ ସମସ୍ତେ ପ୍ରଥମରୁ ଭେଟିଥିବା ବୁଢ଼ାଙ୍କ ପରି ହୋଇଥିବେ ବୋଲି ତା'ର ଧାରଣା ହୋଇଯାଇଥିଲା । ସୁଶ୍ରୀ ଯୁବକଟିର ଦେବତା ପରି ବ୍ୟବହାର ଦେଖି ତା'ର ଆଖିକୁ ଲୁହ ଆସିଲା । ଲୁହକୁ ଲୁଚାଇବାକୁ ସେ ଖିବାଡବା ତେଲ ଟିକିଏ ମାରିହୋଇ ପୋଖରୀକୁ ଚାଲିଗଲା ଓ ବ୍ରାହ୍ମଣଙ୍କର ଅସୁବିଧା ନହେବ ଏଥିପାଇଁ ଦଣ୍ଡକେ ବୁଡ଼ପକାଇ ଫେରିଆସିଲା ।

ଦାଣ୍ଡଘରେ ସେ ବିନମ୍ରରେ ଜଡ଼ସଡ଼ ହୋଇ ଖାଇବାକୁ ବସନ୍ତେ ବ୍ରାହ୍ମଣୀ ଲାଜରେ ମୁହଁ ପୋତି ଆସି ଗୋଟିଏ ପତ୍ରରେ ଭାତ ବାଢ଼ିଦେଇ ଡାଲି ତିଅଣ ଧରି ପୁଣି ଆସିଲା ବେଳକୁ ବୁଢ଼ା ଖାଲି ଭାତ ଗୁଣ୍ଡେ ପାଟିକି ନେବାକୁ ବସୁଛି । ବ୍ରାହ୍ମଣୀ ଭାତ ଉପରେ ଡାଲି ଅଜାଡ଼ିଦେଇ ତରକାରୀ ବାଢ଼ିଲା ବେଳକୁ ତାଙ୍କ ଆଖି ବୁଢ଼ାର ଆଖି ଉପରେ ପଡ଼ିଗଲା ।

ସଙ୍ଗେ ସଙ୍ଗେ ବ୍ରାହ୍ମଣୀଙ୍କ ହାତରୁ ଡାଲି ଓ ତିଅଣ ଗିନା ତଳକୁ ଖସି ପଡ଼ିଲା ଓ ସେ ସଙ୍କୋଚରେ ତରତର ହୋଇ ଘର ଭିତରକୁ ଚାଲିଗଲେ । ବ୍ରାହ୍ମଣ କିଛି ନ କହି ନିଜେ ପୁଣି ଡାଲି ତିଅଣ ଆଣିବାକୁ ଭିତରକୁ ଯିବାରେ ବ୍ରାହ୍ମଣୀ ଆଉ ତିଅଣ ବାଢ଼ୁ ବାଢ଼ୁ କୈଫିୟତ ଦେବାକୁ ଯାଇ କହିଲେ, 'ମୁଣ୍ଡ କ'ଣ ହୋଇଗଲା' । ସ୍ତ୍ରୀ ନ ଦେଖି ପାରିଲା ଭଳି ଟିକେ ମୁରୁକି ହସି ବ୍ରାହ୍ମଣ କହିଲେ, "ହଉ, ତମେ ଟିକେ ଶୁଅ, ମୁଁ ଦେଉଛି ।"

ଖାଇପିଇ ସାରି ନିଜର ବାସନଟି ଧୋଇ ବୁଢ଼ା ଖଣ୍ଡିଏ ମସିଣାରେ ଆରାମ କରୁଛନ୍ତି । ବ୍ରାହ୍ମଣ ପିଲା ଦୁହିଁଙ୍କୁ ଧେନ ନିକଟବର୍ତ୍ତୀ ହାଟକୁ ଚାଲିଗଲେ । ବ୍ରାହ୍ମଣୀ କବାଟ ଟିକିଏ ମେଲାଇ ନିଜର ସନ୍ଦେହ ଦୂର କରିବାକୁ ଟିକେ

ଘୁହିଁଛନ୍ତି, ବୁଢ଼ା କହିଲା, "ମା —ତୁ ମତେ ଚହ୍ନି ପାରିଲୁ, ନା ? ତୋ'ର ସଙ୍ଗେ ଟିକେ ଦେଖା ହେବ ବୋଲି କେତେ କାଳରୁ ମୁଁ ବସିରୁଛି । ମୋର କାମ ସରିଗଲା । ମୁଁ ଏଥର ଯାଉଛି । ମା ମୋର ତ ଏଠାରେ ସୁଖରେ ଅଛି, ଦେଖିଲି । ଆଉ ଆଉ ।"

ସେତେବେଳକୁ ବ୍ରାହ୍ମଣୀଙ୍କ ଆଖିରୁ ମନା ନ ମାନି ଲୁହର ଧାର ବୋହି ଯାଉଛି । କାନ୍ଦିବାର ଶବ୍ଦ ବନ୍ଦ କରିବାକୁ, ପାଟି ନିଃଶ୍ୱାସ ରୋକିବାକୁ ସେ ବ୍ୟର୍ଥ ଚେଷ୍ଟା କରୁଛନ୍ତି । କାନ୍ଦି କାନ୍ଦି ଦାଣ୍ଡକୁ ନ ଶୁଭିବା ଭଳି ଘର ଭିତରର ଗୋଟିଏ ଜାଗାକୁ ବୁଢ଼ାକୁ ଡାକିନେଇ ସେ କହିଲେ, "ବାପା ! ଆସୁ ଆସୁ ଯିବାକୁ ବାହାରୁଛ ! ପୋଡ଼ା କପାଳର ଏପରି ଦଶା ଯେ, ଟିକିଏ ରହ ବୋଲି କହିବାକୁ ବଳ ନାହିଁ । ତମକୁ କାହିଁକି ଦୋଷିବି ? ଭଗବାନ ତ ମତେ ଜୀବନଯାକ ରୁନ୍ଧି ହୋଇ ମରିବାକୁ କରିଛନ୍ତି ।"

ବୁଢ଼ା ନିଜ ଆଖିର ଲୁହ ପୋଛି ପୋଛି କହିଲା, "ମା, ଭଗବାନଙ୍କୁ ନିନ୍ଦୁଛୁ ? ତୋର କ'ଣ ହୋଇଯାଇଛି ? ତୁ ତ ବ୍ରାହ୍ମଣ ଘରେ ପଡ଼ିଛୁ ! ଦେବପୁଅ ପରି ପିଲା ବାଳକ ଯୋଡ଼ିଏ ପାଇଛୁ ! ଜ୍ୱାଇଁ ତ ରୂପରେ ଯେପରି ସୁନ୍ଦର, ବ୍ୟବହାରରେ ସେପରି । ତୋର ଦୁଃଖ କ'ଣ, ମା ?"

× × ×

"ହଁ—ମା—ବର୍ଷରେ ତୁମର ବାପଘର ହୋଇଛି ଟି ?"

କାନ୍ଦ ଭିତରେ ଝିଅର ଟିକେ ହସ ଉକୁଟିଲା । ସଲଜଭାବରେ ସେ କହିଲା, "ବାପା ! ବାପଘର ହୋଇଛି ବୋଲି ପଚାରିଲ କ'ଣ ମ ।" ମୁଁ ଆସିବାର ଦୁଇ ଦିନରେ ପରା ମୋର ବାପଘର ହେଲା ।"

ବୁଢ଼ା ସନ୍ତୋଷରେ ଗୋଟିଏ ନିଃଶ୍ୱାସ ମାରି କହିଲା, "ମା—ଲୋକେ ଏଣୁ ତେଣୁ କହିବାରୁ ମନରେ ଯେଉଁ ସନ୍ଦେହ ହୋଇଥିଲା ତାହା ଆଜି ଦୂର ହୋଇଗଲା । କିଏ କହିଲା, ବଣି ମିଶ୍ରେ ତତେ କଲିକତା ନେଇଗଲେ । କିଏ କହିଲା, କୋଉ ବାବୁ ଘରେ ତୁ ପୋଇଲି ହୋଇ ରହିଛୁ । ଶେଷରେ

ଜଣେ କହିଲା, ତୁ ଏଇ ମିଶ୍ରଙ୍କ ଘରେ ବାସି ଆଉଡ଼ାଉ କରୁଛୁ । ଆଜି ସବୁ ଆଖିରେ ଦେଖିଲି । ବିବାହ ହୋଇଛୁ ତ ଭଲ । ନ ହେଲେ ତୁମେ ଦୁହେଁ ଯେପରି ଅଛ ବିଭା ହୋଇଥିବା କେତେ ଲୋକ ସେପରି ଅଛନ୍ତି ? ମା ! ମାଳ ! ଈଶ୍ୱରଙ୍କୁ ନିନ୍ଦିବୁ ନାହିଁ । ମୋ ପେଟରୁ ଜନ୍ମ ହୋଇ ତୁ ଏପରି ସୁଖରେ ଚଳୁଛୁ, ଏହା ସିନା ଈଶ୍ୱରଙ୍କ ଅନୁଗ୍ରହରୁ ।”

ବୁଢ଼ା ଈଶ୍ୱରଙ୍କୁ ମନେ ପକାଇ ଭୂଇଁରେ ତିନି ଥର ମୁଣ୍ଡିଆ ମାରିଲା । ମାଳ କହିଲା, “ବାପା ! ମୋର ଆଉ କିଛି ଦୁଃଖ ନାହିଁ ଯେ, ସବୁବେଳେ ମୋ ମନରେ ହେଉଛି, ମୁଁ ସତେ ଯେପରି ମହାପାପ କରିଛି । ମୋର ହିତାହିତ ଜ୍ଞାନ ଠିକେ ହେଲା ପରେ, ଆଗ ଯେତେବେଳେ ସ୍ୱାମୀଙ୍କ ପାଇଁ ଭାତ ବାଢ଼ିଲି, ମନେ ହେଲା, ମୁଁ ବଡ଼ ଅଧର୍ମ କରୁଛି ; ସ୍ୱାମୀଙ୍କ ଧର୍ମ ବୁଡ଼ାଉଛି । ସେ ତ କିଛି ନ ଜାଣି ବିଶ୍ୱାସରେ ମୋତେ ଆପଣାର କରନ୍ତି । କିନ୍ତୁ ମୁଁ ତ ଆଜିଯାଏ ମୋ ପେଟ ଭିତରର କଥାଟି ତାଙ୍କୁ କେବେ କହି ପାରିନାହିଁ । ଯେତେବେଳେ କହିବାକୁ ଖୁବ୍ ମନ କରେ କିଏ ଆସି ମତେ କହେ, “ମାଳତୀ ! ପଦକ କଥାରେ ଏ ସୁଖର ସଂସାର ଚୂନା କରି ଦେବୁ ? ତାଙ୍କର କ’ଣ ହେବ ? ତୋ ପିଲାଟି ଆଉ ମୁଣ୍ଡ ଟେକି ଦାଣ୍ଡରେ ଚାଲି ପାରିବ ଟି ?” ସେତେବେଳକୁ ବଡ଼ ପିଲାଟି କୋଡ଼ରେ ଥାଏ । ତାଙ୍କର ପାଇଁ, ପିଲାଙ୍କ ପାଇଁ, ମୋ ମନର ପାପ ମନ ଭିତରେ ରଖି ଆଜିଯାଏଁ ରହିଛି । ବାପା ! ଗୋଟିଏ କଥା ସ୍ୱାମୀଠାରୁ, ପିଲାଠାରୁ ଲୁଚାଇ ରଖିବା କେଡ଼େ କଷ୍ଟ, ତୁମେ କୁଆଡ଼ୁ ଜାଣିବ ?”

ବୁଢ଼ା ନିଜ ଝିଅର ଆଖିରୁ ଲୁହ ପୋଛିଦେବାକୁ ସତେ ଯେପରି ଶଙ୍କି ଶଙ୍କି ହାତ ବଢ଼ାଇଲା । ଲୁହ ପୋଛୁ ପୋଛୁ କହିଲା, “ମା ! ପ୍ରିୟ ଲୋକଙ୍କ ପାଇଁ ତୁ ଯେଉଁ କଷ୍ଟ ପାଉଛୁ, ସେଥିରେ ତ ଦୁଃଖ ନାହିଁ ମା,—ସେଥିରେ ଆନନ୍ଦ !” ମାଳତୀ କହିଲା, “ବାପା ! ସେହି କଥା ତ ବିଗୃହ ଜୀବନ ରଖିଛି । ତାଙ୍କର ଉପଯୁକ୍ତ ହେବାପାଇଁ, ଶାଶୁ ଶଶୁରଙ୍କ ଏ ଘରର ମାନ ରଖିବା ପାଇଁ, ଦିନରାତି ଦିଅଁଙ୍କ ପାଖେ ମୁଣ୍ଡିଆ ମାରୁଛି ।

× × ×

"କାନ୍ଦୁ, ବାପା ! ଏ କଥା କାହିଁକି କଲ ଯେ ? ବେଳେବେଳେ ତମକୁ ମୁଁ ଦୋଷ ଦିଏ ।" ବୁଢ଼ା ଆଖିରୁ ଲୁହ ବୋହି ଯାଉଥାଏ । ଝିଅର ମୁଣ୍ଡରେ ହାତ ବୁଲାଉ ବୁଲାଉ ବୁଢ଼ା କହିଲା, "ମା, ଦୋଷ କରିଛୁ କି ନାହିଁ କେଜାଣି ? ବହୁତ ଦଣ୍ଡ ପାଇ ସାରିଲିଣି । ଗଲା ୭ ବର୍ଷ ହେଲା ଦିନରାତି ତୋ'ର କଥା ସବୁବେଳେ ବସ୍ତୁରୁଛି । ସେ ଥା'ନ୍ତା ବୋଇଲେ ମୋ ଦୁଃଖ ଟିକେ ଲାଘବ ହୋଇଥାନ୍ତା । ସମସ୍ତିଙ୍କଠାରୁ ଖାଲି ଶୁଣେ, କାହାକୁ କିଛି କହିବାର ବଳ ନ ଥାଏ । ମା, ଏ ସବୁ ସିନା ତୋର ଭଲ ପାଇଁ କରିଥିଲି ! ତୋତେ ସେତେ-ବେଳକୁ ୧୨ ବର୍ଷ । ଆମ ଆଡ଼େ ଘୋର ଦୁର୍ଭିକ୍ଷ ପଡ଼ିଥାଏ । ତୋର ତ ମନେଥିବ । ତୋ'ର ପେଟରେ ଭାତ ମୁଠିଏ ଦେବି ବୋଲି ଦଶ ଗୌଣୀ ଚାଉଳ ପାଇଁ ପାଞ୍ଚ ମାଣ ସମ୍ପତ୍ତି ଲେଖିଦେଲି । ସେତିକି ମାସଟାକରେ ସରିଗଲା । ତୁ ଦିନେ ହେଲା ଉପାସ । ମୁଁ ତିନି ଦିନ ହେଲା ତୁଣ୍ଡରେ ପାଣି ଦେଇ ନାହିଁ । ଏହି ସମୟରେ ଦିନେ ଆମ ପାଖ ଗାଁ ବଣି ମିଶ୍ରେ ଆସି କହିଲେ, "ମହାଜନ ପୁଅ ! ତୋର ଏ ଝିଅଟିକି ଦେ । ତାକୁ ଭଲ ଜାଗାରେ ବିଭା କରିଦେବି । ତତେ ବି ୫୦ ଟଙ୍କା ମିଳିବ ।"

"ବହୁତ କଥାବାର୍ତ୍ତା ପରେ ମୁଁ କହିଲି, "ଗୋସାଇଁ ! ମୋର ପଇସା ଦରକାର ନାହିଁ । ମୋ ପିଲାଟି ଭାତ ପୁଞ୍ଜିଏ ଖାଇବାକୁ ପାଇବଟି ? ମୋର ସେତିକି ଲୋଡ଼ା । ସେ ଭାତ ପୁଞ୍ଜିଏ ଖାଇବ ବୋଲି ତା ମା ହେଉଛି ସେଦିନ ନଖାଇ ନପିଇ ମରିଗଲା । ଏ ପ୍ରାଣ ଦେଇ ଯଦି ତା'ପାଇଁ ଭାତ ପୁଞ୍ଜାଏ ଯୋଗାଡ଼ କରି ପାରିବି, ତେବେ ମୋର କିଛି ଦୁଃଖ ନାହିଁ ।" ତା'ପରେ କ'ଣ ହେଲା, ମୁଁ ସିନା ଶୁଣିଛି, ମା ! ତୁ ତ ଜାଣୁ ।"

ମାଳା କହିଲା, "ବାପା, ସେ ଦିନ ମାମୁଁ ଘରକୁ ନେବେ ବୋଲି କହି, ତାଙ୍କର ନିଜ ଘରକୁ ନେଲେ । ତାଙ୍କ ଭାରିଯାକୁ କହିଲେ ଏ ମୋର ଲେଖା ଯୋଖା ଭଣିଜୀ । ମାଈଁ ସଙ୍ଗେ ଖାଇଲି । ମୋ କଥାବାର୍ତ୍ତା ଚାଲିଚଳନ ଦେଖି ସେ ଖାଲି ଘୃଣୁଥାନ୍ତି । ମାମୁଁଙ୍କୁ କହନ୍ତି, ଏଉଟା ତମର କୁଆଡ଼ ଭଣିଜୀ ମ ? ଚଷାଘର ପରି ଆଚରଣ ।"

ମାମୁଁ କହନ୍ତି, 'ମା ବାପ ଛେଉଣ୍ଡ ପିଲାଟି, ଚଷା ଗାଁରେ ସେମିତି ହୋଇଯାଇଛି । ତାକୁ ସିନା ବତାଇଲେ ହେବ ।'

"ଏହାପରେ ମାସେ ତାଙ୍କ ଘରେ ରହିଲା ପରେ ଦିନେ ସକାଳୁ ମତେ ଆଣି ଏମାନଙ୍କ ଘରେ ପହଞ୍ଚାଇଲେ । ଏମାନଙ୍କ କକେଇ ଓ ବଣି ମିଶ୍ରେ କ'ଣ କଥାବାର୍ତ୍ତା ହେଲେ, ବହୁତ କଳାକଳିଆ ପାଟିଡ଼ୁଣ୍ଡ ପରେ ଆମ ବାହାଘର ହୋଇଗଲା । ସେହି ଦିନୁ ତ ଏଇଠି ପଡ଼ିଛି ବାପା ! ଆଜି ସିନା ତମେ ଆସିଲ !"

ବୁଢ଼ା କହିଲା, "ମା—ଏମାନଙ୍କ କକେଇ କିଏ ମ ? ସେ ଯୋଉ ବୁଢ଼ା ଆଜି ସକାଳେ ମୋତେ ଏତେ ଖିଆଲମାନ କରି କହିଲେ ?"

"ହଁ—ସେଇ ହୋଇଥିବେ ! ବାହ୍ମଣ ବାହ୍ମଣ ବୋଲି ସେ ବଡ଼ ବଡ଼େଇ କରନ୍ତି ।"

"ମା—ସେ ତମ ଘରେ ଖାନ୍ତି କି ?"

"ନ ଖାଇଲେ କାହିଁକି ମ ? ଏମାନଙ୍କର ତ ଯାହା ଭଲମନ୍ଦ ହେଲେ ଆଗ କକେଇଙ୍କି ଡାକନ୍ତି ।"

ଏହାପରେ କେତେ କଥା ପରେ ବୁଢ଼ା କହିଲା, "ମା ! ଜ୍ୱାଇଁ କେତେବେଳେ ଆସି ପହଞ୍ଚିବେ ? ମୁଁ ଯାଉଛି । ସେ ନ ଜାଣନ୍ତୁ ।"

ମସିଣାଟି ଗୁଡ଼ାଇ ବୁଢ଼ା ନିଜ ବଟୁଆ ଓ ଗାମୁଛା ଖଣ୍ଡିକ ଧରି ଦାଣ୍ଡରେ ଆସି ବସିଛି, ଗାଁକୁ ଯିବ ; ପିଲା ଯୋଡ଼ିଙ୍କି ଦାଣ୍ଡରେ ଖେଳିବାକୁ ଛାଡ଼ି ଦେଇ ବୈରାଗୀ ମିଶ୍ରେ ପରିବାପତ୍ର ଘେନି ହାଟରୁ ଆସିଲେ ।

ବୁଢ଼ା କହିଲା, "ମିଶ୍ରେ ଆପଣେ ! ମୁଁ ଏଥର ଯାଉଛି । ଆପଣଙ୍କ ଘରେ ଦି'ଦିନରେ ପେଟ ପୂରାଇ ପୁଞ୍ଜିଏ ଖାଇଲି । ମନ ବଡ଼ ସନ୍ତୋଷ ହେଲା । ଭଗବାନ ଆପଣଙ୍କୁ, ଆପଣଙ୍କ ପିଲାମାନଙ୍କୁ ଆୟୂଷ ଦିଅନ୍ତୁ । ଆପଣଙ୍କର ବଢ଼ନ୍ତି ହେଉ ।"

ବୈରାଗୀ ମିଶ୍ରେ କହିଲେ, "ପ୍ରଥମେ ଦେଖା ହେଲାବେଳେ ପରା ମତେ କ'ଣ ପଚାରିବ ବୋଲି କହୁଥିଲ ? ମୁଁ ତ କଥାବାର୍ତ୍ତା କରିବାକୁ ତରତର ହୋଇ ଆସୁଛି ଆଉ ତମେ ଯିବାକୁ ବାହାରିଲଣି !

ବୁଢ଼ା ବଡ଼ ଅଡ଼ୁଆରେ ପଡ଼ିଲା । ସକାଳୁ ଯେଉଁ ଗୋଟିକ କଥା ପଚାରିବ ପଚାରିବ ବୋଲି କହୁଥିଲା, ତାହା ତ ମନକୁ ମନ ଜଣା ପଡ଼ିଗଲା । ମିଶ୍ରଙ୍କୁ କ'ଣ ବା ପଚାରିବ, କ'ଣ ବା କହିବ ? ଘରୁ ଯେଉଁ ଆଳଟି ବଗିର ଶଗିର ଆସିଥିଲା, ତାକୁଇ ବାହାର କଲା—"ବାପା ! ତମର ଘର ଖୋଜି ଖୋଜି ଆସିଥିଲି । ତମ ଶଶୁର ମତେ କହିଥିଲେ ଝିଅକୁ ଟିକିଏ ଦେଖି ଆସିବ । ତମ ଶଶୁରଙ୍କର ମୋର ଏକ ଆତ୍ମା । ପିଲାଟିକି କାଖେଇ କୁଣ୍ଢେଇଥିଲି ।" ବୁଢ଼ା ମୁହଁରୁ ଜଣାପଡ଼ିଗଲା, ଏ କଥାରେ ସତ କେତେ, ମିଛ କେତେ । "ହଉ, ଘରେ ଟିକେ କଥାବାର୍ତ୍ତା ହୋଇଯିବ" ବୋଲି କହି ମିଶ୍ରେ ଘରକୁ ଡାକି ନେଲେ । ଦାଣ୍ଡଦୁଆର କିଳି ଦେଇ ବସୁ ବସୁ କହିଲେ, "ମୁଁ ସବୁ କଥା ଜାଣିଛି । ଆଜି ତା' ହାତରୁ ଟାଟିଆ ପଡ଼ିଯିବାରୁ ତମକୁ ଚହ୍ନି ନ ପାରିଲି । ସେଇଥିପାଇଁ ପିଲାଙ୍କୁ ନେଇ ହାଟକୁ ଯାଇଥିଲି ।"

ବୁଢ଼ା ତାଟକା ହୋଇଗଲା, "ବାପା ! ତମେ ସବୁ ଜାଣିଛ ତେବେ ? ମୋ ମା'କୁ ତ କହିନାହଁ ?"

"କହିଥିଲେ ସେ ମୋ ଘରକୁ ଯେପରି ସୁନା କରିଛି ତାହା କ'ଣ ହୋଇଥାନ୍ତା ?" ବୁଢ଼ା ପଚାରିଲା—"ଆଉ ତମ ଜକେଇ ! ସେ କ'ଣ ଜାଣିଛନ୍ତି ? ସେ ତ ଜାଣିଲେ ପ୍ରଳୟ କାଣ୍ଡ ଘଟିବ ।" "ସେ ଜାଣି ନାହାନ୍ତି ! ଏ କଥାକୁ ଡିଣ୍ଡିମ ବଜାଇ ବାହାଦୁରି ନେବା ମୋର ଇଚ୍ଛା ନୁହେଁ, କି ଜାଣିଲେ, ମୋର ଅପମାନ ହେବ ବୋଲି ଡର ନାହିଁ । ଜକେଇ କ'ଣ କରିବେ ? ତାଙ୍କ ଭଣ୍ଡ ବ୍ୟତୀତ ଆଉ କୌଣସିଠାରେ ତ ବ୍ରହ୍ମତ୍ୱ ନାହିଁ । ତାଙ୍କ ଘରେ କୁକୁର ଧର୍ମ ପୂଜା କରୁଛି । ତାଙ୍କ ବଡ଼ ପୁଅ କଲିକତାରେ ଗୋଟିଏ ଚୀନା ମାଇକିନିଆକୁ ଧରି ଘର କରୁଛି । ମୁଁ ସ୍ତ୍ରୀକୁ ପାଇବାକୁ ଯେଉଁ ତିନି ଶହ ଟଙ୍କା ଦେଇଥିଲି, ସେଥିରେ ଜକେଇଙ୍କର ବୋଧହୁଏ ଶହେ ଟଙ୍କା ଭାଗ । ବୁଢ଼ା ବୋଲି ଶାଗଟେ ମାଛଟେ ଆସିଲେ ମୁଁ ତାଙ୍କୁ ଦିଏ ବୋଲି, ମୁଁ ଭଲ

ଲୋକ । ମୁଁ ଯେତେବେଳେ ପିତାମାତାଙ୍କୁ ହରାଇ କଲିକତାରେ ପ୍ରବାସୀ ହୋଇଥିଲି, ସେତେବେଳେ ମୁଁ ତାଙ୍କ ନାଁରେ କଳଙ୍କ ଲଗାଇ ଦେଲି ବୋଲି ସେ କହୁଥିଲେ । ବହୁ ପରିଶ୍ରମ କରି ଟଙ୍କା ପୁଞ୍ଜାଏ ଆଣି ଘରକୁ ଆସିଲି । ଗାଁ ପାଖେ କନ୍ୟାଟିଏ ମିଳିଲା ନାହିଁ । ଝକେଇ ତମ ସେ ଦଲାଲ ବଂଶୀ ମିଶ୍ର ସାହାଯ୍ୟରେ ଯାକୁ ଆଣି ବିଭା ଦେଲେ । ବଂଶୀ ମିଶ୍ର କେତେ ଘର ବୁଡ଼ାଇଛି । କିନ୍ତୁ ମୋ ଘର ସେ ସୁନା କରିଛି । ବଂଶୀ ମିଶ୍ରକୁ ଦେଖିଲେ କହନ୍ତି, ତା' ଉପରେ ମୋର କୌଣସି ରାଗ ନାହିଁ । ଲୋକେ ବୁଝିଶୁଝି ଆଜି ଯେଉଁ ଜାତିକୁ ଗୋଇଠା ମାରୁଛନ୍ତି, ଆମର ମନକୁ ମନ ସେ ଜାତିଭେଦ ଉଠିଛି ।" ବୁଢ଼ା କହିଲା, "ବାପା, ଏତକ ଶୁଣି ବଡ଼ ଖୁସୀ ହେଲି । ଝିଅକୁ ଦେଖିଲି, ଜ୍ୱାଇଁଙ୍କ ମନରେ ଅସନ୍ତୋଷ ନାହିଁ ବୋଲି ଶୁଣିଲି । ଦେବତା ପରି ନାତି ଦୁଇଟି ଦେଖିଲି । ଏଥର ମୁଁ ଯାଉଛି । ହଠାତ୍ ନାତି ନ ଜାଣନ୍ତୁ । ମନରେ ଆଘାତ ଲାଗିବ । ତାଙ୍କର ବୁଦ୍ଧି ହେଉ, ମନ ବସୁ, ସେ ତା ମନକୁ ଯେତେବେଳେ ଜାଣିବେ, ସେତେବେଳେ ଆଉ ଦୁଃଖ ନଥିବ ।"

ବୈରାଗୀ ମିଶ୍ରେ ଏ କଥାରେ ରାଜି ହୋଇ ଡାକ ଦେଲେ, "ଆହେ ଆସ, ବାପା ଯାଉଛନ୍ତି ଓଲଗି ହୁଅ ।"

ମାଳି ଓ ବୈରାଗୀ ମିଶ୍ରଙ୍କର ଚାରି ଚକ୍ଷୁ ମିଶିଗଲା । ଯେଉଁ ବିବାହ ସେଦିନ ହୋଇଥିଲା, ଆଜି ସତେ ଯେପରି ତାହାର ବିଶୁଦ୍ଧି ସଂସ୍କରଣ ହେଲା ।

ପ୍ରାୟ ମାସକ ପରେ ବୈରାଗୀ ମିଶ୍ରେ ଖଣ୍ଡିଏ ଚିଠି ପାଇଲେ:—"ବାପା, ମାଳି ବୋଉ ମଲା ଦିନୁଁ ଯେଉଁଥିପାଇଁ ସଂସାରରେ ବାନ୍ଧି ହୋଇ ରହିଥିଲି, ତାହା ଏଥର ପୂର୍ଣ୍ଣ ହୋଇଛି । ମାଳି ପାଇଁ ତା ବୋଉ ପ୍ରାଣ ଦେଇଥିଲା । ଦୁର୍ଭିକ୍ଷ ବର୍ଷ କେବେ ହେଲେ ସେ ପେଟକୁ ମୁଠିଏ ଖାଇଲା ନାହିଁ । ଭାତ ପୁଞ୍ଜାକ ମାଳି ଖାଏ, ପେଜ ମିଶା ଭାତ ପୁଞ୍ଜେ ମୋତେ ଦିଏ ଓ ହାଣ୍ଡି ଧୋଇ ପାଣି ମୁନ୍ଦାଏ ସେ ପିଏ । ମୁଁ ଏକଥା ଜାଣିଲାବେଳକୁ ଲେଣ୍ଡି ଗୁଡ଼ କହୁଣିକୁ ବୋହି ଯାଇଥିଲା । ଯୋଡ଼ିଏ ଦିନ ଭିତରେ ତା' ପ୍ରାଣ ବାୟୁ ଉଡ଼ିଗଲା । ମାଳି ପାଖରୁ ଯିବା ପରେ ତା'ର ପିଲାଙ୍କ ପାଇଁ କିଛି ରଖିବ ବୋଲି ମୁଁ କଲିକତା ଚଟକଲରେ କାମ କଲି । ସେଠାରେ ଚାରି ପାଞ୍ଚ ବର୍ଷ ରହି ଗାଁକୁ ଫେରି

ଗୋଟିଏ ବେପାର ଛନ୍ଦିଲି । ସେହି ଦିନୁ ମାଳର ଖବର ନେଉଥାଏ । ବଂଶୀ ମିଶ୍ରଙ୍କୁ ଯେତେ ପତ୍ରରେ ସେ ଏଣୁତେଣୁ ବାହାପିଆ କଥା କହି ଭୁଲାଇ ଦିଅନ୍ତି । ଶେଷକୁ ତାଙ୍କରଠାରୁ ଖବର ପାଇ ତମ ଗାଁକୁ ଯାଇଥିଲି । ମୋ କାର୍ଯ୍ୟ ପୂରଣ ହେଲା । ଦୋକାନ ପଦ ସବୁ ବିକି ଭାଙ୍ଗି ଯେଉଁତକ ରଖିଥିଲି, ତାହା ଆଜି ପୁଷ୍ପ ଠାରେ ଆମ ବାବାଜୀ ମାହାପୁରୁଙ୍କ ମାରଫତ ଥୋଇଦେଇଛି । ତମ ପାଖକୁ ସେ ପାର୍ସଲ କରି ପଠାଇଦେବେ । ମୁଁ ଦୀକ୍ଷା ଘିନିଛି । ଆଉ ମୋର ଝବର ନେବ ନାହିଁ । ଟଙ୍କାତକ ମୋ ନାତିମାନଙ୍କ ପାଇଁ ଲଗାଇବ । ସେମାନେ ଯେତେ-ବେଳେ ସବୁ ଶୁଣିବେ ଓ ବୁଝିବେ ସେତେବେଳେ ମୋ କଥା ତାଙ୍କୁ କହିବ । ନ ବୁଝିଲେ ମୁଁ ଯେପରି ତୁମ ଦୁହିଁଙ୍କ ମନରେ ଅଛି, ସେହିପରି ରଖିବ । ଇତି ।

ତୁମର
ଭିକାରି ସାହୁ

ଦୁଇ ଦିନ ପରେ ଖଣ୍ଡେ ଇନ୍‌ସିଓର୍ଡ଼୍ ଚିଠି ବୈରାଗୀ ମିଶ୍ରେ ପାଇଲେ । ତାକୁ ନ ଖୋଲି ସେହିପରି ବାକ୍‌ସର ସବାତଳେ ପୂର୍ବଚିଠି ସଙ୍ଗେ ରଖି ଦେଲେ ।



ମୁଦ୍ରାକର—ଶ୍ରୀ ଚନ୍ଦ୍ରାମଣି ମିଶ୍ର, ନବଜୀବନ ପ୍ରେସ, କଟକ—୨

# ମନ୍ତବ୍ୟ

ଗଳ୍ପ କୁହ ବା ଉପନ୍ୟାସ କୁହ ବା ଅନ୍ୟ କିଛି ସାହିତ୍ୟ ବିଷୟର କଥା କୁହ—ପ୍ରକୃତ ସାହିତ୍ୟ ଯେତେବେଳେ ଲେଖା ହୁଏ, ସେତେବେଳେ ଗୋଟିଏ ଜିନିଷ ଲକ୍ଷ୍ୟ କରିଯାଏ—ତାହା ହେଉଛି sustained interest. ଗଳ୍ପଟିଏ ପଢ଼ିଲେ ତା'ର ମୂଳଠାରୁ ଶେଷ ପର୍ଯ୍ୟନ୍ତ ଯଦି ପାଠକକୁ ଅଭିଭୂତ ନ କଲା, ତାହାହେଲେ ସେ କି ଗପ ?

ଚନ୍ଦ୍ରମଣି ବାବୁଙ୍କ ଗପରେ ଏହି sustained interest ଅଛି ।

ଆଉ ଗଳ୍ପର ରହସ୍ୟଟି ଆସ୍ତେ ଆସ୍ତେ ଉଦ୍‌ଘାଟିତ ହେଲେ ଗଳ୍ପରେ interest ରହେ ।

ଚନ୍ଦ୍ରମଣି ବାବୁଙ୍କର "ଜାଉପଡ" ଗଳ୍ପ ହେଉ, "ଜାଗେଶ୍ୱରଙ୍କ ଦସ୍ତା" ହେଉ ବା ଅନ୍ୟ ଗପ ହେଉ, ସବୁଥିରେ ସେହି sustained interest ରହୁଛି ।

ଆଉ ଗୋଟିଏ କଥା, ଚନ୍ଦ୍ରମଣି ବାବୁଙ୍କର ଏହି ଗଳ୍ପଗୁଡ଼ିକରେ ଅବସ୍ଥା ଦେଖି ତା'ର ସମାଧାନ ସେହି ଗଳ୍ପର ପ୍ରଗତିରେ ଦେଖାଇ ଦିଆଯାଇଛି—ଅବସ୍ଥାକୁ ଅବଜ୍ଞା ନ କରି ଯାହା ଘଟିଛି, ଘଟିଯାଉଛି, ସେଇଥିରେ ଜୀବନର ଯେଉଁ ସମାଧାନ ହୋଇପାରେ ତାହା ସେ ଦେଖାଇଛନ୍ତି । ସମାଜ ଏତକ ଟିକିଏ ସୁରୁଖୁରୁରେ ଗ୍ରହଣ କରିନେଉଥିଲେ ଆଉ ଏତେ ଆତ୍ମହତ୍ୟା ଇତ୍ୟାଦି ହୁଅନ୍ତା ନାହିଁ ।

ଭାଷାରେ ଚନ୍ଦ୍ରମଣି ବାବୁ ସିଦ୍ଧହସ୍ତ । Colloquial ବ୍ୟବହାର ସୁନ୍ଦର ।

"ଉନ୍ନୟନ ଯୋଜନା" ଗପଟି ଲୋକ ପଢ଼ି ହସିବ କେତେ, ଆଉ ଭାବିବ କେତେ—ବାସ୍ତବିକ ଏହିପରି ଗପଗୁଡ଼ିକରେ ଏତେ ଆକର୍ଷଣ ଅଛି ଯେ କୁହାନଯାଏ ।

ଚନ୍ଦ୍ରମଣି ବାବୁଙ୍କ ଲେଖାରେ ଅଳ୍ପ ବିଦ୍ରୂପ ଏବଂ ବାସ୍ତବ ଘଟଣା ଏପରି ଭାବରେ ନିୟୋଜିତ ହୋଇଛି ଯେ, ତାହା ପାଠ କଲାବେଳକୁ ମନରେ ଆନନ୍ଦ ଯେପରି ଆସେ, ସବୁ କଥା ବିଚାର କରିବାପାଇଁ ମଧ୍ୟ ଚିନ୍ତା ଆସେ ।

"ଗ୍ରାମଗୋଷ୍ଠୀ ଯୋଜନା" ହେଉ, "ହନୁମନ୍ତ ଯୋଜନା" ହେଉ, "ବଡ଼ମୂନା" ହେଉ ସବୁଥିରେ ସତ୍ୟ କଥାର ଉଲ୍ଲେଖ କରି ଏପରି ଭାବରେ ସରକାରଙ୍କୁ, ଦୁଷ୍ଟ ଲୋକଙ୍କୁ, ଆଉ ଅନ୍ୟାନ୍ୟଙ୍କୁ ସମାଲୋଚନା ହୋଇଛି ଯେ ତାହା ପାଠ କଲେ ଜଣାପଡ଼ିବ—କଣ ସୂଅରେ ଭାସିବା ପରି ଲାଗିବ ।

ପୁଣି ଇତ୍ୟାଦି ଗଳ୍ପର ପ୍ରୟୋଗ କରି ଚନ୍ଦ୍ରାମଣି ବାବୁ ନିଜ ଧାଆରି ଗଳ୍ପଗୁଡ଼ିକ ବଡ଼ ସରସ ଓ ବର୍ତ୍ତମାନ ସମୟର ଉପଯୋଗୀ କରିଛନ୍ତି ।

ଆଉ ଚନ୍ଦ୍ରାମଣି ବାବୁଙ୍କର ଗଳ୍ପଗୁଡ଼ିକରେ ଅଙ୍କା ବାଡ୍ରୁ ପରି ସୀମା ନାହିଁ । ଶାସ୍ତ୍ରପୁରାଣରେ ଚନ୍ଦ୍ରାମଣି ବାବୁଙ୍କର ଦଖଲ ଖୁବ୍ ବେଶୀ । ସୁତରାଂ କଥାଟାକୁ ସେ ଖୁବ୍ ବାଟେଇପାରନ୍ତି । ଭାଷାର ଦଖଲ ଆଉ ଶବ୍ଦଭଣ୍ଡାର ତାଙ୍କର ଖୁବ୍ ବେଶୀ । "ଆମ୍ଭେ ବି ଋଷିପୁତ୍ରମୁନଃ" ଗପଟିରେ ଟିକଏ ମାତାଧିକ୍ୟ ହୋଇଯାଇଛି ।

"କାଳର ନିଷ୍ପତ୍ତି" ଅତି ସୁନ୍ଦର ଗଳ୍ପ । ଅଳ୍ପ କଥାରେ ଗୋଟିଏ ସମଗ୍ର ଜୀବନର ଚିତ୍ର ଦିଆହୋଇଛି ଏବଂ ସେଥିରେ କୁହାହୋଇଛି, ମନୁଷ୍ୟ ଜପରି ସେହି ପ୍ରାଚୀନ ପରମ୍ପରାରେ ହିଁ ସ୍ୱସ୍ତି ଲାଭ କରେ । ଦୁଇ ଦିନର ଚାକଚକ୍ୟରେ ଯେ ଭୁଲି ପରମ୍ପରାକୁ ଛାଡ଼େ ସେ ଯଶ ତ ପାଏ ନାହିଁ— ଜୀବନରେ ଅଫ୍‌ସୋସ ହିଁ କେବଳ ଲାଭ କରେ ।

"ମମତାର ମୁକ୍ତିଯୋଗ" ଗଳ୍ପରେ ମନୋବିଜ୍ଞାନର ସୂକ୍ଷ୍ମ ଦର୍ଶନ ମିଳେ । ଖାଲି ଏତିକି ନୁହେଁ, ଚନ୍ଦ୍ରାମଣି ବାବୁଙ୍କର ଅଧିକାଂଶ ଲେଖାର ଗଳ୍ପରେ Psychological stress ଖୁବ୍ ଥାଏ । ତାହା Climaxକୁ ଉଠି ଗୋଟିଏ ଚମତ୍କାରତା ଦେଖାଯାଏ ।

"ଯାଗେଶ୍ୱରଙ୍କ ଦୟା" ଗପଟି ବଡ଼ Realistic ଏବଂ ତତ୍ସଙ୍ଗେ ସଙ୍ଗେ ବଡ଼ Pathetic କିନ୍ତୁ ସେଥି ସଙ୍ଗେ ସଙ୍ଗେ ବରଜୁର ଚରିତ୍ରଟିକୁ ଖୁବ୍ heighten କରାହୋଇଛି ଏବଂ ସମାଜରେ ବଡ଼ ସାଆନ୍ତଙ୍କ ଭଳି ସାଆନ୍ତ ରହିଲେ ସବୁ ଗ୍ରାମ ଉଜ୍ଜ୍ୱଳ ହୋଇଯାଆନ୍ତା—ସ୍ୱର୍ଗ ପାଲଟନ୍ତା । ଚନ୍ଦ୍ରାମଣି ବାବୁଙ୍କର ଏହି ଗପଟି ଶ୍ରେଷ୍ଠ କି ଆଉ ଗପ ଶ୍ରେଷ୍ଠ—ଗପ ପଢ଼ୁ ପଢ଼ୁ ଆଉ ବାଛି ହୁଏ ନାହିଁ, ଠିକ୍ କରି ।

ଲକ୍ଷ୍ମୀନାରାୟଣ ସାହୁ

ତା ୫।୬।୧୯୬୬